**ଢେଉଢେଉକା**—ଲେଖକ : କାହ୍ନୁଚରଣ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ଷଷ୍ଠ ସଂସ୍କରଣ : ୧୯୯୩, ମୁଦ୍ରାକର : ସତ୍ୟସୁନ୍ଦର ପ୍ରେସ୍ ।



**Dheu Dheuka**—Author : Kanhu Charan, Publisher : Sahadev Pradhan, Friends' Publishers, Binodbehari, Cuttack-753002, Orissa (India), 6th Edition : 1993, Printer : Satyasundar Press.

Price : Rs. 28

Deluxe : Rs. 35.

୧ । ଶାନ୍ତି

୨ । ଝଞ୍ଜା

୩ । ସ୍ୱପ୍ନ ନା ସତ୍ୟ

୪ । ବନଗହନର ତଳେ

୫ । ମମତାର ମାୟା

୬ । ମାୟାବର୍ତ୍ତି

୭ । ଛେଉଛେଉକା

୮ । ମନ ଜାଣେ ପାପ

୯ । ଅତ ଗୋପନୀୟ

୧୦ । ମେଲଣି ମାଗୁଣି

୧୧ । ମନମନ୍ଥନ

୧୨ । ସ୍ୱୈର ସ୍ୱାମିଣି

୧୩ । ବଜ୍ରବାହୁ

୧୪ । ବୈଂଶ

---

ଉପରୋକ୍ତ ପୁସ୍ତକଗୁଡ଼ିକ ଫ୍ରେଣ୍ଡ୍ସ୍ ପବ୍ଲିଶର୍ସଙ୍କ ଦ୍ୱାରା ପ୍ରକାଶିତ ।

ରମା ମୁହଁ ଶୁଖାଇ ଟେବୁଲ ପାଖରେ ଠିଆ ହୋଇଛି ।

ବିବାହିତ ଜୀବନର ସାତୋଟି ବର୍ଷ କଟିଗଲାଣି । ବିଭାଘର ଦୁଇ ବର୍ଷ ପରେ କୋଳକୁ ଆସିଲା କୁନୁ । ଆହୁରି ତିନି ବର୍ଷ ପରେ ଆସିଲା ଇରା । ପୁଅ ଓ ଝିଅର ମା ହୋଇ ମଧ୍ୟ ତା'ର ଦୁର୍ଦ୍ଦଶା ଘେରିଲା ନାହିଁ । ଦୁର୍ଭାଗ୍ୟର କଥା ସେ କାହାକୁ କହିବ ?

ନିଜ ଟାଣ ନିଜର । ଦୁନିଆଁର ଲୋକେ ପଛେ ନିଜେ ଅନୁମାନ କରନ୍ତୁ, ରମା ମୁହଁ ଖୋଲି କାହାକୁ କହିପାରିବ ନାହିଁ ଯେ ତା'ର ସ୍ୱାମୀ ତାକୁ ସ୍ନେହ କରନ୍ତି ନାହିଁ ।

ସେମାନେ ହସିବେ । ଖୋଲତାଡ଼ି କେତେ ଅଡୁଆ ପ୍ରଶ୍ନ ପଚାରିବେ । କୁନୁ ଓ ଇରାଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ ପଚାରିବେ, ଏ ଦୁଇଟି କାହା'ର ମ ?

ରମା ଘରର ଚାରିଆଡ଼କୁ ଚାହିଁଲା । ଟେବୁଲ ଉପରେ ଭାତଥାଳି ଅଧାଖିଆ ହୋଇ ରଖା ହୋଇଛି । ମେଞ୍ଚା ମେଞ୍ଚା ଭାତକଣ ତଳେ ପଡ଼ିଛି । ଡାଲି ବାଟିଆ କାନ୍ଥ ପାଖରେ ଗଡ଼ୁଛି । ଚଟାଣ ଉପରେ ଡାଲି ଢାଳିଛି । ଖଣ୍ଡେ ଦୂରରେ ପ୍ଲେଟ ପଡ଼ିଛି ଚାରିଖଣ୍ଡ ହୋଇ । ଚିଙ୍ଗୁଡ଼ି ମାଛର ଭଜାତକ ଚାରିପାଖେ ଛିଟିକି ପଡ଼ିଛି ।

ଝଡ଼ ତୋଫାନ ଆସିଛି ଯେତ, ଭାଙ୍ଗିରୁଜି ପଡ଼ିଥିବା ତାଳପତ୍ର ଘରଆଡେ ବନ୍ଦ ହୋଇଛି, ହତଶ୍ରୀ ଦିଶୁଛି ।

ସେଦିନ । ସକାଳ ଦଶଟା ।

ଚାକର ପିଲା ଉର୍ଣ୍ଣିଆ କୁନୁକୁ ଖେଳାଇବାକୁ ନେଇଛି । ବାବୁ ଗସ୍ତରେ ଯିବେ ବୋଲି ପୁଅକୁ ଖେଳାଇବାକୁ ରମା ନ ଥିବାରୁ ବାବୁଙ୍କ ଘରକୁ ପଠାଇ ଦେଇଥିଲା, ନୋହିଲେ ବାପାଙ୍କ ସଙ୍ଗେ ଯିବ ବୋଲି କୁନୁ ଜିଦ୍ ଧରି-ଥାଆନ୍ତା । ଥରେ ଧରି କାନ୍ଦିଲେ ତାକୁ ବୁଝାଇବା କଷ୍ଟ । ଆଉ ଘରେ ଟିକିଏ ଛଇ ଖଟ ଉପରେ ଶୋଇପଡ଼ିଛି । ସେ ଉଠିଲେ ଉଲୁର ଲଗାଇଦେବ । ଚାକରାଣୀ ପାର୍ବତୀ ବାସନ ଧୋଇବାକୁ ଆସୁଥିବ । ଦାଣ୍ଡଘର କବାଟ ଖୋଲା ଅଛି । ସ୍ୱାମୀଙ୍କର ଗର୍ଜନ ତର୍ଜନ ଶୁଣିବାକୁ ହଳଧର ବାବୁଙ୍କ ସ୍ତ୍ରୀ ଜୟଶ୍ରୀ ତାଙ୍କ ଝରକା ବାଟେ ଚାହିଁଥିଲେ । ସେପା ସେପାଖ ଆରଦୁଆରୀ ଘର । ବାଆଁ ଚେଇ ହୋଇ ଯେ ଘଟଣା ବୁଝିବାକୁ ଚାଲିଆସିବେ । ଏ ଦୁଃଖରୁ ସେ ଲଜ୍ଜା ବଳିପଡ଼ିବ ।

ଆଖିରେ ଲୁହ ଛଳଛଳ ହେଲା । ଓଠ ଚାପି ରମା ଭିତର ବାରଣ୍ଡାକୁ ଆସିଲା । ଅଗଣାରେ କେହି ନାହିଁ । ଚଉରା ପାଖ ନଳାମୁହଁ ନିକଟରେ ବାସନ କେଇଖଣ୍ଡ ଅଇଁଠା ହୋଇ ପଡ଼ିଛି । ବାଡ଼ି କବାଟ ମୁକୁଳା ହୋଇଛି । କିଏ ଯଦି ଜଣ୍ଡା ଭିତରେ ପଶି ସେଗୁଡ଼ିକ ଉଠାଇ ନେଲେ—ଅଭିମାନ କରି, ଦୁଃଖ କରି ଅଧିକ ଅଶାନ୍ତି ବଢ଼ିବ । ବୁଲା କୁକୁର ଦୁଇଟା ମୁହଁ ଗଳାଇ ଅନାଇଛନ୍ତି । ରୋଷଘରେ ପଶିଲେ ହାଣ୍ଡି କୁଣ୍ଡେଇ ମାରି ହେବ ।

ରମା ବାଡ଼ି କବାଟ ବନ୍ଦ କଲା । ଦାଣ୍ଡ ଘରକୁ ଆସି ଡରି ଡରି ପଦାକୁ ଚାହିଁଲା, କାଳେ ଜୟଶ୍ରୀ ପଦାରେ ଥିବେ । ମୁଡ଼୍‌କେଇ ହସିବେ । ପଚାରିବେ, କଅଣ କରୁଛ ଗୋ, ଖିଆପିଆ ସରିଲାଣି ? ବାବୁ କାହିଁକି ରାଗୁଥିଲେ ? ଜିପ୍ ଚଢ଼ି କୁଆଡ଼େ ଗଲେ କି, କେବେ ପୁଣି ଫେରିବେ ? ସେ ବଡ଼ ବଦ୍‌ରାଗୀ, ନାହିଁଗୋ ରମା ?

ଜୟଶ୍ରୀ ଘର ଭିତରେ ଅଛନ୍ତି । ଏକୁଟିଆ ଲୋକ । ମାମୁ ମାଈଁ ଦୁଇ-ପ୍ରାଣୀ । ସାତ ବର୍ଷ ବାହା । ପିଲାଛୁଆ ହୋଇନାହାନ୍ତି । ଗଣ୍ଡି ବଢ଼ିଛି । ସକାଳୁ ସଞ୍ଜଯାଏ ପାଞ୍ଚ ଥର ବେଶ ହୁଅନ୍ତି । ନିଜକୁ ଦେଖି ନିଜେ ଖୁସି

ହୁଅନ୍ତି । ହଳଧରବାବୁ କେତେବେଳୁ କଚେରୀକୁ ଚାଲିଗଲେଣି । ସେ ମୁନ୍‌ସିଫ ଲୋକ, ମୋକଦ୍ଦମା ବିଚାର କରନ୍ତି । ତାଙ୍କୁ ଗସ୍ତରେ ଯିବାକୁ ପଡ଼େ ନାହିଁ । ତାଙ୍କର ବଳ ବ୍ୟସ୍ତ । ଲକ୍ଷ୍ମୀ ଏବେ ତାଙ୍କ ବଡ଼ ଅଇନା ଆଗରେ ଠିଆ ହୋଇ ମୁଣ୍ଡ ବାନ୍ଧୁଥିବେ ।

ରମା ଦାଣ୍ଡ ଝରକାକୁ ଗଲା । ମୁଣ୍ଡ ଉପରକୁ ଲୁଚାଟାଣି ରାସ୍ତାର ଦୁଇ ଆଡ଼େ ଚାହିଁଲା । ଗଳି ମୁଣ୍ଡରେ ନଟବର ବାବୁଙ୍କ ଘର । ରାସ୍ତାରେ ଟୋକା ରଙ୍କିଆର ଦେଖା ଦର୍ଶନ ନାହିଁ । ପିଲାଟାକୁ ନେଇ ଏଇ କେଉଁଆଡ଼େ ଗଲା କି ? ରାସ୍ତା ଉପରେ ଗାଡ଼ି ମଟର ଯାତାୟାତ କରୁଛି । ଜୟପୁର ଦାଣ୍ଡରେ ଲୋକ ଭିଡ଼ । କେତେ ଆଡ଼ୁ କେତେ ପ୍ରକାର ଲୋକ ଆସୁଛନ୍ତି, ଯାଉଛନ୍ତି । ଖବର କାଗଜରେ ବାହାରିଥିଲା, କଟକ ସହରରେ ପଞ୍ଚାଏ ଲୋକ ପିଲାଚୋର ବେପାର କରୁଛନ୍ତି । ସେମାନେ କାଳେ ଜୟପୁର ଆସିଥିବେ ।

ଘଣ୍ଟା ଦାଉଁ ଦାଉଁ ପଡ଼ିଲା । ଚାରିଟା ହେଲେ ଅନ୍ୟା, ତା'କୁ ନଟବର ବାବୁଙ୍କ ଘରକୁ ପଠାନ୍ତା । ନାଁ, କୁନୁ ସେଇଠି ଖେଳୁଥିବ ।

ନଟବର ବାବୁଙ୍କ ସ୍ତ୍ରୀ ଗୋମତୀ କୁଆରଙ୍କଣୀ । ଡାକ୍ତରବାବୁଙ୍କ ଘରଣୀ । ତିନୋଟି ଝିଅଙ୍କ ଜନନୀ । ବଡ଼ଝିଅ କୁନୁ ବୟସର । ଆଉ କେଉଁଣ ପିଲାପିଲି ହେବ । ଦେହରେ ଟିକିଏ ବୋଲି ଅଳସ ନାହିଁ । ରାଜ୍ୟସାରର ପିଲା ତାଙ୍କ ଘରେ ରୁଣ୍ଡ ହୁଅନ୍ତି । ସମସ୍ତଙ୍କୁ ସେ ସଫାସୁତୁରା କରନ୍ତି । ମୁଣ୍ଡରେ ବାସନା ତେଲ ଲଗାଇ କୁଣ୍ଡାଇ ଦିଅନ୍ତି । ଆଖିରେ ପିନ୍ଧାନ୍ତି କଜଳ । ନାଚନାଚକା ବିସ୍କୁଟ୍, ଫଳ, ଲେମନ୍‌ଚୁସ୍ ସାଇତି ରଖିଥାଅନ୍ତି । ନିଜେ ପିଠାପଣା କରନ୍ତି । ପରପିଲାଙ୍କ ମଇଳା ସେ ନିଜେ ପୋଛନ୍ତି । ତାଙ୍କ ପାଖରେ ପିଲାଏ ମା ବାପଙ୍କୁ ଭୁଲନ୍ତି । ସତେ, ଠାକୁରେ ତାଙ୍କୁ ଡାକ୍ତରଙ୍କ ଘରଣୀ ହେବାକୁ ଜନ୍ମ ଦେଇଥିଲେ, ପ୍ରକୃତ ଦେଇଥିଲେ । ହସ-ଖୁସି ଦେଖେ କି ହାତ ଧରାଧରି ହୋଇ ତାଙ୍କର ଅଗେ ଅଗେ ବୁଲୁଥାଆନ୍ତି ।

କୁନୁକୁ ସେ ଖେଳାଉଥିବେ ।

ରମା ଘର ଭିତରକୁ ଆସି କବାଟ କିଲିଲା । ନିଜ ହାତରେ ସବୁ ସାଇତି ରଖିବ । ଘରଦ୍ୱାର ସଫାସୁତୁରା କରିବ । ଅଧଘଣ୍ଟାକ ଭିତରେ ଯାହା ଘଟିଗଲା, ତା'ର ଚିହ୍ନବର୍ଣ୍ଣ ଯେପରି ନ ରହେ । ଘରର ଗୁମର ପଦାରେ ନ ପଡ଼ୁ ।

ସେ ଇଞ୍ଜିନିୟରଙ୍କ ସ୍ତ୍ରୀ । ବାପମା ତ ଜାଣି, ବନ୍ଧୁବାନ୍ଧବ ଓ ଦାଣ୍ଡ-ଲୋକ ସମସ୍ତେ କହନ୍ତି, କେହି କେହି ପଛ ବି ଲେଖନ୍ତି, ରମା ଭାଗ୍ୟବତୀ । ସୁକାନ୍ତ ପରି ଯୋଗ୍ୟ ସ୍ୱାମୀ ସେ ପାଇଛି ! ରୂପ ଯେପରି ସୁନ୍ଦର, ଗୁଣ ବି ସେପରି ! ରମାର କେଡ଼େ ସରଣା ! ଦେହରୁ ମୁଣ୍ଡରୁ ଲୁଗା ଖସିବ ନାହିଁ । ଥିର ଥିର ଚାଲି । ଥିର ଥିର କଥା । ଅନ୍ୟ ଝିଅଙ୍କ ପରି ହେଉଡ଼େଇ ସେ ନୁହେଁ । ଯାହା ଦିଅ ଖାଇବ । ଭଲ ମନ୍ଦ ବାଛିବ ନାହିଁ । ସଉକ୍ କରିବାକୁ ହମ୍ ହମ୍ ନୁହେଁ ।

ସେମାନେ କହନ୍ତି, କେତେ ସ୍ଥାନରେ ସମ୍ବନ୍ଧ ଚଢ଼ିଲା, ଜମିଦାର ପୁଅ, ପାଠୁଆ କିରାଣି, ଅଧାପାଠୁଆ ବେପାରୀ, ଘରୁଆ ଚାଷୀ । ପିଲାଟିଏ ବୋଲି ଅପେକ୍ଷା କରୁଥିଲେ । ଦଇବର ଘଟସୂତ୍ର । ସୁକାନ୍ତ ସେ ବନ୍ଧନରେ ବନ୍ଧା । ଦୂର ଗାଁ, ଗରିବ ଘର । ବରଷକେ ଛ'ମାସ ଯେନ-ତେନ ପୈତୃକ ସମ୍ପତ୍ତିରୁ ଢୋକ ଚଳେ । ବାକି ଛ'ମାସ ଦାଣ୍ଡରୁ କିଣିଲେ ହାଣ୍ଡିରେ ଚଢ଼ିବ । ସେଇ କୁଟୁମ୍ବରୁ ବାହାରି ପଢ଼ିଲା ମେଧାବୀ ଛାତ୍ର । ସୁନା ପିଲା ଟିଏ । ନିଜ ଶିଙ୍ଗରେ ମାଟି ଖୋଳି ମଣିଷ ହୋଇଛି । ଦବା ନବା ଚାହେଁନାହିଁ ।

ବାହାଘର ହେଲା ।

ରମା ଭାଗ୍ୟବତୀ !

ଆଖିରୁ କେଉଁ କେଉଁ ଲୁହ ଝରିପଡ଼ୁଛି ।

ରମା ଘରକାମରେ ହାତ ଦେଇଛି । ଚାକରବାକରଙ୍କ ଉପରେ କେବେ ସେ ନିର୍ଭର କରିନାହିଁ । ପିଲାଦିନରୁ କାମ କରି ଶିଖିଛି । ଘରଦ୍ୱାର ଓଳାଇବା, ବାସନ ମାଜି ଚକ୍ ଚକ୍ କରିବା, ହାଣ୍ଡି କୁଣ୍ଡେଇ ଧୋଇ ଦର୍ପଣ ପରି ଉଜ୍ଜ୍ୱଳ

କରିବା, ଲୁଗାପଟାରେ ସାବୁନ ଦେଇ ପରିଷ୍କାର କରିବା, ଏଇ ତ କାମ ! ଦେହରେ ଅଳସ ନ ଥିଲେ ହାତ ହଲିଗଲେ ପାଇଟି ସରିଲା ।

ଭାତ, ଡାଲି, ତିଅଣ, ଭଜା, ଅମ୍ବିଲ, ଛେଇ, ଶାଗ, ଝୋଳ, ପିଠାପଣା ସବୁ ସେ ଶିଖିଥିଲା । ପରେ ଘରକୁ ଆସି ସବୁ ସେ କରିଛି, କରୁଛି । ସମସ୍ତଙ୍କ ପାଟିକି ସୁଆଦ ଲାଗେ, କେବଳ ସୁକାନ୍ତଙ୍କ ମନକୁ ପାଏନାହିଁ । ଯେତେ ପରିଷ୍କାର ପରିଚ୍ଛନ୍ନ ହେଲେ ବି ସେ ନାକ ଟେକନ୍ତି । ସେ ଟାଣକଥା କହି ଭର୍ତ୍ସନା କଲେ ରମା ଉତ୍ତର ନ ଦେଇ କାଠ ପଥର ପରି ଶୁଣେ ।

ଭାତ ପେଜଥୁଆ ହୋଇଛି । ଡାଲିରେ ଅଳପ ହଳଦୀ, ତେଣୁ ଫିକା ଦିଶୁଛି । ତରକାରୀର ଚୁଙ୍କ ପୋଡ଼ିଯାଇଛି । ଭଜା ଯେ ଅଲୁଣା । ଅମ୍ବିଲର ପରିବା ଦରସିଝା । ଛେଇରେ ଲଙ୍କା ଅଧିକ । ଶାଗ ବାଲି ବଜବଜ । ଝୋଳ ପାଣିଚିଆ । ଛି, ଛି ! ପିଠାପଣାର ବି ସେମିତି ଗୁଣ ବାହୁନା । ଯେତେ ଯତ୍ନ, ଯେତେ ସାବଧାନ ହୋଇ କଲେ ବି ରକ୍ଷାନାହିଁ । ଥାଳିରେ ରେକଟା ଲାଗିଛି । ଗଡ଼ିଆ ପଦାରେ ବାଲି । ପାଣି ଗିଲାସ ବାଁ ପାଖରେ ରହେ, ନା ଡାହାଣ ପାଖରେ ?

ଉତ୍ତର ନ ଦେଲେ କହନ୍ତି, ମନ କେଉଁଠି ଥିଲା କି ?

ଉତ୍ତର ଦେଲେ କଥା କଟାକଟି ଚାଲେ । ସୁକାନ୍ତଙ୍କର ରାଗ ବଢ଼େ । ପିତୃପୁରୁଷଙ୍କର ଗୁଣ ବାହୁନନ୍ତି । ତରକାରୀ ଅଲୁଣା ହୋଇଛି କି ରମା ମଇଳା ଲୁଗା ପିନ୍ଧି ଭାତ ବାଢ଼ୁଛି, ସେଇଥିରୁ କଥା ଆରମ୍ଭ ହୋଇ କେତେଆଡ଼େ ମାଡ଼ିଯାଏ । ପାଖରୁ ଦୂରେଇଗଲେ ସେ ଡକାଉଛନ୍ତି—ଶୁଣ, ମୋ କଥାଗୁଡ଼ା କଅଣ ମନକୁ ଆସୁନାହିଁ ? ତଥାପି ଜବାବ୍ ନ ଦେଲେ ଅଧାଖିଆ ହୋଇ ଉଠନ୍ତି । କେବେ ଦୁଇ ତିନ ଓଳି ଉପାସ ରହନ୍ତି । ରମା ବି ଉପାସ ରହେ ।

ବାହାଘରଠାରୁ ଏପରି ଚାଲିଛି । ସାତବର୍ଷ କଟିଲା ।

ସବୁ ଅଶାନ୍ତି ଓ ରାଗରୋଷ ଅଭିମାନର ସମାଧାନ ଆପେ ଆପେ ହୋଇ-ଯାଏ । କଅଣ ଗୋଟାଏ ଘଟଣା ଘଟି ଯାଇ ଝଡ଼ତୋଫାନ ବହିଥିଲା, ମନେ

ହେଉଥିଲା ଏଇଥର ଭୀଷଣ କାଣ୍ଡ ଘଟିବ, ହବୁ ଫସର ଫାଟି ଯାଏ । କାହାର ମନେ ରହେନାହିଁ ।

ସୁକାନ୍ତ ପିଲାଙ୍କ ପରି ପୁଣି ଅଳି କରେ । ହବୁ ଦୋଷ ମାଗିନିଏ । ରମା ପୁଣି କେବେ ଅଡ଼ ପିଲା ହୋଇଯାଏ । ଦୁଇଟି ସନ୍ତାନର ସେ ଜନନୀ, ଏକଥା ଭୁଲିଯାଏ । ସୁକାନ୍ତ ନିଜ ହାତରେ ମୁଣ୍ଡ କୁଣ୍ଡାଇ ଦିଏ । ଆଖିରେ କଜଳ ଲଗାଏ । ନାହିଁ ନାହିଁ କଲେ ବି ଗୋଡ଼ରେ ଅଳତା ପିନ୍ଧାଏ ।

ରମା ଜାଣେ, ସୁକାନ୍ତ ଅଡ଼ ଆଖିରେ ଅନ୍ୟନାରୀକୁ ଅନାନ୍ତି ନାହିଁ । କେହି ପ୍ରକାରାନ୍ତରେ କିଛି କହିଲେ ସେ କଥାଟାକୁ ହସି ଉଡ଼ାଇଦିଏ । ମନ କହେ, ମୋ ସୁନା କେବେ ଭେଣ୍ଡି ହେବ ନାହିଁ ।

ସୁକାନ୍ତ ଭଲକରି ଜାଣନ୍ତି ଯେ, ତାଙ୍କର ଘରଣୀ ତାଙ୍କଛଡ଼ା ଅଉ କେଉଁ ପୁରୁଷର ମୁହଁ ଚାହିଁନାହାନ୍ତି । ଚାକରବାକର ତ ନିଜର ପିଲା ପରି । ଦୁହିଁଙ୍କ ମନରେ ଦୁହିଁଙ୍କ ପ୍ରତି ଦୃଢ଼ ବିଶ୍ୱାସ, ଯେତେ ଯାହା ମନ ଓ ରୁଚି ଅମେଳ ଘଟଣା ଘଟେ, ତାକୁ ବେଶୀ ବେଳ ରଖାଇ ଦିଏ ନାହିଁ ।

ଦୁଇଟା ମନ, ଦୁଇଟା ଦେହ ପୁଣି ଏକାଠି ହୁଏ ।

ଯାହା ଯେବେ ହେଉ, ଆଜିକାର ଘଟଣାକୁ ରମା କଦାପି ଉପେକ୍ଷା କରି ପାରିବ ନାହିଁ । କବାଟ ଝରକା ବନ୍ଦ କରି ସୁକାନ୍ତ ମନଇଚ୍ଛା ଗାଳି ଦେଇଥାନ୍ତେ, ରମା ଅବଶ୍ୟ ସହିଥାଆନ୍ତା, କିନ୍ତୁ ଆଜି ସମସ୍ତେ ଶୁଣିଲେ, ଚାକରବାକର, ଦାଣ୍ଡଲୋକେ, ଜୟଶ୍ରୀ ଦେବୀ । ଦାଣ୍ଡ ହାଟରେ କଥା ପଡ଼ିବ । ଲୋକେ କୁହାକୁହି ହେବେ, ଇଞ୍ଜିନିୟର ତ ଭଲଲୋକ, କାହିଁକି ତାଙ୍କର ଘରଣୀଙ୍କ ଉପରେ ସବୁବେଳେ କଟକଟ ହୁଅନ୍ତି ? କିଛି ଗୁଣ ଥିବ ନା ! ରମା ଓଳିଆ କି ସ୍ୱୈରିଣୀ କି ଗଜମୂର୍ଖ ନୁହନ୍ତି, ଇଞ୍ଜିନିୟର ତାଙ୍କ ଦରମା କଉଡ଼ି ସ୍ତ୍ରୀଙ୍କ ହାତରେ ସମର୍ପି ଦିଅନ୍ତି । ଆବଶ୍ୟକ ହେଲେ ନେହୁରା ହୋଇ ମାଗନ୍ତି । ତେବେ, କି ଗୁଣ ଦେଖି କଟକଟ, ଘରେ ସବୁବେଳେ ଅଶାନ୍ତି ?

କେତେ ଲୋକ କେତେ କଥା ଅନୁମାନ କରିବେ । ଅନ୍ୟ ଘରର ଘରଣୀମାନେ ମୁହଁକୁ ଅନାଇ ଠାରାଠାରି ହେବେ । ଫୁସ୍ ଫୁସ୍ କଥା କାନରୁ କାନକୁ ବୁଲିବ । ଲାଜରେ ମୁହଁ ଜଳିଯିବ । ଏପରି ସ୍ୱାମୀମାନଙ୍କ ଜୀବନ ଧରି ବଞ୍ଚି ରହିଲେ କି ଲାଭ ?

ଜୀବନ ହାରିଦେବା ଭଲ ।

ସେ ଅନ୍ୟ ସଂସାର କରନ୍ତୁ । ସୁଖରେ ରହିବେ । ଆନନ୍ଦରେ ତାଙ୍କର ବେଳ କଟିବ । ବଡ଼ ହାକିମ ସେ ହୋଇଛନ୍ତି । ବଡ଼ ଘରୁ, ସହରିଆ ଘରୁ, ପାଠୋଇ ଫେସନୀ ଝିଅ ସେ ଆଣିବେ । ଏ ଘରେ ଶାନ୍ତି ବିରାଜିବ ।

ହଁ, ସେ ଜୀବନ ହାରିବ ।

ରମା କହି କହି ହୋଇ କାନ୍ଦିଉଠିଲା । ଅଞ୍ଚଳରେ ଲୁହ ପୋଛିଲା । ଓଠ ଚାପି ରହିଲା । ସବୁ କାମ ଶେଷ ହୋଇଛି । ହାଣ୍ଡିରେ ଭାତ, ଡାଲି, ତରକାରି ଶୀତଳ ହେଲାଣି । ହେଉ, ସେ ତ ଉପାସରେ ଗଲେ, ପାଟିରେ ଦେଇ ଥୁ ଥୁ କରି କାଢ଼ିଲେ, ଖାଅ ବୋଲି କହିବାରୁ ଗୁଣ ବାହୁନି ଟାଣ କଥା କହିଲେ, ପଦେ ଉତ୍ତର ଦେବାରୁ କାଚ ଗ୍ଲାସ ଓ ତରକାରି ପ୍ଲେଟ୍ ତଳକୁ ଫୋପାଡ଼ି ଗର୍ଜନ କରି ଉଠିଗଲେ ।

ଦେହରେ ହାତ ଦେଇ ମାଡ଼ ମାରିନାହାନ୍ତି ସିନା, ମାଡର ବଡ଼ବାପ ହୋଇଛି । ମାଡ଼ ଖାଇ, ଗାଳି ଶୁଣି ରମାର ପେଟ ପୂରିଛି । ଆଉ କଅଣ ସେ ଖାଇବ ? ଭାତ ଡାଲି ଯେମିତି ଥୁଆ ହୋଇଥାଉ । ତାଙ୍କର ଚାକର ଚାକରାଣୀ ଖାଇବେ । ସେମାନେ ପେଟ ପାଇଁ ଚାକିରି କରିଛନ୍ତି । ଖାଇବେ, ଦରମା ନେବେ, ଆଗରେ ଭଲ ଭଲ ବୋଲି କହିବେ, ପଛରେ ମୁହଁ ମୋଡ଼ିବେ ଓ ଦୁର୍ନାମ ରଟାଇବେ ।

ଭୋକରେ ପେଟ ଗର୍ଜିଲା । ସକାଳେ ବିଛଣାରୁ ଉଠି ଏତେବେଳଯାଏ ସେ କାମରେ ଲାଗିଛି । ସୁକାନ୍ତ ଥରେ ପଚାରିଲେ କି, କଅଣ ଖାଇଲଣି ?

ରମା ବ ଗୃହକର୍ତ୍ତ୍ରୀ । ମୁଠାଏ ଖାଇବାକୁ ଓ ଖଣ୍ଡେ ପିନ୍ଧିବାକୁ ଦେଉଛନ୍ତି । ଗହଣାଗାଣ୍ଠି ଦ'ଖଣ୍ଡ କରିଦେଇଛନ୍ତି । ସେତକ ରମା ସାଙ୍ଗରେ ନେଇଯିବ ନାହିଁ । ଆଖି ବୁଜିଲେ ଦେହରୁ ଆଉ ଉତାରି ପଛେ କୋଦେଇରେ ଲଦି ମଶାଣିକୁ ନେବେ । ହଁ, ବ୍ୟାଙ୍କରେ ଟଙ୍କା କେଇ ଗଣ୍ଡା ଅଛି, ପୋଷ୍ଟ ଅଫିସରେ ତା ନାମରେ ସୁନାକୁ କେଇଶହ ରଖିଛନ୍ତି, ମାସକୁ ମାସ କିଛି କିଛି ରଖନ୍ତି ।

ତାକୁ ଧୋଇଧାଇ ରମା ପାଦୁକ ପାଣି ପିଇବ ନାହିଁ । ଯିଏ ରଖିଛନ୍ତି, ତାଙ୍କର ରହିବ । ନୋହିଲେ, କନିଆଁ ଘରଣୀ ଆସିଲେ ଭୋଗ କରିବ ।

ରହ, ନୂଆ ଘରଣୀ ଆସି ନାକରେ ଦଉଡ଼ି ଦେଇ ଘର ନ ଟାଣିବ ତ ମୋ ନାମରେ କୁକୁର ପାଳିବ । ସେତେବେଳେ ବଳେ ବୁଝିବ ।

ରମା ସ୍ଥିର କଲା ଯେ, ସେ ଜୀବନ ହାରିବ । ଘରପଛେ ପୋଡ଼ୁ, ମୂଷା ହାଣିଛଣା କେଉଁଠାଏ ପାଉ ।

ମା ମା ବୋଲି କବାଟ ବାଡ଼େଇ ରଙ୍ଗିଆ ଡକା ଛାଡ଼ିଲାଣି ।

ନିଆଁ ଲଗା ଟୋକା ଏତେକେ ବେଳକୁ ଅସିଲା । ତାକ ଗୁଡ଼ିଛି ତ କବାଟ ବାଡ଼ଉଛି କାହିଁକି ? ଯେତେ ଶିଖାଇଲେ ଶିଖୁନାହିଁ । ଇଏ ଉଠିଲେ ଉଲୁଗ ଲଗାଇ ଦେବ । ରଙ୍ଗିଆର କାନ ମୋଡ଼ି ଦୁଇ ଆପଡ଼ ନ ଦେଲେ ତା ମନରେ ପଶିବ ନାହିଁ ।

ରମା ଦାଣ୍ଡ କବାଟ ଖୋଲିଲା । ରଙ୍ଗିଆ ଦୂରେଇ ଠିଆ ହୋଇଛି । କୁନି ହାତରେ ଖଣ୍ଡେ ବାଡ଼ି ଧରି ଦରଖୋଲା କବାଟକୁ ବାଡ଼ଉଛି ।

ଆରେ, ଏଇ ଅବେଳଜ ତ ଠକ୍ଠକ୍ କରୁଛି, ରଙ୍ଗିଆର ଦୋଷ ନାହିଁ । କଖାରୁ ଗଛରେ ଲାଉ ଫଳିବ ନାହିଁ । ମୁହଁଟା ତ ବାପ ପରିକା । ଲମ୍ବା ନାକଟା, ଚଲୁବେଳେ ସତେ କି ଧିର ଡମଡମ । ଅଭୁଟ, ଅଟ୍ଟ ।

ରହ, ପାଇବୁ ଯେ, କେତେ ଟଗଲବହର ହୋଇଛୁ, ପୁଣି କଅଣ ହେବୁ ବଳେ ଜାଣିବୁ । ରଇଆ, ଯାବଜୀବ ଅସିବ । ତୋ ପିଠିରୁ ଚମ୍ପା ଛଡ଼ାଇବ । ବାପ ମୁଆଁଗୀ ହୋଇଛୁ, ସେଇ ବାପ ତତେ ଆଉ ଆଖିରେ ଦେଖିବ ନାହିଁ ।

କୁନୁ ଘର ଭିତରକୁ ପଳେଇ ଆସିଲା । ଚକ୍‌କଣ ବସି କରି ତା'ର ମୁଣ୍ଡ ଲୁଚାଇଛି । ମୁହଁରେ ଓ ହାତ ଗୋଡ଼ରେ ବାସନା ପାଉଡର ବୋଳିଛି । ଆଖିରେ କଜଳ ନାଇ ଦେଇଛି । କିଏ ଅଉ ହୋଇଥିବ ? ନିଶ୍ଚୟ ବାବୁଙ୍କ ଝିଅ ଗୋମତୀ । କେତେଥର କହିଲେଣି, ସେ କୁନୁକୁ ଜୋଇଁ କରିବେ ।

କରନ୍ତୁ, ପାଇବେ ସେ । ଫୁଲକାଗାଲି ଝିଅ ତାଙ୍କର ହାତ ପିଠିରେ ଲୁହ ପୋଛୁବ ! କଉ ଏବେ ମୁଁ ଥିବ ସେ ଦେଖିବ !

କୁନୁ ରମାକୁ କୁଣ୍ଢାଇ ଧରିଲାଣି ।

ତାକୁ ତଳୁ ଉଠାଇ ରମା ଚୁମ୍ବନ ଦେଲା । ଆଖି ଛଳଛଳ ହେଲା । ଗେଲ କରି ପଚାରିଲା, କିଏ ତତେ କଳା ନାଇ ଦେଇଛି ମ, ତତେ ଖେଳ କରୁ ନାହିଁକି କୁନୁ ?

ରଙ୍କିଆ ଘର ଭିତରକୁ ଆସି କହିଲା, ଡାକ୍ତରଘର ମା କୁନୁବାବୁଙ୍କୁ ଡବଲ ରୋଟି ଆଉ କ୍ଷୀର ଖୋଇଛନ୍ତି । କହିଲେ, ମାଅକୁ କହିବୁ, ମୋ ଜୋଇଁକି ଭାତ ଦେବ ନାହିଁ । ଯେ ସାହାବ ହେବ, ରୁଟି ଖାଇବ ।

ରମା ଉତ୍ତର ଦେଲା ନାହିଁ । ଦାଣ୍ଡ କବାଟ ବନ୍ଦ କରି ଭିତର ବାରଣ୍ଡାକୁ ଆସିଲା । କୁନୁକୁ ତଳେ ଓହ୍ଲାଇ କହିଲା, ଭଲପିଲା ହୋଇ ଯା ଖଟ ଉପରେ ଶୋଇପଡ଼ିବୁ ।

ବାଉଁଶ ଖଣ୍ଡି ହାତରୁ ଟାଣି ନେଇ ଦୁଆରକୁ ପକାଇ ଦେଲା । ପୁଣି କହିଲା, କୁନୁ ମୋର ସୁନା ପୁଅଟା, ଦୁଷ୍ଟ ହେବ ନାହିଁ, କାନ୍ଦିବ ନାହିଁ, କଥା ମାନିବ । ଚୁପ୍ କରି ଶୋଇପଡ଼ିବ । ଭୋକ ଏବେ ଲାଗିବ ନାହିଁ । ମାଉସୀ ତ ଦୁଧ ଖୋଇଛି, ନିଦରୁ ଉଠିଲେ କେତେ ଭଲ ଜେ ମୁଁ ଖାଇବାକୁ ଦେବି ।

କଅଣ ଦବୁ ମା ?

ରମା କୁନୁର ହାତ ଧରି ଖଟ ପାଖକୁ ନେଲା । ଉପରକୁ ଟେକି ଶୁଆଇ ଦେଲା । ଗୋଟେ ତକିଆଟି ମୁଣ୍ଡ ତଳେ ଦେଇ କହିଲା, ଆଖି ବୁଜ୍, ଶୋଇପଡ଼ । ମୁଁ ରଙ୍କିଆକୁ ଭାତ ଦେଇ ଆସେ ।

ମୁଁ ଭାତ ଖାଇବି ।

କୁନୁର ପିଠି ଆଉଁସାଇ ରମା କହିଲା, ନା, ଭାତ ଶୁଖିଲେଣି । କୁନୁ ମୋର ସୁନା ପିଲାଟା । ଅଖିବୁଜି ଚୁପ୍ ଚାପ୍ ଶୋଇପଡ଼ିବ । ନିଦରୁ ଉଠିଲେ ମୁଁ ତତେ ପରୋଟା, ପାଚିଲା କଦଳୀ, ଛେନା ଚକଟା ଖାଇବାକୁ ଦେବି ।

କୁନୁ ଅଖି ବୁଜିଲା ।

ରାତି ଛଟପଟ ହେଲାଣି । କେତେବେଳୁଁ ସେ ଶୋଇଛି । ବାପାଙ୍କର ଗର୍ଜନ ତର୍ଜନ ଓ ଗିଲାସ ପ୍ଲେଟ ଶବ୍ଦ ତାର ନିଦ ଭାଙ୍ଗି ପାରିନାହିଁ ।

ସୁକାନ୍ତର ସେ ଅତି ଗେହ୍ଲାଟିଆ, ଫେଲ କରିଛି । ଏତେ ରାଗ ରୋଷ ହୋଇ ଗସ୍ତରେ ଗଲାବେଳେ ବି ଶୋଇଲା ପିଲାଟାକୁ ବୋକ ଦେଇ ଗଲେ । ହଉ, ରହ, ସବୁ ଗେହ୍ଲାପଣିଆଁ ଶେଷ ହେବ ଯେ, ସାବତମା ଆସୁ । ସେଇ ବାପ ପୁଣି ଆଉ ଅଖିରେ ଅନାଇଁବ ନାହିଁ । ଜଣାଶୁଣା କଥା ।

ପିଲା ଦୁଇଟିଙ୍କୁ ପାଳିବ ବୋଲି ଦରବୁଢ଼ା ଗୋବିନ୍ଦବାବୁ ଆଉ ଥରେ ସଂସାର କଲେ । ପାଞ୍ଚ ବରଷ ଦ୍ୱିତୀୟ ବାହାକୁ ତିନିଟା ଛୁଆ ହେଲେଣି । ସବୁଗୁଡ଼ିକ ପୁଅ । ଆଗ ଘରଣୀର ଝିଅ ଦୁଇଟିଙ୍କର ଅବସ୍ଥା ବାରଣ୍ଡା ଦକଡ଼ା ହେଲାଣି । ଜଣକୁ ଦଶବରଷ । ଆରଟିକୁ ଆଠବରଷ । ନୂଆମାଆର ଟୋକାଏ ଲେଖା ଛୁଆଙ୍କୁ ବୋହି ବୋହି ଘରର ସବୁ କାମ କରିବେ, ତଥାପି ପେଟ ପୁରାଇ ମୁଠାଏ ଖାଇବାକୁ ପାଇବେ ନାହିଁ ।

କଣ୍ଠା ଦୋହଲୁଛି । କେଡ଼େ ଅଭେକା । ଯାଉଁ ପଦେ, ଅସୁଁ ପଦେ । ବଧା, ଗୋଇଠା । କାନ୍ଦିବାକୁ ଅଖିରେ ଲୁହ ନାହିଁ । ମା ମଲା ଦିନୁଁ ହସ ଓଠରୁ ଖସି ପଡ଼ିଛି । ବାପ କାଠ ବେପାର କରୁଛନ୍ତି । ଭଲ ରୋଜଗାର ହୁଏ । କନିଆଁ ମାଇପ ଗୋଟି ଗୋଟି କରି ସୁନା ଗହଣା ଗଢ଼ାଇ ପିନ୍ଧୁଛି । ଝିଅ ଦୁ'ଟାଙ୍କ ହାତରେ ପାଣିକାଠ ।

ଗୋବିନ୍ଦବାବୁଙ୍କର ଆଖି ଫୁଟି ଯାଇନାହିଁ । ନିଜେ ତ ପଦେ କହିବେ ନାହିଁ, ଚାରି ଲୋକେ ପଦେ ପଚାରିଲେ ଆଖି ଇଙ୍ଗିତରେ କହିବେ, ମୋ ଘର କଥାରେ ତମେ କିଏ ?

କେମିତି ହେବ ? ମୋ କୁନି, ମୋ ଇରା ଏତେ ଯନ୍ତ୍ରଣା, ଏତେ ଦୁଃଖ ସହିବେ ? ଏତେ ଅପମାନ ହେବେ ?

ସୁପ୍ତ ଅଗ୍ନି କ୍ରୋଧ ଜ୍ୱଳିଲା । ରମା ଓଠ ଚିପି ଧରିଲା । ଦୁଃଖ ଅଭିମାନର ତୋଫାନ ସାରା ଶରୀର ଦୋହଲାଇ ଦେଲା । ପୁଣି ଆଖିରୁ ବରକୋଳି ପରି ଲୁହ ଟୋପା ଟୋପା ହୋଇ ଝରି ପଡ଼ିଲା । ନାକପୁଡ଼ା ଥର ଥର ହୋଇ କମ୍ପିଲା । ଅଲରା କେଶକୁ ରମା ମୁଠା ମୁଠା କରି ଓଟାରିଲା ।

ନା, ଏମିତି ହେବ ନାହିଁ । ଏକା ସଙ୍ଗେ ମା, ପୁଅ, ଝିଅ ତିନିଏ ତିନିଏ ବିଷ ଖାଇ ଶୋଇପଡ଼ିବେ । ସମସ୍ତେ ନିଶ୍ଚିନ୍ତ ହେବେ ।

ଲୋକେ ପଛରେ ଖାରକଥା କହି ନିନ୍ଦା କରିବେ । ମନଇଚ୍ଛା ନିନ୍ଦା କରନ୍ତୁ । ରମା ଶୁଣିବାକୁ ନଥିବ । ପରର ଦୟା, ସହାନୁଭୂତି ଆହା ଉହୁ ପାଇବାକୁ ପିଲା ବଞ୍ଚି ବି ନଥିବେ । ଖବର ପାଇ ଗସ୍ତରୁ ସେ ଧାଇଁ ଆସିବେ । ମୁଣ୍ଡ ପିଟି କାନ୍ଦିବେ । ଗିଲାସ ପ୍ଲେଟ ଫୋପାଡ଼ିବାର ଫଳ, ନିଜ ପିଲାଙ୍କ ମା ଉପରେ ଗର୍ଜନ କରିବାର ପରିଣାମ ସେ ପାଇବେ ।

ପାଉନ୍ତୁ, କାହାର କଅଣ ଯାଏ ? ବେଶୀ ପାଠ ପଢ଼ିଛନ୍ତି । ବଡ଼ ହାକିମ ହୋଇଛନ୍ତି । ଭଲ ମଣିଷ ବୋଲି ସାଙ୍ଗମାନେ ଓ ଅଧୀନର କର୍ମଚାରୀମାନେ ଆଗରେ ପଛରେ ଗୁଣ ଗାଉଛନ୍ତି । ଉପର ହାକିମମାନେ କାମିକା ଅଫିସର ବୋଲି ପ୍ରଶଂସା କରୁଛନ୍ତି । ଏସବୁ ଗର୍ବ ନେଇ ସେ ବଳେ ନୂଆ ସଂସାର କରିବେ । କରନ୍ତୁ, କି ନକରନ୍ତୁ, ସେଥିରୁ ରମାକୁ କି ମିଳିବ ?

କିନ୍ତୁ—

ଆରେ, କେଡ଼େ ଝଘଟା କେଡ଼େ ଭୟଙ୍କର ଶବଦ । ମନକୁ ଅଣୁଛୁ । ଛି, ଛି । ପିଲ ଢେଙ୍କିଙ୍କି ଚାହିଁଲ । ଇଏ କଡ଼ ଓଲଟାଉଛୁ । କୁନୁ ଜଳଜଳ କରି ଚାହିଁଥିଲ, ଦୃଷ୍ଟି ପଡ଼ିବାରୁ ପୁଣି ଆଖି ବୁଜିଲ ।

ଅଶୁଭ ଶବଦ । ଗ୍ରହ ଅଟ୍ଟେଇଲ । ଠାକୁରେ ପିଲ ଦୁଇଟାଙ୍କୁ କୋଟି-ପରମାୟୁ ଦେଉନ୍ତୁ । ମୂଳଅ ମୂର୍ଖ ହୋଇ ସଂସାରରେ ରହନ୍ତୁ । ଲୋକେ କହିବେ ସୁକାନ୍ତ ଇଞ୍ଜିନିୟରଙ୍କର ପିଲ, ହାବଡମାଥାର ଅଭ୍ୟାଗତର ପାଇଁ ଏମିତି ହେଲେ । ନିନ୍ଦା ଅପମାନ ଯେ ହେବେ, ମୋ'ର କି ଥାଏ ? ଥିବ ନା ଶୁଣିବ ?

ରମା ବାରଣ୍ଡାକୁ ଆସିଲ । ରଙ୍ଗିଅକୁ ଭୋକ କଲଣି । ପର ପୁଅ, ଚାକିରି କରୁଛୁ, ମୁଠାଏ ଖାଇବ ତ !

ଡାଲି ଅଲଣା । ତରକାରି ଲୁଣିଆ । ଭାତରୁ ପେଜ ଗ୍ରୁଡ଼ ନାହିଁ । ଏସବୁ କାହିଁକି ହେଲ ? ପିଲ ଦୁଇଟା ହୁଲୁରି ଲଗାଇଲେ । ବାଟକୁ ଜଳଖିଆ ଦେବ ବୋଲି ଉଠା ଚୁଲିରେ ଯେ ପରଟା ଓ ଆଳୁ ଭଜିଲ । ଡାଲିରେ ଲୁଣ ନ ପକାଇ ରମା ଥରେ ଥରେ ତିଅଣରେ ଲୁଣ ପକାଇଲ ଅଜାଣତରେ । ସେଥିପାଇଁ ସୁକାନ୍ତ ଅଣ କ୍ରୁଦ୍ଧ ହେଲେ । କଚଡ଼ା ଫୋପଡ଼ା କଲେ । ଉପାସ ଭୋକରେ ରାଗ ତମତମ ହୋଇ ଚାଲିଗଲେ ।

ଅର୍ଦ୍ଦଳୀ ଅଗାଧୁଟା କେଡ଼େ ଓଲୁ ମ, ଟିଫିନ୍ କେରିଅର ନେଲନାହିଁ । ଦାଣ୍ଡଘର ଟେବୁଲ ଉପରେ ରଖା ହୋଇଛୁ । କେବଳ ଫ୍ଲାସ୍କଟା ନେଇଛୁ । ବାଟରେ ସେ ଖାଇବେ କଅଣ ? କ୍ଷୀର ଟିକିଏ ପିଇଲେ ତ ଭୋକ ମରିବ ନାହିଁ । ଖାଲି ପେଟ ଆଉଣ୍ଡି ହେବ । ଅଗାଧୁ ଉପରେ ନିର୍ଭର କରିବା ଠିକ୍ ହୋଇନାହିଁ । ଯିଏ ଗସ୍ତରେ ଯିବେ, ସେ ଜିନା ଆଗ ଦରକାରୀ ପଦାର୍ଥ ଗାଡ଼ିରେ ଥୋଇବେ, ଅନ୍ୟ ଉପରେ ନିର୍ଭର କଲେ ନିଜକୁ ଦୁଃଖ ସହିବାକୁ ହେବ, କଷ୍ଟ ଭୋଗିବାକୁ ପଡ଼ିବ ।

ରମା ଅଧୀର ଅସ୍ଥିର ହେଲା । ଛଟପଟ ହେଲା । ଏଘର ସେଘର ହୋଇ ଭାବିବାକୁ ଲାଗିଲା । ଜୀବନ ମୂର୍ଚ୍ଛା ପରିଶ୍ରମ ସେ କରୁଛନ୍ତି । ଟୁରରୁ କ୍ଲାନ୍ତ ହୋଇ ଫେରିଲେ ଅଫିସରେ କାମ ଗଦା ହୋଇଥାଏ । ଅଫିସରୁ ରାତି ଅଠଟାରେ ଫେରନ୍ତି । କ୍ଲାନ୍ତହୋଇ ବିଛଣାରେ ପଡ଼ି ଛଟପଟ ହୁଅନ୍ତି । ଜଳଖିଆ ତ ଛାଡ଼ିଲେଣି । ବେଳ ମିଳୁନାହିଁ ଖାଇବାକୁ ।

ରାତି ଅଠଟାରେ ବି କେବେ ବଡ଼ ହାକିମଙ୍କ ପାଖରୁ ଡାକରା ଆସେ । ଯେତେ ରାତ୍ ରାତ୍ ହେଲେ, କି ଘରେ ଥାଇ ହାକିମଙ୍କର ହସ୍ତପୁରୁଷ ଉଠାଇଲେ ବି ଯିବାକୁ ପଡ଼େ । ଚାକିରି କରୁଛନ୍ତି, ଦରମା ନେଉଛନ୍ତି, ଆଦେଶ ମାନିବାକୁ ହେବ ।

ଅଫିସ କାମ ନସରୁଣୁ ପୁଣି ଦଉଡ଼ ମୋଫସଲକୁ—କେଉଁଠି ବନ୍ୟା ପ୍ରତିକାର ପାଇଁ ନଈକୂଳରେ ନୂଆ ବନ୍ଧ ପଡ଼ୁଛି, କେଉଁଠି ନଈନାଳ ବନ୍ଧା ହୋଇ ବିଲମାଳରେ ପାଣି ମଡ଼ାଇବାର ବ୍ୟବସ୍ଥା କର୍‌ହେଉଛି, ଘୋର ଅରଣ୍ୟ ଓ ପାହାଡ଼ କନ୍ଦରେ ରାସ୍ତା ତିଆରି ହେଉଛି, କୋଠାବାଡ଼ି ତୋଳା ତ ମାମୁଲି କାମ, ନିତି ଲାଗି ରହିଛି ।

ନିଶ୍ୱାସ ମାରିବାକୁ ବେଳ ନାହିଁ । କାନ୍ତିବାବୁ ଓ ମୂଲିଆମାନଙ୍କ ସଙ୍ଗେ ଧକ୍ ଚକ୍ । ସେ ଦୁର୍ବଳ ହେଲେଣି । କହୁଥିଲେ, ତରତର ହୋଇ ଉଠାଣି ସ୍ଥାନରେ ଖଣ୍ଡେ ଦୂର ଚାଲିଗଲେ ଗୋଡ଼ ଥରୁଛି, ମୁଣ୍ଡ ଝାଇଁ ଝାଇଁ ହେଉଛି । ବେଳେ ବେଳେ ତଳିପେଟ ଦରଜ ହେଉଛି । ଛୁଟି ନେବାକୁ କହିଲେ ଉତ୍ତର ଦେଉଛନ୍ତି, ଅମୁକ କାମଟା ସରିବାକୁ ବସିଲାଣି, ଏତେ ପରିଶ୍ରମ କଲି, ଅମୁକ ମନ୍ତ୍ରୀ ଉଦ୍‌ଘାଟନ କରିବେ, ସୁନାମ ମିଳିବ । ଏତେ ପରିଶ୍ରମ କଲି, ଶେଷକୁ ଆଉ କିଏ ବିନା ପରିଶ୍ରମରେ ସମ୍ମାନ ନେବ ।

ଗୋଟିକ ପରେ ଗୋଟିଏ କାମ ଲାଗି ରହିଛି । କାମ କଅଣ ଛୁଟିବ ? ଔଷଧ ଖାଅ ବୋଲି କହିଲେ ସେ କହନ୍ତି, ଆପେ ଭଲ ହୋଇଯିବ । ଡାକ୍ତର-ବାବୁ ତାଙ୍କପାଇଁ ଭିଟାମିନ୍ ବଟିକା ଦେଇଥିଲେ । ଭାତ ଖାଇସାରି ଗୋଟିଏ କରି

ଦିନକୁ ତିନୋଟି ଗିଳିବାକୁ ହେବ । ଗୃହ ପାଞ୍ଚ ଦିନ ଖାଇଛନ୍ତି । ସମସ୍ତ ଓଣ୍ଡି ନଦେଲେ ନିଜେ ସେ ଖାଇବେ ନାହିଁ । ମନେପଡ଼େ ନାହିଁ ।

ଟେବୁଲ ଉପରେ ଔଷଧ ବୋତଲଟା ରଖା ହୋଇଛି । ସୁଟ୍‌କେଶରେ ରଖିବାକୁ ରମା ଭୁଲିଯାଇଛି । ସେ ନିଜେ ନେଇ ରଖିଲେ ନାହିଁ । ଭୁଲା ମନ । ଠାକୁରେ ତାଙ୍କ ଶୁଭରେ ଫେରାଇ ଆଣନ୍ତୁ । ସେ ବିରକ୍ତ ହେଉନ୍ତୁ କି ଯେତେ ଫୋପଡ଼ା କଚଡ଼ା କରନ୍ତୁ, ରମା ମନକୁ ନେବ ନାହିଁ । ବଟିକାତକ ହରୁ ଗିଳାଇବ । ଦୁର୍ବଳତା ଆସିଛି ବୋଲି ଚିଡ଼ା ଖୋଇ ଟଣଛନ୍ତି । ଦେହ ଭଲ ହୋଇଗଲେ ତାଙ୍କ ରାଗ-ରାଗ ପଣ ବଳେ ଭଲ ହୋଇଯିବ ।

ଘଣ ଜଙ୍ଗଲ ମଝିରେ ଗାମ । ଆପଦବିପଦ ଘୃଣିଆଡ଼େ ଡାକ ରହନ୍ତି । କେତେ କେତେ ଘଟଣା ସେ କହନ୍ତି । ଶୁଣିଲାବେଳେ ଦେହ ଶୀତେଇ ଉଠେ । ଡ୍ରାଇଭରଙ୍କୁ ଯେତେ ବୁଝାଇ କହିଲେ, ସେ ମାନେ ନାହିଁ । ବେଳଉଣ୍ଡି ମଦ ପିଇଥାଏ । ପବନ ବେଗରେ ଗାଡ଼ି ଚଳାଏ । ଖବର କାଗଜରେ ଜିପ୍ ଦୁର୍ଘଟଣା କଥା କେତେ ଥର ବାହାରିଲାଣି । କେଉଁଠି ପୋଲ ଉପରୁ ଲେ       ଛି । କେଉଁଠି ଗଛ ଦେହରେ ପିଟି ହେଉଛି । ଟେଗଡ଼ଗାଡ଼ି ଯଙ୍ଗେ କ ସାମନାରୁ ଧାଇଁ ଆସୁଥିବା ଜିପ୍ କି ଟ୍ରକ୍‌ରେ ମୁହାଁମୁହିଁ ଧକ୍‌କା ଲାଗୁଛି । ଜିପ୍ ଚୂନା ହେଉଛି ଓ ତା ମାଥିରେ ଆରୋହୀ । ଦିନେ ସୁକାନ୍ତ ବାହାଦୁରି କରି କହୁଥିଲେ, ନିଜେ ସେ ଜିପ୍ ଗାଡ଼ି ଭଲ ଚଳାଇ ଜାଣିଲେଣି । ଥରେ, ବ୍ରେକ ଦେଲେ ବି ଗୋଟିଏ ପୁରା ଦେହରେ ଘଷି ହୋଇଗଲା । ଅଉ ଥରେ, ଘାଟି ଉପର ଗଡ଼ାଣିରେ ତଳକୁ ଖସିପଡ଼ିଥାନ୍ତା, ଠାକୁରେ ବଞ୍ଚାଇଲେ ।

ଠାକୁରେ ନିଶ୍ଚୟ ସାହାହେବେ । କାହାର ସେ କେବେ ମନ୍ଦ ମନାସି ନାହାଁନ୍ତି, କ୍ଷତି କରିନାହାନ୍ତି । କେହି ତାଙ୍କ ଅକଲ୍ୟାଣ କରିବେ ନାହିଁ । ହାତଧରି ବାହାହେଲା ସ୍ତ୍ରୀ ଉପରେ ଭଲ-ମନ୍ଦରେ ବିରକ୍ତ ହେଲେ, ଦୁନିଆ ଲୋକଙ୍କର କି ଯାଏ ? ଠାକୁରମାନଙ୍କର କି ଯାଏ ? ସେମାନେ ସେବା ପୂଜା ଖୋଜନ୍ତି । ସେମାନେ ଭକ୍ତ ଲୋଡ଼ନ୍ତି । ଖେଉର ବାସନା ଶୁଙ୍ଘି ଖୁସି ହୋଇ ମନକାମନା ପୂର୍ଣ୍ଣ କରନ୍ତି ।

କାନ୍ଥରେ ଝୁଲୁଥିବା ଦଶଭୁଜା ଦୁର୍ଗାଙ୍କର ଛବି ତଳେ ମୁଣ୍ଡ ଲଗାଇ ରମା ପ୍ରାର୍ଥନା କଲା—ମା'ଗୋ, ସର୍ବ ବିପଦହାରିଣୀ, ସେ ସକୁଶଳରେ କର୍ମକ୍ଷେତ୍ରରେ ପହଞ୍ଚନ୍ତୁ । ତୁମରି ଦୟାରେ ହସଖୁସିରେ ଫେରିଆସନ୍ତୁ । ଦାଣ୍ଡରେ ଠିଆହୋଇ ଡାକୁଛନ୍ତି, ସବୁଦିନପରି, କଅଁଳ କୋହଳିଆ ସ୍ୱରରେ, ରମା, ରମା, ରମା—

ପ୍ରାଣପୁଲକା, ମନଦୋହଲା, ହୃଦନକଣା ସେ ଡାକ !

ଦୁଇଟି ପିଲାଙ୍କର ବାପା ହୋଇ ମଧ୍ୟ, ସେ କି ହଇଓ, କି ଶୁଣିଲଣି ବୋଲି ଡାକନ୍ତି ନାହିଁ । ପ୍ରଥମ ଦେଖା ଦିନ ତୁଣ୍ଡରୁ ଯେଉଁ ପାଟି ନେ ନେ ଡାକ ବାହାରିଥିଲା, ସେହି ନାମରେ ହେ ଡାକନ୍ତି ।

ରମା ତାଙ୍କ ତୁଣ୍ଡର ଭାଷା ଅପେକ୍ଷା ମନର ଭାଷା ଓ ଆଖିର ଭାଷାକୁ ଭଲ କରି ଜାଣେ । ସେ ଭାଷା ପ୍ରେମର ପାରାବାର । ସ୍ୱଚ୍ଛ, ନିର୍ମଳ, ସୀମାହୀନ । ଅଥଚ ଗମ୍ଭୀର । ଛୋଟ ବଡ଼ ଢେଉ ଉଠେ ପଡ଼େ । ତୋଫାନ ଆସିଲେ କେବେ ଭୟଙ୍କର ଦିଶେ । ବେଶୀବେଳ ରହେ ନାହିଁ । ପୁଣି ହୁଏ ଧୀର, ଶାନ୍ତ, ମନୋରମ । ଧରଣୀର ବେଳାଭୂମିରେ ମଥା ନୁଆଁଏ ।

ରମା ତ ଧରଣୀ ପରି । ପ୍ରେମମୟୀ ନାରୀ । ଜନନୀ, ସୃଷ୍ଟିକାରିଣୀ । ସ୍ଥିର, ଅଚଞ୍ଚଳ, ଆବେଗହୀନ, ଅନ୍ତର୍ମୁଖୀ, ହାସ୍ୟମୟୀ, ପ୍ରେମିକା !

ଦାଣ୍ଡ କବାଟରେ କାହା ହାତର ମୃଦୁ ଆଘାତ ।

ନିଶ୍ଚୟ ଜୟଶ୍ରୀ ଦେବୀ ଆସିଛନ୍ତି । ରଙ୍ଗିଆ ଖାଇସାରିଲଣି । ନିରୁଙ୍କିଆ ଟୋକା କାଳେ କବାଟ ଖୋଲିଦେବ, ଜୟଶ୍ରୀ ହସିହସିକା ଘର ଭିତରକୁ ପଶିଆସିବେ । ମୋଟାଳିଆ ମଣିଷ, ହାତିପରି ଦୋହଲି ଦୋହଲି ଚାଲନ୍ତି । ମୁଣ୍ଡରେ ଫୁଲମାଳ ଗୁଡ଼ାନ୍ତି । ଓଢ଼ଣା ଦିଅନ୍ତି ନାହିଁ । ଫୁଲର ବାସନା ତାଙ୍କ ପାଇଁ ଯଥେଷ୍ଟ ନୁହେଁ । କେତେ ଜାତିର ସୁଗନ୍ଧ ପାଉଡର ସେ ରଖିଛନ୍ତି । କେତେବେଳେ କେଉଁଟା ମୁହଁରେ ଦେହରେ ବୋଳନ୍ତି । ମହ ମହ ବାସ ଚହଟେ ।

ମଥାରେ ପାହୁଲ ପରି ସିନ୍ଦୂର ଟୋପା । ଆଖିର କଜଳ ଗାର ତଳ ପତାକୁ ମଡ଼ାଇ ପିନ୍ଧନ୍ତି । ମୁକ୍ତାପରି ଦାନ୍ତ ଧ'ଧ'ଡ଼ା । ପାନ ଖାଆନ୍ତି ନାହିଁ । ଓଠରେ ପାତଳ କରି ଗୋଲପି ରଙ୍ଗ ବୋଳନ୍ତି । ଜାଠଜାଠକା ଦାମିକା ଶାଢ଼ୀ ଓ ବ୍ଲାଉଜ । କେତେ ଢଙ୍ଗରେ ସେ ପିନ୍ଧନ୍ତି । ଶୋଭିବାର ଦମ୍ଭେ । ଅଫିସର ଗୃହିଣୀ, ମୁହଁର ହସ ମନ କିଣି ନିଏ । ଗେହ୍ଲେଇ କହନ୍ତି । ଅନ୍ୟର ମନରୁ ହବୁ ଭାବନା ସେ ସ୍ୱୈରକରି ନିଅନ୍ତି ।

ହଁ ମେଞା ଡାକୁଛନ୍ତି ପରା !

ରଙ୍ଗିଆ କବାଟ ଖୋଲିବାକୁ ଲେଣି । ଅଲକ୍ଷଣାଟା, ମୋତେ ପଦେ ପଚାରୁନାହିଁ । ଜୟଶ୍ରୀ ହସିହସିକା ପଶି ଆସିବେ । ତାଙ୍କର ଆଖି ଡୋଳା ଘୂରିଅଡ଼େ ଭ୍ରମିଯିବ । ପଚାରିବେ—କଅଣ କରୁଛ ଗୋ ଭଉଣୀ, ତମ ମୁହଁଟି ଆଜି କାହିଁକି ଶୁଖିଲା ଦିଶୁଛି ? ମୁଣ୍ଡ କାହିଁକି ବେଡାପରି କରିଛ ? ଆଖି ଦୁଇଟା ଫିକ୍କା ଦିଶୁଛି ? ଦରମଇଲା ଲୁଗା ପିନ୍ଧିଛ ? କି ତରକାରି ଆଜି କରିଥିଲ ? ବାବୁ ବିରକ୍ତ ହେଲେ କାହିଁକି ? ଆସ, ତମ ମୁଣ୍ଡ ବାନ୍ଧିଦେବି । ପିଲା ଦିଓଟି ତ ଶୋଇପଡ଼ିଛନ୍ତି, ଚାଲ କାହା ଘରକୁ ବୁଲିଯିବା ।

ରମା ଟେବୁଲ ପାଖକୁ ଯାଇ ଆଇନାରେ ମୁହଁ ଦେଖିଲା । ଅଞ୍ଚଳରେ ଆଖି ପୋଛିଲା । ଚିରୁଣୀ ଧରି କେଶ ସଜାଡ଼ିଲା ।

ରଙ୍ଗିଆ ଦାଣ୍ଡକବାଟ ଖୋଲିଲାଣି । କାହା ସଙ୍ଗେ କଥାଭାଷା ହେଉଛି ।

ଜୟଶ୍ରୀ ନୁହନ୍ତି । ଆଉ କିଏ ଆସିଛି । ଆଇନା ଓ ଚିରୁଣୀ ଟେବୁଲ ଉପରେ ରଖି ସେ ବାରଣ୍ଡାକୁ ଆସିଲା । ରଙ୍ଗିଆ ଚିରୁଟ କାଗଜ ଖଣ୍ଡେ ଧରି ପଦାରୁ ଆସିଲା । ରମାର ହାତକୁ ବଢ଼ାଇଦେଲା ।

ଲେଖା ହୋଇଛି—ରମା, ମୋତେ ମନିବ୍ୟାଗଟା ଦେବାକୁ ଭୁଲି-ଯାଇଛ । ଆମ ଅଫିସ ପିଅନ ହରିକୁ ପଠାଇଲି । ତା ହାତରେ ପଠାଇବ । ପଚିଶ ଟଙ୍କା ଦେଲେ ଚଳିବ । ମୁଁ ଅଫିସରେ ଅଛି, କେତେ ଖଣ୍ଡ ନକସା ଖୋଜୁଛି । ମିଳିଲେ ସଙ୍ଗେ ସଙ୍ଗେ ବୁଲିଯିବି । ଡେରି କରିବନାହିଁ । ଦୂରବାଟ, ଜଙ୍ଗଲ, ଘାଟି, ଅପାୟ । ରାତି ହେବଟି, ଜିପ୍‌ର ବ୍ୟାଟେରି ଦୁର୍ବଳ ।

—ସୁକାନ୍ତ

ରମାର ଓଠରେ ହସ !

ସେ ରଗରଗ ହୋଇ ଯାଇଛନ୍ତି; ଗ୍ଲାସ, ପ୍ଲେଟ, ଭାଙ୍ଗିଛନ୍ତି । ପାଖକୁ ନ ଆସି ଦୂରରେ ଥାଇ ଗୋଳେଇ ହେବେ । ମୋ ଅକ୍ଷର ନ ଦେଖିଲେ ସେ କେବେ ଗପ୍ପରେ ଯିବେ ନାହିଁ । ନଲଠା । ମନିବ୍ୟାଗ୍ ତାଙ୍କ ପ୍ୟାଣ୍ଟ ପକେଟରେ ଥିବ । ଆରେ, ନକ୍ସା ବଡ଼ା ତ ଟେବୁଲ ଉପରେ ବନ୍ଧା ହୋଇ ରଖା ହୋଇଛି ।

ହଣ ପିଅନ ଘର ଭିତରକୁ ଆସିଲା ।

ବାବୁ ଅଫିସ ଯାଇଛନ୍ତି ହର, ତାଙ୍କୁ ତମେ ଡାକିଦିଅ, ସେ ଖାଇକରି ଯିବେ ।

ଆଜି ଏକାଉଣ୍ଟେଣ୍ଟ୍ ବଦଳି ହେଲେ ଯେ, ଅଫିସରେ ଏବେଲା ଟିକିଏ ଖିଆପିଆ ଥିଲା । ଡିନଟା ବସ୍‌ରେ ସେ ଯିବେ । ତେଣୁ, ଏବେ ତାଙ୍କର ବଦାବଦ ଘୃ ଭୋଜି ହେଲା ! ବାବୁ ସେଇଠି ଜଳଖିଆ ଖାଇଲେଣି ।

କଅଣ ହୋଇଥିଲା କି ?

ହଣ ପିଅନର ପାକୁଆ ପାଟିରେ ହସ । କହିଲା, ତରତରିଆ କଥା ମା, ସିଙ୍ଗଡ଼ା, ପକୋଡ଼ି, ଦୁଇ ତିନି ପ୍ରକାର ମିଠା ଓ କପେ ଲେଖା ଘୃ । ଏକାଉଣ୍ଟେଣ୍ଟ୍ ଭଲ ଲୋକ ଥିଲେ । ଗୋଟାଏ ବିଧି ବିଧାନ ରକ୍ଷା କଥା । କେହି ବଦଳି ହେଲେ ଘୃ ଭୋଜିଟାଏ କରାହୁଏ । ସମସ୍ତେ ପେଟରେ ଖାଇକରି ଯାଇଥିଲେ । ଅଳ୍ପ ଖର୍ଚ୍ଚରେ କାମ ଚଳିଗଲା ।

ବାବୁ ଖାଇଛନ୍ତି ?

ପ୍ଲେଟରେ ପକୋଡ଼ି ଦୁଇଟି ଓ ଦରପାଚିଲା କଦଳୀରୁ ଅଧେ ଛାଡ଼ିଲେ ।

ରମା ହସିଲା । ମନକୁ ମନ କହିଲା, ଘୃ ଭୋଜି ହେବ ବୋଲି ନିଶ୍ଚୟ ସେ ଆଗରୁ ଜାଣିଥିଲେ, ତା ନ ହୋଇଥିଲେ ଅଲଣା ତିଅଣରେ ଲୁଣ

ଗୋଳାଇ ଖାଇ ଥାଆନ୍ତେ, ଲୁଣିଆ ଡାଲିରେ କାଗେଜି ଲେମ୍ବୁ ଚିପୁଡ଼ି ଥାଆନ୍ତେ । ଯେଉଁ ଗ୍ଲାସ ପ୍ଲେଟ ଭଙ୍ଗା ହେଲା, ସେତକ ତ ତାଙ୍କର ଝାଳବୁହା ଧନରୁ କଣା । ବୁଢ଼ିଆ ବୋଲି ସେ ନିଜକୁ ମନ୍ତେ, ବୁଢ଼ିଆପଣ ଜଣା-ପଡ଼ିଲା ଯେ ।

ନଅ ହଜ, ସ୍ୱେ ତାଙ୍କ ବାଟପାଇଁ ଜଳଖିଆ, ସ୍ୱେ ଔଷଧ, ନକ୍‌ସାବଡ଼ା —ରହ, ମନିବ୍ୟାଗ୍ ଖୋଜେ, କେଉଁଠି ସେ ପକାଇଛନ୍ତି ।

ଟେବୁଲ ଡ୍ରର ଭିତରୁ ମିଳିଲା । ପଚ୍ଚିଶ ଟଙ୍କାରୁ ଅଧିକା ଅଛି ।

ଉପର ଖୋଳରେ ରମାର ଗ୍ରୁପ ଫଟୋଟି ବି ଅଛି । କୁନୁ ପେଟରେ ଥିଲାବେଳେ ଫଟୋ ଉଠାହୋଇଥିଲା । ରମା ସେ ଦିନ୍ତି କାଢ଼ି ରଖିଲା । ତାଙ୍କର ଦରକାର ନାହିଁ, ଆଖିରେ ପଡ଼ିଲେ ବିରକ୍ତ ଲାଗିବ, ଓହୋ, ଯେଉଁ ଭଲପାଅନ୍ତି ତ !

ଫଟୋଟି କାଢ଼ି ଗୀତଗୋବିନ୍ଦ ବହି ଭିତରେ ରଖିଲା । ମନିବ୍ୟାଗ ହଜ ହାତକୁ ବଢ଼ାଇ ଦେଲା । କହିଲା, ଆଉ ଅଧିକ ଟଙ୍କା ଲୋଡ଼ା ହେଲେ ଘରକୁ ଆସି ସେ ନିଜେ ନେଇଯିବେ । ତମେ ଯାଅ । ହଁ, ଶୁଣ ହଜ, ଡ୍ରାଇଭରକୁ କହିଦେବ, ଅଟେଷ୍ଟ ଗାଡ଼ି, ବେଶୀ ବେଗରେ ଚଲାଇବ ନାହିଁ । ବାବୁଙ୍କୁ ଚଲାଇବାକୁ ଗାଡ଼ି ଛାଡ଼ିଦେବ ନାହିଁ ।

ବୁଢ଼ା ପିଅନ୍ ଝାଡ଼ଣରେ ପଦାର୍ଥଗୁଡ଼ିକ ବାନ୍ଧିଲା । ନମସ୍କାର କରି ବାହାରିଲା । ମନକୁ ମନ କହିହେଲା, ବାବୁ ମଟର ଗାଡ଼ି କିଣିବେ ବୋଲି ସରକାରଙ୍କଠୁଁ କରଜ ନେବାକୁ ବସିଛନ୍ତି । ସରକାରୀ ଗାଡ଼ିରେ ଚଲାଇବା ଅଭ୍ୟାସ ନ କଲେ କିଅଣ ନିଜ କଉଡ଼ିଦିଆ ଗାଡ଼ିରେ ଶିଖିବେ ?

ଗୃହିଣୀ ଆସିଲା ।

ରମା ଭାବିଲା, ସ୍ୱାମୀ ଗସ୍ତରେ ଯାଉଛନ୍ତି, ଯେଉଁଠି ହେଲେ କିଛି ଖାଇଲେଣି ତ ! ସ୍ୱାମୀ ବିଦେଶ ଯିବେ, ସେ ଘରଣୀ ହୋଇ ଉପାସ

ରହିଲେ ଭଲ ହେବନାହିଁ । ବଧୂ ରକ୍ଷା କରିବାକୁ ଗୃହାଏ ହେଲେ ତାକୁ ଡୋକିବାକୁ ପଡ଼ିବ । ଏ ଘରେ ପାଣି ଟୋପାଏ ମୁହଁରେ ଦେବାକୁ ମନ ହେଉନାହିଁ; ତଥାପି ସେ ବଧୂ ରହିବାକୁ ବାଧ୍ୟ ।

ବଧୂ ରକ୍ଷା କରିବାକୁ ରମା ଗୁହିଲା ଭାତ, ଅଲଣା ଡାଲି, ଲୁଣିଆ ତରକାରି ଖାଇ ବସିଲା ।

ଯାହାକୁ ଏତେ ଯତ୍ନ କରି ରାନ୍ଧୁଛୁ, ସେ ସବୁ ତୁମକୁ ରୁଚୁନାହିଁ । ରଙ୍ଗିଆ ସେକଥା ଆଗରୁ କହୁଥିଲା । ଏତେ ପରିଶ୍ରମ କରି ରାନ୍ଧୁଛୁ । ନୂଆ କାମ ନୁହେଁ, ପିଲାଦିନୁ ଏଇ କାମ ସେ କରିଆସିଛୁ । ନିଜ କାମକୁ ନିଜେ ନିନ୍ଦିବ ନାହିଁ । ଡାଲିରେ ଲୁଣ ଓ ତରକାରିରେ ଅମ୍ଳ ଦେଲେ ସବୁ ଠିକ୍ ହେବ ।

ଆରେ ରଙ୍ଗିଆ, ଅଣିଲୁ—

ରଙ୍ଗିଆ କଥା ମାନିଲା । ବେଶ୍ ରୁଚିକର ହେଉଛୁ । ଏତିକ ସେ କରି ପାରିଲେ ନାହିଁ, ରାଗିଲେ ? ସ୍ୱାମୀଭୋଜ ଖାଇବାର କଥା, ଭାତ ବାଢ଼ିବାକୁ କହିଲେ କାହିଁକି ? କହନ୍ତୁ ପଛେ, ଯିଏ ଯାହାକୁ ଦେଖି ନପାରେ, ଅନ୍ଧାର ରାତିରେ ଢ଼ିଙ୍କୁଣି ମାରେ । ହାତଗଣ୍ଠି ପଡ଼ିଲା ଦିନରୁ ଏମିତି ଚାଲିଛୁ । ତାଙ୍କ ସ୍ନେହ ଯେ ଲୋକଦେଖାଣ ।

ଏତେ ଭାତ ଆଳିରେ ଅଜାଡ଼ି ଦେଲୁ ?

ତମେ ଦେଖୁଛ ତ ମା' ମନାକରୁନା ।

ରଙ୍ଗିଆ ଉତ୍ତର ଦେଇ ଅବଶିଷ୍ଟ ଡାଲି ତରକାରି ବେଲାରେ ଅଜାଡ଼ି ଦେଲା । କହିଲା, ଶୁଖୁା ଭାତ ଢୋକିବାକୁ କଷ୍ଟ ହେବ ।

ରମା ଅଡ଼ୁଆରେ ପଡ଼ିଲା । ସ୍ୱାମୀ ଅନୁକୂଳ କରି ଯାଇଛନ୍ତି । ସ୍ତ୍ରୀ ଆଳିରେ ଅଇଁଠା ଭାତ ଛାଡ଼ିବା ଉଚିତ ନୁହେଁ । ସେ ପିବେ ଦୂର ବାଟକୁ ।

ଅଗାଧ ବାଟ । ଅନ୍ଧାର ରାତି । ଜଙ୍ଗଲ ପାହାଡ଼ । ମହୁଆ ଡୁଙ୍ଗୁରି । ପେଟ ପଛେ ଫାଟୁ, ନୋହିଲେ ଅଜୀର୍ଣ୍ଣ ହୋଇ ଧଇଁସଣ ହୋଇ ସେ ମରୁ, ସ୍ୱାମୀଙ୍କର ଅମଙ୍ଗଳ ନ ହେଉ ।

ଚଗଲା କୁନୁଟା ଶୋଇ ନାହିଁ । ଅଖି ବୁଜି ଛଟାଗାଲା ଖଟ ଉପରେ ପଡ଼ିଥିଲା । ଚୂନ ଚୂନ ଅସୁଛି । ଭାତ ମୁଠାଏ ନ ଖାଇଲେ ସେ ଅଟ୍ଟ ହେବ ।

ଅରେ କୁନୁ, ଭାତ ଖାଇବୁ ।

କୁନୁ ଅସି ପାଖରେ ବସିଲା ।

ଇରା ମା ମା ଡାକ ଛାଡ଼ିଲାଣି ।

ରଙ୍ଗିଆ, ହିଅକୁ ଅଣିବୁଟି, ଖାଇଲା ପାଖରୁ ଉଠନ୍ତୁ ନାହିଁ । ଆଲୋ ପାର, ତୁ ସେ ଲୁଗା, ଶାଢ଼ୀ ହକାଲା ଶୁଖାଇ ଦେ । ପିଲାଙ୍କ ଜାମା ବାଲଟିରେ ଚଖାହୋଇଛି । ପାବୁନ ଟିକେ ମାରି କାଚି ଦେ । ବାବୁ ଅନୁକୂଳ କରି ଯାଇଛନ୍ତି । ଧୋବଣୀ ଆଜ ଆସିବ ବୋଲି କହିଥିଲା, ଏତେ ବେଳ ହେଲାଣି ଆସିଲା ନାହିଁ । ଆସିଲେ ଆଉ ଧୋବାଘରେ ଲୁଗା ପଡ଼ିବ ନାହିଁ । ସବୁ ଲୁଗା ବାବୁ ଗସ୍ତରୁ ଫେରିଲେ ଯାଇଁ ପଡ଼ିବ । ତାକୁ ହେଇଥା କହିଦେବୁ ।

ଇରାକୁ କୋଳରେ ବସାଇଲା ।

ପିଲା ଦିଓଟିଙ୍କ ପାଟିରେ ଦ ଦ ଗୁଣ୍ଡା ଦେଲା । କଷ୍ଟେ ମଷ୍ଟେ ଅଧେ ଢୋକ ଅଧେ କାଢ଼ି ସେମାନେ ଉଠିଗଲେ ।

ସ୍ୱକରାଣୀ ପାର ହିଅକୁ କାଖ କଲା । ରଙ୍ଗିଆ କୁନୁର ହାତ ଧରି ନେଲା । ରମା ବାଧ୍ୟ ହୋଇ ସବୁ ଉଦରସ୍ଥ କଲା ।

ଅଲସ ଲାଗୁଛି । ଦିନ ଗୋଟାଏ ହେଲାଣି । ସୁକାନ୍ତ ବୋଧହୁଏ ତେଣେ ତେଣେ ବୁଲିଗଲେ ।

ଶ୍ରାନ୍ତି ଦୂର କରିବାକୁ ରମାର ମନ ହେଲା । ଆଖି ମାଡ଼ି ମାଡ଼ି ପଡ଼ୁଛି । କହିଲା, ପିଲାଙ୍କ ଘରେ ଖେଳାଉଥିବୁରେ ରଙ୍ଗିଆ, ପଦାକୁ ନେବୁ ନାହିଁ । ମୁଁ ଟିକେ ଶୋଉଛି । କିଏ ଯଦି ଆସେ କହିବୁ ମୋ ଦେହ ଭଲ ନାହିଁ ।

ରମା କଡ଼ଘରେ ପଶି କବାଟ କଲେ । ପଲଙ୍କ ଉପରେ ପଡ଼ି ଆଖି ବୁଜିଲା । ଅବଶ ଆଖିକୁ ନିଦ ଘୋଟି ଆସିଲା ।

ଜୟଶ୍ରୀଙ୍କର କର୍କଶ ଡାକରେ ନିଦ ଭାଙ୍ଗିଲା । ଆଖି ମଳି ମଳି ସେ ପଦାକୁ ଆସିଲା ।

ଛୁଇ ନେଉଟିଲାଣି । ଜୟଶ୍ରୀଙ୍କ କାଖରେ ଇରୁ । ତା ଆଖିରୁ ଦୁଇଧାର ଲୁହ ଗଡ଼ିପଡ଼ୁଛି । କୁନୁର ପାଟି ଶୁଭୁଛି ପଦାରୁ । ଭଉଣୀ ସଙ୍ଗେ ଅଳି କରୁଛି, ସେ ବାପା ପାଖକୁ ଯିବ ।

ଜୟଶ୍ରୀ ମୁଡ଼କେଇ ହସିଲେ । କହିଲେ, ଦିପହରଟାରେ ଏପରି ଅଜ୍ଞାନ ହୋଇ ଶୋଇଛ ? ପିଲାଟା ଗୁହାଳ ଧରି ଘଣ୍ଟାଏ ହେଲା କାନ୍ଦୁଛି । ଆମ ଘର କମ୍ପି ଯାଉଛି । ତମର ନିଦ ଭାଙ୍ଗୁ ନାହିଁ ? ତମ ବୃନ୍ଦାବଣୀ ପାର୍ବତୀ ସେତେ ବୁଝାଇବାକୁ ଚେଷ୍ଟା କଲେ ବି ଝିଅ ବୁଝୁନାହିଁ । ମୋ ପାଖରେ ଛାଡ଼ିଦେଇ ସେ ଗଲା । ନିଅ ତମ ଝିଅକୁ ।

ଲଜ୍ଜିତ ହୋଇ ରମା ମୁହଁ ଧୋଇଲା । ଅଞ୍ଚଳରେ ପୋଛିଲା । ଜୟଶ୍ରୀଙ୍କ କୋଳରୁ ଇରୁକୁ ନେଇ ତା'ର ମୁହଁ ପୋଛିଲା । ଗେଲକରି କହିଲା, ମାଉସୀଙ୍କ ପାଖରେ ଥିଲୁ ତ କାନ୍ଦିଲୁ କାହିଁକି ?

ପିଲାଟା ଅତି ଅଝଟିଆ ହୋଇଛି ମ ଭଉଣୀ, ଦଣ୍ଡକରେ ଉଲୁର ଲଗାଇ ଦେଉଛି ।

ରମା ଜୟଶ୍ରୀଙ୍କ ହାତ ଧରି ଘରକୁ ନେଲା । କହିଲା, ବସ ମୁଁ ସର୍ବତ୍ କରି ଆଣେ । ସେ ସହରରେ ଯିବେ ବୋଲି ସକାଳୁ ଉଠି କାମରେ ଲାଗିଥିଲି । ଦେହ ଅବଶ ଲାଗିଲା । ଖଟରେ ପଡ଼ି ଆଖି ବୁଜିବାରୁ ନିଦ ଘୋଟିଆସିଲା ।

ଜୟଶ୍ରୀ ଚଉକି ଉପରେ ବସିଲେ । କହିଲେ, ମୋର ଏବେ ସର୍ବତ୍ ଲୋଡ଼ା ନାହିଁ । ବେଳ ହେଲାଣି, ମୁନ୍‌ସଫ୍‌ବାବୁ କୋର୍ଟରୁ ଫେରୁଥିବେ । ତାଙ୍କୁ ଜଳଖିଆ ଦେଲେ ସେ ବୁଲି ବାହାରିବେ । ସେ ପୁଣି ଆଦେଶ ଦେଇଛନ୍ତି

ଯେ, ତାଙ୍କର ଫେରିବା ଆଗରୁ ମୁଁ ନିଜେ ହଜବାଜ ହୋଇ ପ୍ରସ୍ତୁତ ରହିଥିବି । ତାଙ୍କ ସଙ୍ଗେ ବୁଲିଯିବି । ଯେତିକି ନ କଲେ ଲୁଅଡ଼େ ମୋର ଗଣ୍ଠି ଅହୁରି ବଢ଼ିବ, ମୁଁ ହରଲ ହୋଇଯିବି ।

ରମା ହସ ହସ ହୋଇ କହିଲା, ସେଇଥିପାଇଁ ଆଗରୁ ହଜବାଜ ହୋଇ ରହିଛ ।

ଜୟଶ୍ରୀଙ୍କର ନୀଳ ପାତଳ ଶାଢ଼ୀ ତଳେ ଗୋଲାପୀ ବ୍ଲାଉଜ ଓ ଗୋଲାପୀ ସାୟା ଦେଖାଯାଉଛି । ଶ୍ୟାମଳ ସୁନ୍ଦର ମୁହଁରେ ପାଉଡ଼ର ପରଶ । ଓଠରେ ଗୋଲାପୀ ରଙ୍ଗ । କାନରେ ଧଳା ପଥର-ବସା ସୁଦର୍ଶନ ଚକ୍ର । ଦୁଇ ହାତରେ ସ୍ବର ଟି କରି ଡାଇମଣ୍ଡ କଟା ସୁନାକାଚ । ବେକରେ ସ୍ବରସରିଆ ଚେନ୍‌ହାର । ଧଳା ପଥରବସା ବଡ଼ ପେଣ୍ଡାଣ୍ଟ ଗ୍ରୀବ ଉପରେ ଝୁଲୁଛି । ଆଜି ତାଙ୍କର ସାଧାରଣ ବେଶ । ଭଲ ଦିଶୁଛନ୍ତି ।

ଜୟଶ୍ରୀ କହିଲେ, ନୋହିଲେ ସେ ମୁହଁ ଶୁଖେଇବେ । କିଛି ସିନା କହନ୍ତି ନାହିଁ ଲୋ ଭଉଣୀ, ତାଙ୍କର ଅକୁହା ତିରସ୍କାରର ତୋଡ଼ ସହିବା ଅତି କଷ୍ଟ । ତମ ପରିକା ଯଦି ମୁଁ ହୋଇଥାନ୍ତି, ତାଙ୍କର ଶାସନ ସହି ନ ପାରି କେବେଠୁଁ ପାଗଳ ହୋଇଯାଆନ୍ତିଣି କି ଜହର ଖାଆନ୍ତିଣି । ସେ ସିନା ତୁଣ୍ଡ ଖୋଲନ୍ତି ନାହିଁ, ପାଟିତୁଣ୍ଡ କରନ୍ତି ନାହିଁ, ଆଖିରେ, ହସ୍ତଚାଳନ ଓ ଢଙ୍ଗରେ ଯେଉଁ ତିରସ୍କାର କରନ୍ତି, ସେ ଝଡ଼, ସେ ତୋଫାନ ମନଭିତରର ସବୁ ସହାଗ, ଅଭିମାନ, ଆଶା ତଳେ ନୋଇଁଦିଏ । ହଳଧର ବାବୁ ସୁକାନ୍ତ ବାବୁଙ୍କ ପରି ଗର୍ଜିଲା ମେଘ ନୁହନ୍ତି । ମନକଥା କହିବ କି ନାହିଁ ରମା ସ୍ଥିର କଲା ।

ସୁକାନ୍ତ କ'ଣ ଗର୍ଜିଲା ମେଘ ? ସାନ ସାନ କଥାରୁ ବଡ଼ତର ସେ ସପ୍ତ ପୁରୁଷ ଉଦ୍ଧାରନ୍ତି । ଫୋପଡ଼ା କଚଡ଼ା ଭଙ୍ଗାରୁଜା ତ ଲାଗି ରହିଛି । ଉତ୍ତର ନ ଦେଲେ ଦୋଷ । ଉତ୍ତର ଦେଲେ ପଦକୁ ପଦ ବାଦାନୁବାଦ ହେଲେ । ଘରେ ଓ ବାହାରେ କିଏ ଅଛି, କିଏ ନ ଅଛି, ସେ ଜ୍ଞାନ ତାଙ୍କର ରହେନାହିଁ । ତୁଣ୍ଡକୁ ଯାହା ଆସେ, ସେ କହନ୍ତି ।

ସେ ରମାକୁ ଭଲ ପାଅନ୍ତି ନାହିଁ । ସଂସାର କରିଛନ୍ତି । ଆଉ ଗୋଟିଏ ବାହାହୋଇ ପାରିବେ ସିନା, ହାତ ଧରି ଧର୍ମପତ୍ନୀ କରି ଯାହାକୁ ଆଣିଛନ୍ତି, ତାକୁ ତ ଦୂରେଇ ଦେଇ ପାରିବେ ନାହିଁ ! ସେ ପୁଣି ଦୁଇଟି ପିଲାଙ୍କର ଜନନୀ ।

ସେ ଚାହାଁନ୍ତି ଜୟଶ୍ରୀଙ୍କ ପରି ପତ୍ନୀ । ସବୁବେଳେ ହସଖୁସିରେ ହୋଇଥିବ । ସଜବାଜ ହୋଇ ରୂପକୁ ଫୁଟିଲା ଫୁଲପରି ରଖିଥିବ । ହଁ, ଏପରି କ'ଣ ହୋଇପାରିବ ନାହିଁ ? ତେବେ, ଘରକଥା ବୁଝିବ କିଏ ? ପିଲାଙ୍କର ଯତ୍ନ ନେବ କିଏ ? ସବୁ କଲେ ବି କାହିଁରେ କେଉଁଠି ଟିକିଏ ତ୍ରୁଟି ହେଲେ କଥା ସରିଲା । ଭଲ କରିବାକୁ ସେ ପ୍ରାଣପଣ ଚେଷ୍ଟା କରେ । ତ୍ରୁଟି ରହିଯାଏ । ଭଗବାନ୍ ତାକୁ ସେହି ପ୍ରକୃତି ଦେଇ ଜନ୍ମ ଦେଇଛନ୍ତି । ନିପଟ ମୋଫସଲରେ ବଢ଼ି, ଅକଷ୍ଟରେ ଚଳି, ଜୟଶ୍ରୀଙ୍କ ପରି ରଙ୍ଗନଖା ଆଧୁନିକା ସେ ହୋଇପାରିନାହିଁ ।

ଆଖିରେ ଲୁହ ଛଳଛଳ ।

ଇରକୁ ତଳେ ଗୁଡ଼ି ସେ କହିଲା, ତାଙ୍କର ହାତ ଧରିଲା ଦିନୁଁ ମୁଁ ଜାଣିଥିଲି, ମୁଁ ତାଙ୍କର ଉପଯୁକ୍ତ ନୁହେଁ । ଚେଷ୍ଟା କଲେ ବି ହୋଇ-ପାରୁନାହିଁ । ମୁଁ ଯାହା, ସେଇଆ ହୋଇ ରହିବି । ସେ ବି ବଦଳିବେ ନାହିଁ ।

ଛି, କାନ୍ଦୁଛ ? କିପରି ସେ ନ ବଦଳିବେ ଦେଖିବା ଭଲା ! ତାଙ୍କୁ ସିନା ଆଉ ଛୁଏଁନାହିଁ, ଆଜିଯାଏ କଥା କହି ନାହିଁ । ଏଥର ସେ ଗସ୍ତରୁ ଫେରନ୍ତୁ, ମୁଁ ତାଙ୍କୁ କଥା କହିବି । ତାଙ୍କୁ ଥରେ ପଚାରିବି—

ରମାର ମୁହଁ ଶୁଖିଗଲା !

କଅଣ ମୁହଁରୁ ବାହାରିଗଲା ? ଜୟଶ୍ରୀ କଅଣ ପଚାରିବେ ?

କହିଲା, ତେମେ ତାଙ୍କୁ କିଛି ପଚାରିବ ନାହିଁ । ସେ ଆଣ୍ଠୁଆ ନେବ । ଭାବିବେ, ତମ ଆଗରେ ମୁଁ ଗୁହାରି କରିଛି । ଏବେ ତ ଏତେ ଚେଷ୍ଟା କରି, ଏତେ ଉଦ୍‌ବିଗ୍ନତା ସତ୍ତ୍ୱେ ତାଙ୍କୁ ମୁଁ ସୁଖୀ କରି ପାରିନାହିଁ, ତମର କେଉଁ କଥାରେ ସେ ବଦଳିବେ ? ଓଲଟି ତାଙ୍କ ମନରେ ଅଧିକ ଦୁଃଖ ହେବ । ସେ ମୋତେ କିଛି କହିବେ ନାହିଁ, ମୁହଁ ଶୁଖାଇବେ । ମୋ ମୁହଁକୁ ନଜରରେ ଚାହିଁପାରିବେ ନାହିଁ । ଭଉଣୀ, ତାଙ୍କର ଶୁଖିଲା ଅନୁତପ୍ତ ମୁହଁ, କରୁଣା ଭାବ ଓ ଲଜ୍ଜିତ ଆଖି ଦେଖିଲେ ମୋ ପିଣ୍ଡରୁ ପ୍ରାଣ ଉଡ଼ିଯିବ । ମୁଁ ତାଙ୍କର ଗାଳି ସହିବ ପଛେ, ଶୁଖିଲା ମୁହଁ ସହି ପାରିବି ନାହିଁ । ତାଙ୍କର ମନଟି ଅତି କୋମଳ ମ, ଅତି ପରିଷ୍କାର, କାଚ କେନ୍ଦ୍ରପରି ନିର୍ମଳ । ସେ ରୂପରେ ବିରକ୍ତ ହୁଅନ୍ତି—

ରମା ଝିଅକୁ ତଳୁ ଟେକି କୋଳରେ ଜାକିଲା । ମୁହଁରେ ଚୋକ ଦେଇ କହିଲା, ଏଇଟା ତାଙ୍କର ଅତି ଗେହ୍ଲାଝିଅ । ତମେ ତାକୁ ସଜବାଜ କରିଛ, ମୁଣ୍ଡ କୁଣ୍ଡାଇ ଦେଇଛ, ଆଖିରେ କଜଳ ପିନ୍ଧାଇଛ । ସେ ଥିଲେ କେଡ଼େ ଖୁସି ହୁଅନ୍ତେ ! ଝିଅକୁ କାନ୍ଧରେ ବସାଇ ଘୋଡ଼ା ହୋଇ ଡେଇଁ-ଡେଇଁକା ନାଚନ୍ତେ । ଝିଅ ତା ବାପ୍‌ଠେଲା ଅଣିଛି । ପିଲାଙ୍କ ସଙ୍ଗେ ପିଲା ହୋଇ ସେ ଖେଳନ୍ତି । ତମେ ଦେଖିଲେ କହିବ, ନିର୍ଲଜ୍ଜ ।

ତମେ କୁହ ନାହିଁ ?

ଶୋଧା ଖାଇବାକୁ କହିବ ? ସେ ତାଙ୍କର ଯାହା କଲେ ମୋର କ ଥାଏ ?

ବାଘ ସାପ ପରି ତମେ ତାଙ୍କୁ ଡର କାହିଁକି ? ଟିକିଏ ଶାଣ ହୋଇ-ପାରିଲେ ସେ ବର୍ଲେ ସୁଧାର ପିଲାଟି ପରି ବୋଲ ମାନିବେ । ପୁରୁଷଙ୍କ ପ୍ରକୃତି ସେଇଆ । ନଇଁ ପଡ଼ିଲେ ବାଧାଟିଏ ଥୋଇ ଦେବେ ।

ମୁନ୍‌ସଫ୍ ବାବୁଙ୍କ ସେକେଣ୍ଡ୍-ହ୍ୟାଣ୍ଡ୍ ଭକ୍ସାଲ ଗାଡ଼ିଟି ଆସି ଘର ଆଗରେ ରହିଲା । ଶସ୍ତାରେ କିଣିଥିଲେ । ବାରଦିନେ ତେର ରୋଗ ।

ସାତଦିନ ଚାଲିଲେ ଦଶଦିନ ଗାରେଜ୍‌ରେ ଶୋଇପଡ଼େ । ଏଇଥର ଭଲ ଚାଲିଛି । ପନ୍ଦର ଦିନ ହେଲା ହଇରାଣ କରି ନାହିଁ ।

ଜୟଶ୍ରୀ ଉଠିଲେ । କହିଲେ, ଯାଉଛି ଲୋ ଭଉଣୀ, ସେ ଆସିଲେଣି । କଚେରୀ ଫେରନ୍ତି; ଭୋକରେ ପେଟ ଗର୍ଜୁଥିବ ।

ଜୟଶ୍ରୀ ଘର ମହକାଇ ଉଠି ଚାଲିଗଲେ ।

ଦୀପା ତାଙ୍କର ଚଳନ୍ତ ପ୍ରତିମାକୁ ପଛରୁ ଚାହିଁଲା । ସେ ଚାଲିଗଲା ପରେ ନିଜେ ଏକା ହୋଇ ଶୂନ୍ୟ ଦୃଷ୍ଟିରେ ଅଗଣାକୁ ଅନାଇଁ ରହିଲା । ମନରେ ପ୍ରଶ୍ନ ଉଠିଲା, ଜୟଶ୍ରୀ ଆସିଥିଲେ କାହିଁକି ? କଅଣ ଦେଇଗଲେ ? ନେଇଗଲେ ତ ଗୁମର କଥା ।

ଦୁର୍ବଳ ମୁହୂର୍ତ୍ତରେ ଅସାବଧାନ ହୋଇ ସେ କହି ପକାଇଲା ଦାମ୍ପତ୍ୟ ଜୀବନର ଗୋପନ କଥା । ପର ଆଗରେ ନିଜକୁ ସେ ଅତି ଦୁଃଖିନୀ, ନିର୍ଯ୍ୟାତିତା, ଜୀବନର ଗୋପନ କଥା । ପର ଆଗରେ ନିଜକୁ ସେ ଅତି ଦୁଃଖୀନୀ, ନିର୍ଯ୍ୟାତିତା, ନିଃସହାୟା କରି ଠିଆ କରିଛି । ନିଜର ସ୍ୱାମୀ ଦେବତାଙ୍କୁ ନିର୍ଦ୍ଦୟ, ମାୟା-ମମତାହୀନ ମଣିଷ ବୋଲି ପରିଚୟ ଦେଇଛି ।

ସେ ନିର୍ବୋଧ, ବିଶ୍ୱାସଘାତକିନୀ । ତୁଣ୍ଡରୁ ଖସି ଯାଇଥିବା କଥା ଆଉ ଫେରି ଆସିବ ନାହିଁ । ଜୟଶ୍ରୀ ହୁଏତ ଆଉ କେତେ କ'ଣ ଲଗାଇ ମୁନସଫ ବାବୁଙ୍କ ଆଗରେ ବର୍ଣ୍ଣନା କରିବେ । ଲୋକଙ୍କୁ କହିବେ । ମୁହଁରୁ ମୁହଁ ଡେଇଁ ତିଳ ହେବ ତାଳ । ଦୁନିଆଁରେ ନିନ୍ଦା ରଟିବ, ଇଞ୍ଜିନିୟର ବାବୁ ଅବିବେକୀ, ନିଜର ଧର୍ମପତ୍ନୀକୁ ଭଲ ପାଆନ୍ତି ନାହିଁ, ବିଶ୍ୱାସ କରନ୍ତି ନାହିଁ, ଅତ୍ୟାଚାର କରନ୍ତି ।

କି ଭୁଲ କଲି ମୁଁ ?

ମୁହଁରୁ ମୁହଁ ଡେଇଁ ଲୋକାପବାଦ ଦିନେ ତାଙ୍କ କାନରେ ପଡ଼ିବ । ଆଗରେ ଠିଆହୋଇ, ମୁହଁ ଶୁଖାଇ, ଆଖି ଛଳଛଳ କରି ସେ ପଚାରିଦେବେ,

କହ ରମା, ତମକୁ ମୁଁ ଭଲପାଏ ନାହିଁ ? ସତ କହ, ତମ ମନରେ କ'ଣ ସେଇ ଧାରଣା ଅଛୁ ?

କି ଉତ୍ତର ସେ ଦେବ ?

ରମାର ଆଖିରୁ ଲୁହଧାର ଗଡ଼ିଆସିଲା ।

ପିଲାଦିଓଟି ଶୋଇପଡ଼ିଲେଣି ।

ରାତି ଆଠଟା । ଦାଣ୍ଡଘରେ ରଙ୍ଗିଆ ଆଲୁଅ ଜାଳି ଗୁଣୁ ଗୁଣୁ ହୋଇ ବୈଷ୍ଣବପାଣିଙ୍କର କେଉଁ ସୁଆଙ୍ଗ ପଢ଼ୁଛୁ । ରଙ୍ଗିଆର ସୁଆଙ୍ଗ ପଢ଼ାରେ ସଉକ । ହୋଲ ଦଶରେ କଏ ତାକୁ ଯାହା ଦେଲେ ଅଗ ସେ ପାଣିଙ୍କ ସୁଆଙ୍ଗରୁ ଦୁଇଟି କଣେ, ତାପରେ ଅଉ ଯାହା କରେ । ବାରମ୍ବାର ପଢ଼ି ମୁଖସ୍ଥ କରେ । ବାବୁ ଗସ୍ତରେ ଗଲେ ଅଫିସର ଅଉ ଜଣେ ପିଅନ ଆସି ଦାଣ୍ଡଘରେ ଶୁଏ । ରଙ୍ଗିଆ ସୁଅଙ୍ଗ ପଢ଼ି ତାକୁ ଶୁଣାଏଁ ।

ଆଜ ବେଶରେ ସମସ୍ତେ ଖାଇଥିଲେ । କାହାକୁ ଡାକ କରୁନାହିଁ, ସେପୋଇ କରିବା ଆବଶ୍ୟକ ନାହିଁ । ବାବୁ ଗସ୍ତରେ ଯାଇଛନ୍ତି । ରାତିରେ ଚୂଲି ନ ଜାଳିଲେ ଅଶୁଭ । ନ ଖାଇ ଶୋଇଲେ ଅମଙ୍ଗଳ ! ଦିନବେଳା ବଳିଲା ଭାତ ପଖାଳ ହୋଇଥିଲା । ପିଆଜ ଲଗାଇ ରଙ୍ଗିଆ ସେତକ ଖାଇଲା । ଚୂଲି ଜଳାଇ ଛୀର ଗରମ କରିଦେଲା । ପିଲାଦିହେଁ ଦି ଦି ଖଣ୍ଡ ବିସ୍କୁଟ ଓ ଗିଲାସେ କରି ଗରମ ଦୁଧ ପିଇ ଶୋଇଗଲେ । ପ୍ରବାସୀ ଘରେ ରମା ଉପାସ ଶୋଇବ ନାହିଁ ।

ପଲଙ୍କ ଉପରୁ ଉଠି ସେ ପଦାକୁ ଆସିଲା ।

ଆକାଶକୁ ଚାହିଁଲା । କଳାଧୂମର ମେଘ ଘୋଡ଼ାଇଛୁ । ତରାଟିଏ ବି ଦିଶୁନାହିଁ । ସିରସିରିଆ ଶୀତଳ ପବନ ବହୁଛୁ । ଦେହ ଥରଉଠୁଛୁ । ଅଦିନିଆ ମେଘ କେଉଁଠି ବର୍ଷିଲଣି ପରା । କେତେବେଳେ ସେ ଗଲେ, ପିଅନ ଆସି ଖବର ଯୁ ।ନରେ ଅବଶ୍ୟ ସେ ଶୁଭରେ ପହଞ୍ଚି ସାରିବେଣି ।

କେଜାଣି, କାଲେ ବାଟରେ ଥିବେ । ଅଗନାଗ୍ନି ଅରଣ୍ୟ ମଝିରେ, ପାହାଡ଼ମାଳ ମଝିରେ ଗାଡ଼ିର କଳ ଯଦି ବିଗିଡ଼ିଥିବ ? କେତେଥର ତ ବିଗିଡ଼େ ।

ଘୃଣ୍ଟା ଅଧ ହେଲା ।

ବାଣ୍ଡଘର କବାଟରେ ହାତ ମାରି ରମା ଡାକିଲା, ରଙ୍ଗିଆ !

କବାଟ ଆଉଜା ହୋଇଥିଲା । ଖୋଲିଗଲା । ରଙ୍ଗିଆ ଧଡ଼ପଡ଼ ହୋଇ ଉଠି ଆଗକୁ ଆସିଲା, ପଚାରିଲା, କଅଣ ମା ?

ଅଫିସରୁ କେହି ଶୋଇବାକୁ ଆସିବ ନାହିଁ କି ?

ହରି ସିଂହ ଆସିବେ ବୋଲି କହିଛନ୍ତି । ରାତି ଅଧିକ ହୋଇନାହିଁ । ସେ ଖାଇପିଇ ଶୋଇବାକୁ ଆସିବେ । ଟିକିଏ ଡେରି ହେବ ।

ପାଟଗିଲୁ ଆସିବାକୁ କହିଛୁ ?

ତା ନାରୁଣୀକୁ ଜର । ନ ଆସୁ ସେ । ହରିସିଂହ ଆସିବେ । ନୋହିଲେ ମୁଁ ରାତିଯାକ ଚେଇଁବି । ବଡ଼ ଠେଙ୍ଗାଟା ପାଖରେ ରହିଛି ମା, ରାତିସାରା ଏ ଆଲୁଅ ଜଳିବ । ଚୋରଯାକ ଧରାହୋଇ ହାଜତରେ ଅଛନ୍ତି । ଚୋରି କରିବାକୁ ଆଉ କେହି ନାହାନ୍ତି । ଅନ୍ଧାର ରାତି ହୋଇଛି ବୋଲି ଯଦି କେହି ନୂଆ ଚୋର ଆସେ, ମୋ ଠେଙ୍ଗାର ଗୁଣ ସେ ବଳେ ବୁଝିବ । ତମେ ଡରନା ମା, ଭିତରୁ କବାଟ କିଳି ଶୋଇପଡ଼ ଯା ।

ରମା ହସିଲା । କହିଲା, ତୋର ସାହସ ଅଛି । ଘଣ୍ଟା ପନ୍ଦରଟା ବନ୍ଦ ହେଉ ନାହିଁ । ହରିଙ୍କୁ ପଚାରିଲୁ କି, ବାବୁ କେତେବେଳେ ଗଲେ ? ଦୂର ବାଟ, ପହଞ୍ଚି ସାରିବେଣି କି ନାହିଁ । କେଡ଼େ ଅନ୍ଧାର ହୋଇଛି ରାତିଟା ! ପାହାଡ଼ିଆ ରାସ୍ତାରେ ବର୍ଷା ହୋଇଥିବ ।

ହଁ ମା, ହେଲେ, ଜିପ୍ ଆଲୁଅ ଅଧମାଇଲ ବାଟ ହାଲୋଳ କରିଯାଏ । ପରଦା ପକାଇ ଦେଲେ ଦେହରେ ପାଣି ପଡ଼ିବ ନାହିଁ । କେତେଥର ତମେ ଯାଇଛ, ଦେଖିଥିବ । ରାତିରେ ଜଙ୍ଗଲ ରାସ୍ତାରେ ଯିବାକୁ ମଜା ଲାଗେ

କେତେପ୍ରକାର ଜନ୍ତୁ ହାବୁଡ଼େ ପଡ଼ନ୍ତି । ରାତିରେ ଯିବାକୁ ବାବୁ ଭଲ ପାଆନ୍ତି ।

ଷ୍ଟେର ଡକେଟ୍‌ଡ ଆସିଲେ ରଙ୍ଗିଆ ଓ ହରି ପିଅନ ତାଙ୍କ ହଙ୍ଗେ ଲଡ଼ନ୍ତି କ କଅଣ କରନ୍ତୁ, ସେ ଘର ଭିତରୁ କବାଟ କିଲି ଶୋଇପଡ଼ିବ । ବାସନକୁସନ କ ଲୁଗାପଟା ଏଦାରେ ନାହିଁ । ଶିଳ ଚକି, ହାଣ୍ଡି ମାଠିଆ ମୁଣ୍ଡରେ ବୋହି ଷ୍ଟେରମାନେ ନେବେ ତ ନେଉନ୍ତୁ ।

ରମା କ୍ଷୀର ଗିଲାସେ ପିଇ ପଲଙ୍କରେ ଶୋଇଲା ।

ସତେ, ଜପ୍ ଗାଡ଼ିର ଆଲୁଅ ଅନେକ ଦୂରକୁ ପଡ଼େ । ହାଲୋଲ ଦିଶେ । ରାସ୍ତାରେ ଯାହା ଥିଲେ ଦେଖାଯାଏ । ଆପଦ ବିପଦ ଆସିବ ନାହିଁ । ବାଘ ଭାଲୁ କ ବାର୍‌ହା ଆଗରେ ଦିଶିଲେ ହର୍ଣ୍ଣ ଶୁଣି ଆଡ଼େଇ-ଯିବେ, ନିଜ ଜୀବନକୁ ତାଙ୍କର ଡର । ହାତୀପଲ ଯଦି ହାବୁଡ଼ି ଯିବେ, ମହା ବିପଦ । ତେବେ, ଏ ଜଙ୍ଗଲର ଅରଣ୍ୟରେ ହାତୀ ନାହାନ୍ତି ବୋଲି ସେ କହୁଥିଲେ ।

ଶଶକ ପଲ ପଲ । ଆଲୁଅ ଦେଖିଲେ ପଛକୁ ନ ଚାହିଁ, ଆଗକୁ ଚାହିଁ ଗାଡ଼ି ଆଗେ ଆଗେ ଦଉଡ଼ନ୍ତି । ନିର୍ବୋଧ, ନିରୀହ, ନିରମାଖି ଜନ୍ତୁ । ଖସି ପଳାନ୍ତି । ଜପ୍ ମଡ଼ାଇ ଶଶକ ଶିକାର କରିବାକୁ ଗାଡ଼ିକୁ ଏପାଖ ସେପାଖ କରି କେଉଁ ଅଫିସରଙ୍କ ଜପ୍ ପଥରରେ ଧକ୍କା ଖାଇଲା । ଚୂନା ହେଲା । ଗୋଡ଼ହାତ ଭାଙ୍ଗି ମୁଣ୍ଡ ଫାଟି ବାବୁ ଓ ଡ୍ରାଇଭର ଛ'ମାସ ଡାକ୍ତରଖାନାରେ ପଡ଼ିଲେ । ସେଥିକରେ ସରିଲା ନାହିଁ । କେତେ ଦଣ୍ଡା-ଚକଟା, ତଦନ୍ତ ଚାଲିଛି ।

ଶଶକ ମଲା ନାହିଁ । ପଥର ଖୋଲରୁ ଜଳଜଳ କରି ଅନାଇ ସେମାନଙ୍କର ଦୁର୍ଦ୍ଦଶା ଦେଖି ଦୁଃଖ କରିଥିବ ।

ସୁକାନ୍ତକୁ ରମା ବାରମ୍ବାର ଅନୁରୋଧ କରିଛି, କାହା ଉପରେ ଜପ୍ ଚଢ଼ାଇ ମାରିବାକୁ ମନ କରିବ ନାହିଁ । ସେଥିରେ ବଡ଼ପ୍ପଣ ନାହିଁ, ଖାରୁଆ ଅଛି । ସେପରି କରିବା ଷ୍ଟେର ଡକାୟତଙ୍କର କାମ ।

ସେ କଥା ମାନନ୍ତି । ସତେ, ସେ କେବେ ଏକାଥ ହୁଅନ୍ତି ନାହିଁ । ସେ କଥା ମାନିବେ । ଠିକଣା ସ୍ଥାନରେ ସବଂଶୁଭରେ ପହଞ୍ଚ ସାଙ୍କେଣି ।

ରମା ଅଲୁଅ କମାଇ ପଲଙ୍କ ଉପରେ ମଶାରି ଭିତରେ ପଶିଲା । କୁନୁ ଓ ରବି କେତେବେଳୁ ଶୋଇପଡ଼ିଲେଣି । ଆଖିପି ଦେଲା । ଖେଳ କରିବାକୁ ମନ କଲବଲ ହେଲା । ଶୋଇଲା ପିଲାଙ୍କୁ ଖେଳ କରିବାକୁ ବଡ଼ବଡ଼ିଆ ମନା କରନ୍ତି । କୋଡ଼ରେ ପୂରାଇ ଶୋଇ ପାରୁନାହିଁ । ବାପା କୋଳରେ ସେ ଶୋଉଛି । ତାଙ୍କୁ ସେ ବେଶୀ ଆଦରୁଛି । ସେ ଗସ୍ତରେ ଗଲେ ଧନ୍ଦ ବାଉଳାରେ କୁନୁ ହାତ ଅଣ୍ଡାଳ ତାଙ୍କୁ ଖୋଜେ । ଆଜି ବି ଖୋଜିବ ।

ରବି ପାଟି ପାକୁ ପାକୁ କରୁଛି । ଶୋଇ ଶୋଇ ସେ କ୍ଷୀର ଶୋଷେ । ମନେ ମନେ ସେଇଆ କରୁଛି । କ୍ଷୀରର ସ୍ୱାଦ ନ ପାଇଲେ ମୁହଁ ଫଟାଇ କାନ୍ଦିଉଠିବ । କୁନୁ ବି ଉଠିବ । ଦୁ' ପିଲା ନାଟ ଲଗାଇବେ । ବାପାଙ୍କୁ ଖୋଜିବେ । ଗସ୍ତରେ ଯାଇଛନ୍ତି କହିଲେ, କୁନୁ ଗୁହା ଧରିବ ।

ସେ ଶୋଇଲା । ରବିକୁ କୋଳକୁ ନେଲା । ଛାତିରେ ଜାକିଲା । ହାତ ବୁଲାଇ କୁନୁର ପିଠି ସୁପଡ଼ିଲା । ଆଖି ବୁଜିଲା । ତା'ର ଶୀତଳ କଅଁଳ ମାଂସଳ ବାହୁଟି ଯେଉଁ ବଳିଷ୍ଠ ଦେହରେ ଉଷୁମ ଟାଣି ସେପାଖକୁ ଓହଳ 'କୁନୁର ପିଠି ଥାଉସେ, ସେ ଦେହଟି ପାଖରେ ନାହିଁ । କେଉଁ ନିର୍ଜନ ଜଙ୍ଗଲର ମଶାପଲ ମଝିରେ ଛଟପଟ ହେଉଥିବେ । ମଶାରି ନେବାକୁ ସେ ଭୁଲିଯାଇଛନ୍ତି ।

ଅବଶ ଦେହ ବିଶ୍ରାମ ଲୋଡ଼ୁଛି ।

କ୍ଲାନ୍ତ ଆଖିପତା ମାଡ଼ି ମାଡ଼ି ପଡ଼ୁଛି । ଛଟପଟ ଅଧୀର ଅସ୍ଥିର ମନ ଝାଉଁଳି ପଡ଼ୁଛି । ଖେଦଭେଦୀ ନିଦ ଘୋଟି ଆସୁଛି କଳାଦୂମର ଦିଗନ୍ତବ୍ୟାପୀ ମେଘମାଳ ପରି । ଘଟିଲା ଘଟଣା ଓ ନ ଘଟିଲା କାମନା ବାସନା କେତେ ରୂପ ଧରି ତୋଫାନିଆ ସପନ ହାଥିରେ ଆସି ମନପରଦା

ଉପରେ ଗ୍ରୁମ୍ବାଟନ ଦେଖାଉଛୁ । ଅସମ୍ଭବ ସମ୍ଭବ ହାଉଛୁ, ପୃଥ୍ବୀଡା ପାଖେଇ ଆସୁଣି ବାସ୍ତବତା ରଡ଼ ଗ୍ରୁଡ଼ୁଛୁ ଚଡ଼ଚଡ଼ର ଶବଦ ପର । ମେଘମାଳଅା ନଦ ଦୂଲୁକ ଉଠୁଛୁ । ଫାଟି ଯାଉଛୁ । ଦୂରେଇ ଯାଉଛୁ ।

ନନ୍ଦ ଭାଙ୍ଗୁଛୁ ।

ରମା ଅଖି ଖୋଲଲ । ମଶାର ଭିତରେ କ୍ଷୀଣ ଅଲୁଅରେ ପିଲ ଦିଓଟିଙ୍କୁ ପାଖରେ ଦେଖୁଛୁ । ତାର ସ୍ୱାମୀ ଦେବତା ପାଖରେ ନାହାନ୍ତ । ଦୂର ବଙ୍ଗଳାର ଅନ୍ଧାରଥା କୋଠରୀ ଭିତରେ ମଶାପଲ ମଝିରେ ସେ ଛଟପଟ ହେଉଥିବେ ।

କେଡ଼େ ଭୟଙ୍କର ସ୍ୱପନଟାଏ—ମଥାନ ଉପରୁ ଚଢ ସାପ ଝୁଡ଼ି ବଛଣାରେ ପଡ଼ୁଛୁ । ସ୍ୱାମୀଙ୍କୁ ସେ ଶୋଇ ପଡ଼ିଛନ୍ତ । ଗୋଡ଼ ହାତ ଛ୍ଣ ର ଅଛୁ । ସାପ ଧୀରେ ଧୀରେ ଶେଯ ତଳେ ପଶୁଛୁ । ଏବେ ବ ଲଙ୍ଗୁଡ଼ ପଦାରେ ହଲୁଛୁ । କାଲସର୍ପ ! ଛୁଇଁଲେ ସର୍ବନାଶ । ରମା ଅଛୁ ହେଉଠି । ହାତରେ ଲଙ୍ଗୁଡ଼ ଧର ଓଟାର ତଳେ ପକାଉଛୁ । ଟର୍ଚ୍ଚ ଅଲୁଅ ଜଳାଉଛୁ । ପାଟି କରୁଛୁ, ଉଠମ, ଉଠମ, ସାପ--

ଦେହ ଥର ଉଠୁଛୁ । ଗ୍ରୁଡ କମ୍ପି ଉଠୁଛୁ । ବଙ୍ଗଳା ଘର ଏ ନୁହେଁ, ଜୟପୁର ସହରର ବସାଘର । ପାଖରେ ପିଲ ଦିଓଟି । ସେ ଯାଇଛନ୍ତ ଗସ୍ତରେ । ମା ଜଗତ୍‌ଜନନୀ ତାଙ୍କ ପାଖେ ପାଖେ ଅଛନ୍ତ । ସର୍ବଶୁଭରେ ସେ ଫେର ଆସିବେ ।

ଦୁଇହାତ ଯୋଡ଼ ରମା ମୁଣ୍ଡରେ ଲଗାଇଲ । ସ୍ୱାମୀ ପାହିଲେ ସେ ନଜେ ଠାକୁରାଣୀଙ୍କର ପୂଜା କରିବାକୁ ଯିବ, ଗୁହାରି କର ଅାସିବ ।

ଅାଖିପତା ମୁଦ ହୋଇଗଲ, ଘୋଟି ଆସିଲ ନଦ ।

ମନ୍ଦର ଭିତରେ ବେଶି ଭିଡ଼ ନାହିଁ । ତଥାପି କେତେ ଜାଗାରୁ କେତେ ସ୍ତ୍ରୀ ପୁରୁଷ ରୁଣ୍ଡ ହୋଇଛନ୍ତ । ଜାତ ଜାତକା ବେଶଭୂଷା ।

ସେମାନଙ୍କ ଗୁଣ୍ଡରୁ ଜାତ ଜାତକା ଶବ୍ଦ ବାହାରେ । ସନ୍ଧ୍ୟା ଆରତି ହେଉଛି । ଶଙ୍ଖ, ଘଣ୍ଟା ଓ ବ୍ରାହ୍ମଣମାନଙ୍କର ମନ୍ତ୍ରପାଠ । ଆଉମାନେ ମୀର ବ ।

କାମନା ମୀରଡ ସ୍ରୋତରେ ଛୁଟି ଯାଉଛି । ଜଗଜ୍ଜନନୀ, ମା' ଠାକୁରାଣୀ, ଶିବଙ୍କ ଘରଣୀ ପାର୍ବତୀଙ୍କର ପ୍ରତିମୂର୍ତ୍ତିର ଚରଣ ତଳେ ସେ କାମନା ଅଳି କରୁଛି, ମାନସିକ କରୁଛି । ଆଶାର ଅନ୍ତ ନାହିଁ । ସବୁ ଆଶା, ସବୁ କାମନା ଦେବୀଙ୍କର ଚରଣ ତଳେ ବିବିଧ କୁସୁମର ସୁରଭି ସାଥିରେ ମିଶି ମନ୍ଦିରରେ ପରିପୂର୍ଣ୍ଣ ହୋଇଛି । ମନ୍ଦିର ସୁରଭିତ ।

ରମା ଓଢ଼ଣା ତଳୁ କଣେଇ ଚାହୁଁଛି । ଦୃଷ୍ଟି ଭୁମି ଯାଉଛି । ଗୋଲାପୀ ଶାଢ଼ୀର ଓଢ଼ଣାଟି ଆପେ ଆପେ ମଥା ଉପରକୁ ଟେକ ହୋଇଯାଉଛି । ଆପେ ଆପେ ନୁହ, ପଛରେ ଠିଆ ହୋଇଛନ୍ତି ସ୍ନେହମୟୀ ଭାଉଜବୋଉ । ଲୁଗାଟିକୁ ଧୀରେ ଧୀରେ ସେଇ ଟାଣି ଦେଉଛନ୍ତି । ରମା ବାଧା ଦେଉନାହିଁ ।

କାହିଁକି ସେ ଭୁବନେଶ୍ୱର ଆସିଛି ଓ ପାର୍ବତୀଙ୍କ ମନ୍ଦିର ଭିତରେ ପଶିଛି ତାକୁ ଅଜଣା ନାହିଁ । ତା ପାଖରେ ମା ଠିଆହୋଇ ହାତଯୋଡ଼ି, ପାର୍ବତୀଙ୍କୁ ତନ୍ମୟ ହୋଇ ଚାହିଁ ରହିଛନ୍ତି । ବାପା ଭାଇ ମନ୍ଦିର ବାହାରେ କି ଭିତରେ ଅଛନ୍ତି, ରମାକୁ ଜଣା ନାହିଁ ।

କିଏ ସେ ଭଦ୍ରଲୋକ, ବଡ଼ ହାକିମ ହୋଇଛନ୍ତି ?

ଧନୀ ଘରର ପୁଅ । ପୁରୀ ସହରରେ କୋଠାଘର । ବାପ ତାଙ୍କର ଜମିଦାର । କେଉଁଠି ସେ ଠିଆ ହୋଇ ରମାକୁ ଦେଖୁଥିବେ ? ତାଙ୍କର ମା, ଭଉଣୀ, କି ଭାଉଜ ଆସି ଥିବେ ତ ! ସେମାନେ ମଧ୍ୟ ରମାକୁ ଭଲ କରି ଦେଖୁଥିବେ ।

ଲଜରେ ତା'ର ମୁହଁ ରଙ୍ଗେଇଗଲା । ସଙ୍କୋଚ ଓ ଭୟରେ ଦେହ ଥରି ଆପାଦମସ୍ତକ ଝାଳେଇଗଲା । ଦୃଷ୍ଟି ନୋଇଁଲା ।

ଆଉରି ଶେଷ ହେଉ ନାହିଁ କାହିଁକି ? ଏତେ ଡେରି ହବ ? ରମା ଦୃଷ୍ଟି ଫେରିଲା । ଆଖି ଖୁଲିଗଲା ।

ସେହି ଲୋକଟି ହୋଇଥିବେ ପରା ହାକିମ ହଳଧର ବାବୁ । ଦସ୍ଥାକରି ସେ ମୋଫସଲୀ ଝିଅଟିକୁ ବିବାହ କରିବାକୁ ରାଜି ହୋଇଚନ୍ତି । ଜାତକ ଭଲ ମିଳିଛି । ଦେବା ନେବାର ଦରଦାମ ତୁଟିଛି । ଜମି ବିକି ନଗଦ ସାତ ହଜାର ଟଙ୍କା ଦେବାକୁ ବାପା ଖୁଇ ମର୍ଗିଛନ୍ତି । ଗରୁଏ ଥିର ହୋଇଛି । ପାଠୂଆ ପୁଅ । ନିଜେ ସେ ଥରେ ଝିଅକୁ ଦେଖି ପସନ୍ଦ କରୁ । ଦିନ ବାର ଠିକ୍ କରି ହେବ ।

ଦେଖୁଛନ୍ତି ସେ । ଆଡେ଼ଇ ଆଡ଼େଇ କଣେଇ କଣେଇ ଗୁହୁଁଛନ୍ତି । ଖାରି ଚକ୍ଷୁର ମିଳନ ହୋଇଛି ପାଞ୍ଚଥର । ରମାର ଦେହ ମନ ଦୋହଲି ଉଠିଛି । ଏକୋଇଶ ବର୍ଷର ଯୁବତୀ ଝିଅ ସେ । ପର ଘରକୁ ବିଦା କରିବାକୁ ସମସ୍ତେ ବ୍ୟାକୁଳ । କେତେ ଯତ୍ନରେ ସାଉଜ ତାକୁ ସଜାଇଛନ୍ତି । ନିଜ ଦେହରୁ ଉତାରି ଗହଣାଗାଣ୍ଠି ପିନ୍ଧାଇଛନ୍ତି ।

ହଳଧର ବାବୁ ଅବଶ୍ୟ ପସନ୍ଦ କରିବେ ।

ବାହାଘର ସରିଲା ।

ବିଦାବିଧ, କନ୍ଦାକଟା ସରିଲା । ହଳଧର ବାବୁଙ୍କର ହାତ ସେ ଧରିଛି । ଜୀବନସଙ୍ଗିନୀ ହୋଇ ସେ ଯାଉଛି । ଓଢ଼ଣା ତଳୁ କଣେଇ ଗୁହିଁ ନାହିଁ । ପୁରୀ ସହରର ଦୋତାଲା କୋଠାର କେଉଁ କୋଠରୀରେ ତା'ର ବାସର ଘର ସଜା ହୋଇଛି ପରା ! ଫିକା ନେଳିଆ ବିଜୁଳି ଆଲୁଅରେ ଫୁଲଶେଯ ଝଟକି ଉଠୁଛି । ଦୂରରୁ ଶୁଭୁଛି ସମୁଦ୍ରର ଅବିରାମ ଗର୍ଜନ । ଅଷାଢ଼ର ବୁହାକୁ ବୁହା ଅସରା ବାତାସ୍ୱନର ଆରପାଖେ ଗୀତବାଦ୍ୟ ଓ ନୃତ୍ୟର ଆବାହନୀ ସୃଷ୍ଟି କରୁଛି । ଅଶାନ୍ତ ପୁରି ବେଳଣି ଜାଳୁଛି ।

ନୂଆଭଉ ଦେହଳୀ ଡିଆଁଇ କବାଟ ଆଉଜାଇ ନେଲେ ।

ପାଦ ଚଳୁନାହିଁ । ମୁଣ୍ଡର ଓଢ଼ଣା ଅନ୍ଧାର ତଳକୁ ରମା ଟାଣିଲା । କାନ୍ଥ କଡ଼ରେ ରଖା ହୋଇଥିବା ଆଲମାରୀର ଛାଇକୁ ସେ ଘୁଞ୍ଚିଗଲା ।

ପାଖକୁ ଆସିଲେ ସେ । ହାତଧରି ଟାଣିଲେ, ଗଳାରୁ ବଚନ ବାହାରିଲା, କେଡ଼େ କଅଁଳ ସ୍ୱର, ତୁନି ତୁନି କଥା, ଆସ, ସେଠିଟାରେ କାହିଁକି ଠିଆହେଲ ? ଆହ— !

ହାତ ଖସାଇ ନେଲା । ନଇଁପଡ଼ି ଦୁଇ ପାଦର ତଳେ ମୁଣ୍ଡ ଲଗାଇବାକୁ ଯାଉଥିଲା, ଆଖିରେ ଲୁହ ।

ସେ ହସି ହସିକା ଉଠାଇ ନେଲେ, ଛାତିକୁ ଆଉଜାଇଲେ । କବାଟ କଲଲେ । ରମା ଆଖି ବୁଜିଲା । ସେ ରମାକୁ ପଲଙ୍କ ଉପରକୁ ନେଇ ପାଖରେ ବସାଇଲେ । ପଚାରିଲେ, ଆଖି ଖୋଲି ଚାହିଁବ ନାହିଁ କି କଥା କହିବ ନାହିଁ ?

ମନ କହିଲା, ସେଦିନ ପାର୍ବତୀଙ୍କ ମନ୍ଦିରରେ ତମକୁ ଦେଖିଛି । କି କଥା କହିବ ପଚାରୁନ ?

ଏଁ, ପାର୍ବତୀ ମନ୍ଦିର, ଭୁବନେଶ୍ୱର, ହଳଧର ବାବୁ ?

ବାହାର ବାତାୟନର ସେପାଖେ କିଏ ହସି ଉଠୁଛି । ବିଜୁଳି ଚମକୁଛି ।

ଶଙ୍ଖ ମର୍ଜିଲା ନାହିଁ । ଜମି ବିକି ହୋଇ ପାରିଲା ନାହିଁ । ବାପା ଟଙ୍କା ଦେଇ ପାରିଲେ ନାହିଁ । ବାହାଘର ଭାଙ୍ଗିଲା ।

ହଳଧରବାବୁ କିଏ ? କାହାର ସେ ହସ ?

ଆରେ, ଜୟଶ୍ରୀ ! ସେ କାହିଁକି ମୁହଁ ଦେଖାଇ ପୁଣି ଅନ୍ଧାର ଭିତରେ ଛପିଲେ ?

ସେ ତ ହଳଧର ବାବୁଙ୍କ ବାହା ହୋଇନାହିଁ, ଏଠାକୁ ସେ ଆସିଲା କିପରି ?

ବ୍ୟସ୍ତ‌ସମସ୍ତ ହୋଇ ରମା ପଲଙ୍କରୁ ଉଠିଲା । ଟଳି ଟଳି ଦୁଇ ଚାରି ପାଦ ଆଗକୁ ଆସିଲା । ମୁଣ୍ଡରେ ଓଢ଼ଣା ପଛକୁ ଖସିଛି । ସେ କବାଟ ଖୋଲି ପଦାକୁ ଧାଇଁଯିବାକୁ ଉଦ୍ୟତ ହେଉଛି । ସେଇ ହଳଧର ବାବୁ ହେବେ ତ, ପଲଙ୍କ ଉପରୁ ଉଠି ପାଖକୁ ଆସୁଛନ୍ତି । ଥର ଥର ହାତକୁ ଧରି କଅଁଳେଇ ପଚାରୁଛନ୍ତି , ପଦାକୁ ଯିବ କି ?

ରମା ନାଗ ସାପ ପରି ଗର୍ଜି ଉଠୁଛି । ଆଖିରେ ଜଳୁଛି ଅନଳ । ଖରତର ନିଶ୍ୱାସ । ହାତ ଝଟକାଇ ନେଲା । ଫେର ଚିତ୍କାର କରି ଉଠିଲା । ଅବୋଧ ସେ ଭାଷା ।

ଆଖି ଆଗରେ ଦିଶିଗଲା ଆଉ କାହାର ମୁହଁଟି । ସେ ହଳଧର ନୁହନ୍ତି । ହାତଗଣ୍ଠି ପଡ଼ିଲା ବେଳେ ଯେଉଁ ଗମ୍ଭୀର ସୁନ୍ଦର ମୁହଁଟିକୁ ସେ ପାତଳ ରେଶମୀ ଗୋଲାପୀ ଓଢ଼ଣା ତଳୁ କଣେଇ ଚାହିଁଥିଲା, ସେଇ ତା'ର ଜୀବନର ସର୍ବସ୍ୱ ।

ସୁକାନ୍ତ ଆଗରେ ଠିଆ ହୋଇଛନ୍ତି । ମୁହଁ ଗମ୍ଭୀର ଦିଶୁଛି । ଆଖିରେ ବିସ୍ମୟ ।

ରମାର ଦୁଇ ଆଖିରେ ଲୁହ ।

ପୁରୀ ସହର ଏ ନୁହେଁ, କଟକ ସହର । କାଠଯୋଡ଼ି କୂଳ । ଦୁଇକୂଳ ପୂର୍ଣ୍ଣ କରି ଆବିଳ ଜଳ ଅବିରାମ ଶବଦ କରି ବହିଯାଉଛି । ସୁକାନ୍ତ ବାବୁଙ୍କର ଭଡ଼ାଦିଆ ଘର । ବାହାରେ ଅନ୍ଧାର । ବର୍ଷା କୁଟୁଛି । ତୋଫାନ ବହୁଛି । ବିଜୁଳି ଝଲି ଝଲି ଝଟକି ଉଠୁଛି । କାନ ଫଟା ଘଡ଼ଘଡ଼ିର ରଡ଼ି ।

ଡରମାଡ଼ିଲା କି ରମା ?

ଥରିଲା ଓଠରୁ ଖସିପଡ଼ିଲା ଭୟଭୀତ ପଦ, ନାଇଁ ତ !

ପୁଣି ସେ ହାତ ଧରିଲେ ।

କୁନୁ କାନ୍ଦ ଉଠିଲା । ହାତ ଅଣ୍ଡାଳି ମା'କୁ ଠାବ କଲା । ବାପା ବାପା ଚିତ୍କାର କରି ରମାକୁ କୁଣ୍ଢାଇ ଧରିଲା ।

ସପନ ଭାଙ୍ଗିଲା । ନିଦ ଭାଙ୍ଗିଲା ।

ରମା କୁନୁକୁ କୋଳକୁ ଅଉଜାଇ ଶେଜେଇ ନେଲା, ସପନ ଦେଖିଲୁ କି କୁନୁ, ବାପା ପରା ସହରରେ ଯାଇଛନ୍ତି । ଶୋଇପଡ଼ । ପାଟି କଲେ କକ ବାଇଆ ଆସିବଟି, ଧରନେବ ।

କୁନୁ ଜିଦା ଧରିଲା, ମୁଁ ବାପାଙ୍କ ପାଖରୁ ଯିବି ।

ରାତି ପାହିଲେ ସେ ଆସିବେ, ଶୋଇପଡ଼ କହୁଛି । କେଡ଼େ ଅନ୍ଧାର ହୋଇଛି ଆଜି ରାତିଟା । ବାହାରେ କକ ବାଇଆ ବୋବାଳି ଛାଡ଼ୁଛି । ଲୁଚି ଲୁଚି ସେ ବୁଲୁଛି । ପିଲାଙ୍କ ପାଟି ଶୁଣିଲେ ସେ ଆସିବ ।

କୁନୁ ଶୁଣିଲା ନାହିଁ । କକ ବାଇଆକୁ ସେ ଡରେ ନାହିଁ । ଉଠି ବସିଲା । ଇଏ ବି କାନ୍ଦ ଉଠିଲାଣି । ଅବେଇଜ ପିଲା ଦୁଇଟା ଏମିତି ରାତି ଅଧରେ ଉଠି ହଇରାଣ କରନ୍ତି । ସ୍ୱକାନ୍ତ ଥିଲେ ଦୁହିଁଙ୍କୁ ସେ ସମ୍ଭାଳି ନିଅନ୍ତେ । ରମାର ନିଦରେ ବ୍ୟାଘାତ ଘଟିଲେ ବି ସେ ହଇରାଣ ହୁଏ ନାହିଁ । ପିଲା ଦୁ'ଟାଙ୍କୁ ଖଣ୍ଡେ ଖଣ୍ଡେ ବିସ୍କୁଟ ଦେଲେ ସେମାନେ ଚୁପ୍ ହେବେ ପରା, ନୋହିଲେ ନାଟ ଲଗାଇବେ ।

ରମା ଉଠି ବସିଲା ।

ଘର ଭିତରେ ବିଜୁଳି ଆଲୁଅ ଜଳୁଛି । ବାହାରେ ଅନ୍ଧାର । ନିଶା ଗର୍ଜୁଛି । କଅଣ ସେ ସପନ ଦେଖିଥିଲା ପିଲାଙ୍କ କାନ୍ଦଣା ଭିତରେ ସେତକ ଗୋଳେଇ ହେଲା । କେବଳ ଜୟଶ୍ରୀଙ୍କର ତୋଫାନିଆଁ ହସଟା ପିଲାଙ୍କର ରଡ଼ିକୁ ଭେଦି କାନରେ ବାଜୁଛି ।

ଟ୍ରେଜେଣ ଆଡ଼ୁ ଅଧରାତିଆ ଘଣ୍ଟାର ଶବଦ ଶୁଭିଲା । ରାତି ଗୋଟାଏ ହେଲାଣି । ହଲଧର ବାବୁଙ୍କ ଘର ଅନ୍ଧାର ଦିଶୁଛି । ହୁଏତ ସେ ଜୟଶ୍ରୀଙ୍କ

କାନରେ ରୁନ ରୁନ କହୁଥିବେ, ଶୁଣିଲଣି, ସୁକାନ୍ତ ବାବୁଙ୍କ ସ୍ତ୍ରୀ ରମାର କଥା—

କହୁଥାଆନ୍ତୁ । ପିଲା ଦୁଇଟାଙ୍କୁ ମୁଁ ଭଲ ପାଏଁ ।

ଫିକା ଜହ୍ନରାତିର ଦେହଭଲୁଆ ଶୀତଳ, ଲହଡ଼ିଆ, ଧୀର, ହାଲୁକା ପବନ । ପିଲା ଦୁହିଁଙ୍କୁ ପୁଣି ନିଦ ହୋଇଗଲା । ରମା ମଧ୍ୟ ଅଚେତ ହୋଇପଡ଼ି ଶୋଇପଡ଼ିଲା । ଅଙ୍ଗେ ଲଗିଥିବା କେତେ ଘଟଣା, ଅନ୍ୟ ମୁଣ୍ଡରୁ ଶୁଣିବା କେତେ କଥା ଯାହାକି ମନରେ ଭେଦ ସୁଖଦୁଃଖ, ହରକାନ୍ଦ, ପ୍ରଶଂସା ଓ ନିନ୍ଦା, ସହାନୁଭୂତି ଓ ବନ୍ଧନ ଓ ହଁ-ନାହିଁର ଗୋପନ କମ୍ପନର ଶିହରଣ ଭଳି ଅତୀତର ଜୀବନରେ କେବେ ଆଣିଥିଲା, ନିଜ ମନର ଆଶା-ଦୁରାଶା, ହେଲା-ନହେଲାର ଉଚ୍ଛ୍ୱାସହତାଶ, ସବୁ ମିଶାମିଶି ହୋଇ ସପନ ରାଇଜରେ ସମ୍ଭବ ଓ ଅସମ୍ଭବ, ଆଦ୍ୟଅନ୍ତହୀନ କେତେ ଘଟଣା ସର୍ଜନା କଲା, ଚାଲିଯା ଲାଗିଲା—

ସନ୍ଧ୍ୟା ।

ପିଲା ଦୁଇଟିଙ୍କୁ ଘରର ପାଖରେ ଛାଡ଼ି ରମା ଓ ସୁକାନ୍ତ ବୁଲିଯାଇଛନ୍ତି । ଅଧା ଜହ୍ନର ଅସ୍ପଷ୍ଟ ଆଲୁଅ ଓ ଧୀର ପବନ ମନ ଭୁଲାଉଛି । ରମାର ହାତ ଧରୁଛି ସୁକାନ୍ତ । ରମା ଅଳପ ବିଚଳିତ ହୋଇ ଆଗକୁ ପଛକୁ ଚାହୁଁଛି । କେତେ ଲୋକ ଯାଆସ କରୁଛନ୍ତି । ହାତ ଖସାଇ ନେଉଛି ।

ସୁକାନ୍ତ ପୁଚ୍ଛିଲା । କହିଲା, ତୁମେ ମତେ ଭଲ ପାଉନାହିଁ ମୋ, ଏକଥା ମୁଁ ଜାଣେ । ମତେ ବାହା କରାଇବା ଆଗରୁ ତୁମର ବାପ ମା ତୁମର ମତାମତ ନେଇଥିଲେ ତୁମେ କଅଣ କହିଥାଆନ୍ତ ମୁଁ ଅନୁମାନ କରିପାରୁଛି ।

ରାଗିଲ କି ? କେତେ ଲୋକ ଯାଆସ କରୁଛନ୍ତି ଦେଖ । ସେମାନେ କଅଣ ଭାବିବେ ? ନିନ୍ଦାକରି କହିବେ । ଆମେ ଯେ ଘର କଣରେ ରହିବା

ଲୋକ । ଅମ କାନକୁ ଆସିବ ନାହିଁ । ତୁମ କାନକୁ ଯିବ । ସମସ୍ତଙ୍କ ଆଗରେ ପୁଣି ଦେବଦେବୀଙ୍କୁ ସାକ୍ଷୀ ରଖି, ତୁମେ ମୋ ହାତ ଧରିଛ । ବାଟଘାଟରେ ହାତ ଧରି ଆଉଥରେ ଗଳି ଅଳି ବାଟୋଇଙ୍କୁ ଦେଖାଇଲେ କ'ଣ ଅଧିକ ହେବ ?

ହଲଧର ବାବୁ ଜୟଶ୍ରୀ ଦେବୀଙ୍କ ହାତ ଧରି ବାଟରେ ଚାଲିଲା ବେଳେ ତ ଲୋକେ ଦେଖନ୍ତି । ପଛରେ ହୁଏତ ସେମାନେ ସମାଲୋଚନା, ଟାହିଟାପରା କରୁଥିବେ । ସେ ସବୁ କଥା ତାଙ୍କର କାନରେ କେବେ ପଡ଼େ ନାହିଁ । ପଡ଼ୁଥିଲେ ବି ସେମାନେ ହସି ଉଡ଼ାଇ ଦେଉଥିବେ ।

ତୁମେ ରାଗ ନାହିଁ, ମୋ ରାଣ । ଡାକ୍ତରଙ୍କ ସ୍ତ୍ରୀ ଗୋମତୀ ଦେବୀଙ୍କୁ ଦେଖିଛ ତ ? ସ୍ନେହ ସାଗର ପାରାବାର ସେ । ସଂସାରଯାକର ସବୁ ଲୋକ ତାଙ୍କର ବାପ, ଭାଇ, ମାମୁଁ, ମଉସା । ସମସ୍ତଙ୍କୁ ସେ ସେପରି ଭାବନ୍ତି । କାହାକୁ ଆଡ଼ ହୁଅନ୍ତି ନାହିଁ । ସମସ୍ତଙ୍କୁ କଥା କହନ୍ତି । ଦୁନିଆଁ ଯାକର ପିଲାଙ୍କୁ ନିଜ ପିଲାପରି ମଣନ୍ତି । ହେଲେ ସଂସାରରେ ଜଣେ ଲୋକ ଅଛନ୍ତି, ଯାହାଙ୍କୁ ସେ ଆଡ଼ ହୁଅନ୍ତି । ସେ ଜଣକ କିଏ ହୋଇଥିବେ କହିଲ ?

ସୁକାନ୍ତ ଭାବିବାକୁ ଲାଗିଲା । କହିଲା, ହଲଧର ବାବୁ ?

ନା, ହଲଧର ବାବୁଙ୍କ ସଙ୍ଗେ ସେ ତର୍କ କରନ୍ତି । ଥଟ୍ଟା କରି ସେ ଦିନେ ତାଙ୍କୁ କହୁଥିଲେ, ମୁଁ ଆରଘରେ ଥାଇ ଶୁଣିଛି, ମତେ ତ ଲାଜ ମାଡ଼ିଲା, ମୁଁ ଉଠି ଚାଲିଗଲି । ସେ ବଡ଼ ଅସଭ୍ୟ ଥଟ୍ଟା କରନ୍ତି ମ ।

କହ, କହ— ।

ଛି, କହିବି ନାହିଁ ।

ମୋ ରାଣ, କହ ।

ଆରେ ରାଣ ପକାଉଛ କାହିଁକି ? ଶୁଣିଲେ ତମେ ରାଗିବ । ତମର କଥା ।

ମୁଁ ରାଗିବି ନାହିଁ, କହ ।

ଗୋମତୀ କହିଲେ, ଠାକୁରାଣୀ ମନ୍ଦିର ଭିତରେ ତମେ ଯାହାକୁ ଦେଖିଥିଲ, ସେଇ ତମର ଭଣଜା ମ ଜଜ୍, ସେ ବି ତମକୁ କଟମଟ କରି ଅନେଇଥିଲା । ଜୟଶ୍ରୀଙ୍କ କାନରେ ହିତ ମିଛ କରି ତମେ ଯାହା ଗପିଥିଲ, ଜୟଶ୍ରୀ ସେତକ ସମସ୍ତଙ୍କ ଆଗରେ ପ୍ରକାଶ କରିଛୁ । ଶୁଣ ମ ଜଜ୍, ଗୋଟିଏ ତୁଣ୍ଡର କଥା ଜଣକ କାନରେ ଭେଦ ଯେତେବେଳେ ତା ପାଟିରୁ ବାହାରେ, ସେଥିରୁ ପାଞ୍ଚକଥା ହଜେ, ପନ୍ଦର କଥା ଲାଗେ । ଜୟଶ୍ରୀ କେତେ ହଜାଇ କେତେ ଲଗାଇଛନ୍ତି, ତାଙ୍କୁ ଜଣା । ହେଲେ, ସାରମର୍ମଟା ଏହି ଯେ, ତମ ଭଣଜା ଇଞ୍ଜିନିୟରଙ୍କର ଦୁଇ ପିଲା ଜନ୍ମ କଲେଣି ! ଇଞ୍ଜିନିୟରଙ୍କ ଭଣଜା ଡାକ୍ତରଙ୍କର ତିନି ଝିଅଙ୍କୁ ସଂସାରକୁ ଆଣିଲେଣି । କାହା ଭଣଜା ଝିଆରି ଆସି ତମ ଘରର ଘରଣୀ ହୋଇଛନ୍ତି ତାଙ୍କ ପର୍ବର । ସେଇଟା ଆଣ୍ଠୁବୁଡ଼ା ହୋଇ ବସିଛୁ ।

ରମା ହସି ଉଠିଲା । ଆଶା କରିଥିଲା, ସୁକାନ୍ତ ମଧ୍ୟ ବଡ଼ ପାଟିକରି ହସିବେ । ରହସିଆ କଥାକୁ ରହସ୍ୟ ମଣି ରମାର ହାତ ଧରିବେ । ଏଣିକି ତେଣିକି ଚାହିଁ ରାସ୍ତା କଡ଼ର ଗୋଡ଼ିବାଣ ଗଛ ଗୁଳଇତଳେ ମୁଣ୍ଡ ନୋଇଁ ଆଣି, ରମାର ପ୍ରଫୁଲ୍ଲିତ ଗାଲ ଉପରେ ଗେଲ କରିବେ । ଗେହ୍ଲେଇ ପଚାରିବେ, କହମ, ଜଜ୍ କଅଣ କହିଲେ, ଜୟଶ୍ରୀ କଅଣ କହିଲେ ?

ରମା କହୁଥାଆନ୍ତା, ଜଜ୍ କହିଲେ, ସତେ ଗୋମତୀ ଦେବୀ, ଏ ଦୁନିଆଁରେ କାହା ପିଲା କେଉଁଠି ଜନମି ବଢ଼ନ୍ତି, ମଣିଷ ହୋଇ କାହାକୁ ବାପ ବୋଲି ଡାକନ୍ତି, ସେକଥା ତମ କଥାରୁ ଏବେ ବୁଝିଲି ।

ଜୟଶ୍ରୀ ତ ଧାଇଁ ଆସି କହୁ ଥାଆନ୍ତେ, ଜଜ୍ ହେଲେ କ'ଣ ବୁଦ୍ଧି ଊଣା ହୋଇ ଯାଏ କି ? ମୁଁ କହୁଛି, କାହା ପିଲା କାହାକୁ ମାଆ ବୋଲି ସଂସାରରେ ଡାକନ୍ତି, ସେ ଖବର ଜଜ୍ ରଖିନାହାନ୍ତି କି କେହି ରଖି-ନାହାନ୍ତି ।

ଗୋମସ୍ତା ପଚାରିଲେ, କହନ୍ତୁ କଅଣ କହିବ ?

ଜୟଶ୍ରୀ କହିଲେ, ମହାପ୍ରସାଦ ନିର୍ବନ୍ଧ ସରିଲା । ଦିନବାର ସ୍ଥିର ହେଲା । ବାହାଁରେଇ ହୋଇ କେତେଥର ସେ ଆମ ଝରକା ଆଉ ଗୁହାଳରେ ନ ଜାଣିଲା ପରି ଟହଲ ମାରିଲେ । ଭଲ କରି ଦେଖନ୍ତୁ ବୋଲି ତାଙ୍କ ଟହଲ ମାରିବା ଆଗରୁ ପରଦାକୁ ଟେକି ଦେଇଥାଏଁ । କେତେଥର ଚାରିଆଖି ମିଳିଛି । ହାତଗଣ୍ଠି ପଡ଼ିଛି । ସବୁ ତ ଅଜାଣତେ ମନ ମଣ୍ଡଳର ଅତି ଗୋପନ ଅଭିନୟ ।

ଯାହାକୁ ଗୋପନ ବୋଲି କହୁ, ସେ କେମିତି ପ୍ରଘଟ ହୁଏ, କେହି କହି ପାରିବେ ନାହିଁ । ବୋଉ କହିଲା ବାପାଙ୍କୁ, ସେଇଟା ମାଇଗୁଟାଏ, ବଜାରୁଟାଏ, ତାକୁ ଜୋଇଁ କରିବ ନାହିଁ । ସେ ଶାଣ୍ଡ ହୋଇଥାନ୍ତେ ସେ ବୁଆଙ୍କୁ କହିଲେ, ସେଇଟା ପାଜିଲ୍‌ଟାଏ, ବେମହଙ୍ଗଟାଏ, ତାକୁ ବୋହୂ କରିବ ନାହିଁ ।

ସେ ବର ହୋଇଥାନ୍ତେ, ସେ ଅତି ସୁଧାର ପିଲା । ବାପ ମାଆଙ୍କର କୁହାର ବୋଲର । ନିସ୍ପୃହ, ଚରିତ୍ରବାନ୍ । ସେ ମାଆଙ୍କର ଅବାଧ ହେଲେ ନାହିଁ । ଆମ ଘର ଝରକା ଆଗରେ ଆଉ ଟହଲ ମାରିବାକୁ ଆସିଲେ ନାହିଁ । ବାପ ମାଆ ଯେଉଁଠି ସ୍ଥିର କଲେ, ସେଇଠି ସେ ବାହା ହେଲେ ।

ଦଇବ ଘଟସୂତ୍ର । ହଳଧର ବାବୁଙ୍କ ବଖରୁରେ କଥା ପଡ଼ିଲା । ସେ ବୁଆଙ୍କୁ ପଚାରିଲେ, ନାମଟି କଅଣ ? ଜାଣିଲେ, ନାମଟି ଜୟଶ୍ରୀ । ମୁହଁ ଖୋଲି ମନ ଆନନ୍ଦରେ କହି ଉଠିଲେ, ବାଃ, ଚମତ୍କାର ନାମଟି, ଜାତକ ପୁଛା ହେବା ଦରକାର ନାହିଁ ।

ଆଉ ଜୟଶ୍ରୀ ?

ତା' ଆଖିରେ ଲୁହ ଧରୁ ନାହିଁ । ଛି, କେଡ଼େ ଅସନା ନାମଟା, ହଳଧର ! ତାଙ୍କ ବାପ ମା'ଙ୍କର ରୁଚି ଅତି ମନ୍ଦ । ପିଲାଦିନେ ଗେହ୍ଲାରେ

ଡାକୁଥିବେ ଆରେ ହଲ । ଅଧିକ ସ୍ନେହ ସଙ୍ଗେ ଆଶୀର୍ବାଦ ମିଶାଇ ତଣ୍ଡିରେ କୃତ୍ରିମ କୋଧର ପରଶ ଦେଇ, ବାପ ବଡ଼ ପାଟି କରି ଡାକ ଛାଡୁଥିବେ, ଜୋରେ ହଲଅ— । ଛି, ଛି, ଅସନା ନାମଟା । ଗ୍ରାମଲୋକେ ସମ୍ମାନ ଦେଖାଇବାକୁ ତିନି ଅକ୍ଷରରେ କହୁଥିବେ ସବୁ ଭଲ ତ ହଲଦ ବାବୁ ? ଦୂରରୁ ଅଜଣା ଲୋକଙ୍କ କାନକୁ ଶୁଭୁଥିବ, ବଳଦ ବାବୁ ପରି କା ।

କାହିଁକୁ କାହିଁକି ଜୟଶ୍ରୀ ? ସ୍ୱର୍ଗରେ ଥିଲେ ଏପରି ବର ମିଳେ ଲୋ । ସେ ଦେଖିବାକୁ ବଳରାମଙ୍କ ପରି ସୁନ୍ଦର, ବଳୁଆ, ସରଳ । ସେ ପୁଣି ଜଜ୍ ହେଉଛନ୍ତି ।

ଜୟଶ୍ରୀ ରୁନ ରୁନ କହିଲେ ଅଈ ବୁଢ଼ୀକୁ, ଅତି ଅସନା ତାଙ୍କର ନାମଟା । ଆଈ ମ, ଅମରେନ୍ଦ୍ର ପରିକା ନାମଟିଏ ତାଙ୍କୁ ମିଳିଲା ନାହିଁ ।

ତୋ ମୁହଁକୁ ସରମ ନାହିଁ ଲୋ କରମନାଶୀ ! ହଇଲୋ, ନାଁରୁ କଅଣ ମିଳିବ ତତେ ? ବାଟି ଘୋଳକରି ପିଇବୁ କି ? ଗେରସ୍ତ ଭାରିଯାଙ୍କର ତ ଆମ ଗାଁରେ ଗୋଟିଏ ବୋଲି ନାମ । ସେ ଡାକିବ, ହଇହୋ । ତୁ ଡାକିବୁ ହଇହୋ— । ଫୁଲେଇପଣ ସେତିକି ଥାଉ । ତୋ ମନକୁ ଯେଉଁ ନାମଟି ପାଉଛି, ତୋ ଗେରସ୍ତକୁ ମନେ ମନେ ସେଇ ନାମରେ ଡାକୁନୁ ! ଅମରେନ୍ଦ୍ର ମାଇକ୍ରି କୁଆଡ଼େ ମାଇପକୁ ସାଙ୍ଗରେ ନେଇ ତା ସ୍ୱକର ଗାଁକୁ ଗଲାଣି ।

ଗୋମତୀ କହିଲେ, ଅମରେନ୍ଦ୍ର ବାବୁ ଆମ ଗେରସ୍ତଙ୍କର ବଡ଼ କରଣି । ସତେ ଗୋ ଜୟଶ୍ରୀ, ରୂପଟି ତ କାର୍ତ୍ତିକ ପରି ସୁନ୍ଦର, ସ୍ୱାସ୍ଥ୍ୟ ସେ ଭୀମ ପରିକା । ହେଲେ, ଲୋକେ କହନ୍ତି, ସେ ମାଇକ୍ରି । ଆଗକୁ ଆସିଲେ ମୁଣ୍ଡ ବଙ୍କାକରି ଠିଆ ହୁଅନ୍ତି । ତଳକୁ ଅନାଇ ଧୀରେ ଧୀରେ କଥା କହନ୍ତି । ଅଙ୍କା ହଁ, ଅଙ୍କା ହଁ କହି ବରକ୍ତ କରନ୍ତି । କପରି ନିଷ୍କୃତି ପାଇ ଅଗରୁ ଖସି ପଳାଇବେ ସେଥିକି, ସବୁବେଳେ ଉଦ୍‌ବିଗ୍ନ ଥିଲା ପରି ଜଣାପଡ଼ନ୍ତି । ହେଲେ, ଯେଉଁ କାମ କହିବ, ସେ କାମ ସେ କରିବାକୁ ଛାଡ଼ନ୍ତି ନାହିଁ । ଅମରବାବୁ ମାଇକ୍ରି ହୋଇ-ପାରନ୍ତି, କିନ୍ତୁ ତାଙ୍କର ତିନି ପୁଅ ହେଲେଣି । ଏଥର ଝିଅଟିଏ ହେବ ବୋଲି ସେ ଆଶା କରିଛନ୍ତି ।

ଜୟଶ୍ରୀ କହିଲେ, ଦେଖ ଗୋ ରମା, ମୋର ଧନ ପୁଅକୁ ସେ ଶୁକୁଟୀ, ଚେପେଟା ନାକ, ମୁଖ ଦାନ୍ତୁରୀ, କହଣଟି ତା'ର ନାମ, ରହ, ମୋ ଜଭ ଅଗରେ ଅଛୁ—

ଗୋମତୀ ମନେପକାଇ ଦେଲେ, ଇନ୍ଦିରା ।

ହଁ, ଇନ୍ଦିରା ।

ରମା କହିଲା, ଆପଣ ନା ସେଥିରୁ ଗୋଟିଏ କ ଦଓଟି । ଘର ସୁନ୍ଦର ଦଶିବ । ଗହଳ ଚହଳ ହେବ । ତାଙ୍କ ସେବା ଓ ଯତ୍ନରେ ବେଳ କଟିଯିବ । ନାନର ଦେହ ମୁହଁ ଘଷାଇବାରେ ସମସ୍ତ ନଷ୍ଟ ନ କର ସେଇ ପିଲାଙ୍କର ଅଞ୍ଚଳରେ ଆଖିର ପଲକ ପଡ଼ିଲା ପରି ଧନରାଶ କଟିଯିବ । ତାଙ୍କୁ କୋଳରେ ଧଇଲେ ନ ଫଳିଲା ଆଶା ଫଳିଲା ପରି ଲାଗିବ । ହାତ ପାତ ମାଗିଲେ ଇନ୍ଦିରା କ'ଣ ମନା କରବ ।

ଗୋମତୀ କହିଲେ, ଅଭାବଗ୍ରସ୍ତ ସଂସାର ତାଙ୍କର । ଘର କାମ କର କର ଶୁକୁଟୀ ଇନ୍ଦିରା କାଉଳ ବାଉଳ ହେଉଛୁ । ପିଲା ଧନଟା ଅଯତ୍ନ ହେଉଛନ୍ତି । ଚଡ଼ାଖୋଇ ହେବାରୁ ପିଲାଗୁଡ଼ାଙ୍କୁ ସେ କାଟିପିଟି ପକାଉଛୁ । ଗେରସ୍ତ ଅମରବାବୁ ବି ଇନ୍ଦିରାର କୋପରୁ ରକ୍ଷା ପାଆନ୍ତି ନାହିଁ । ଅମରବାବୁ କିଛୁ କହନ୍ତି ନାହିଁ । ପାହାନ୍ତା ପହରୁ ଉଠି ଘରର ସବୁ ପାଇଟି କରନ୍ତି । ଏପରି କି ଇନ୍ଦିରାଙ୍କର କାଠିଲାଗି ପାଇଁ, ସ୍ନାନ ପାଇଁ ପାଣି କାଢ଼ି ରଖିଦଅନ୍ତି । ବଗିଚା କରିବା ଓ ଗ୍ରେପେଇ କରିବାରେ ତାଙ୍କର ବଡ଼ ସଉକ୍ । ପିଲା ଧନୋଟି ଯେ ତାଙ୍କର ପ୍ରାଣରୁ ବଳି ଅଧିକ । ଇନ୍ଦିରା ତ ନାହିଁ କରବ ନାହିଁ, ତେବେ ଅମରବାବୁ ରାଜି ହେବେ ନାହିଁ ।

ଜୟଶ୍ରୀ କହିଲେ, ତମେ ଦହେଁ ସପନରେ ଉଡ଼ନ୍ତା କଥା ଭାବୁଛ । ଯାବତ ମାଆର ମନ ପଛେ ତଳିବ, ଯାବତ ବାପାର ମନ ତଳିବ ନାହିଁ । ଅମରବାବୁଙ୍କ ପିଲାଙ୍କୁ ହଲଧର ବାବୁ ଆଉ ଆଖିରେ ଚାହିଁବେ ନାହିଁ ।

ରମା ପେଟରୁ ଜନମିଛୁ ତ କୁନୁ, ଦେଇଟିକ ହେଲେ ଜଳ୍ ମଣିବେ ନିଜ ପିଲଟା ପାଖକୁ ଆସିଲା । ପୁଣି ମଣିବେ, ମନ୍ଦିର ଦେଖା ପରେ ଯେଉଁ ଭୁଲ୍‌ଟା ସେ କରିଥିଲେ, ସେତକ ସୁଧୁରି ଗଲା । ରମାର ପିଲାକୁ ବୋକ ଦେଇ ମୋ କୋଳକୁ ଦେବେ ଓ ମୋ ମୁହଁକୁ ଅନେଇ ହସି ହସି କହିବେ, ନିଅ, ଏଇ ତମର ପୁଅ, ଅତି ଯତ୍ନରେ ପାଳି ମଣିଷ କର ।

ଗୋମତୀ ମୁଣ୍ଡ ହଲାଇ ଭ୍ରୂଲତା ଟେକି ହସ ହସ ହୋଇ କହିଲେ, ହେଲା ଯେ, ପୁଣି ହେଲା ନାହିଁ । କୁନୁକୁ ସେ ତମ କୋଳକୁ ଦେବେ ଯେ, ଦେଲା ବେଳେ, ତମ ମୁହଁକୁ ଚାହିଁଲା ବେଳେ, ସେ ସେଇ ମୁହଁଟିକି ଆଉ କାହା ମୁହଁ ପରିକା ଦେଖିବେ, ଯେଉଁ ମୁହଁଟି ସେ ପାର୍ବତୀଙ୍କ ମନ୍ଦିର ଭିତରେ ଠାକୁରାଣୀଙ୍କ ଆଖି ଆଗରେ ପ୍ରଥମେ ଦେଖିଲେ ଓ କେହି ଦେଖିପାରୁ ନାହାନ୍ତି କି ଜାଣିପାରୁ ନାହାନ୍ତି ଛଳନାରେ କଣେଇଁ କଣେଇଁ ଛପନ ଥର ଦେଖିଥିଲେ ଓ ମନ କନକନ ହୋଇ ହଁ ହଁ କହୁଥିଲା ବେଳେ, ଧନ ଛନ ଛନ ହୋଇ ରହି ରହିର ଲଗାମ ଟାଣି ସେ ମନକୁ ଅଟକାଇ ରଖିଥିଲା । ସେ ମୁହଁଟି ଏଇ ରମାର ।

ଗୋମତୀ ରମାର ମୁହଁକୁ ହାତରେ ବୁଲାଇ ଧରି ପୁଣି କହିଲେ, ସତ କି ରମା ? ଅଗୋ ଜୟଶ୍ରୀ, ଦେଖିଲ, ଏ ମୁହଁଟି ତମ ଆଖିକି ମୋ ମୁହଁ ପରିକା ଦିଶୁଛି କି ନାହିଁ କହିଲ ? ଦିଶୁନାହିଁ ପରା ? ଇଞ୍ଜିନିଅରଙ୍କ ଆଖିକି ଯେମିତି ଦିଶେ ମ ! ହଁ ଦିଶୁଥିବ ତ !

ରମା କହିଲା, ଛି— ।

ଗୋମତୀ କହିଲେ, ହଁ, ଛି ଯେ, ଏ ମଣିଷଗୁଡ଼ାଙ୍କ ଆଖିକି ଗୋଟିଏ ମୁହଁ ବେଳକାଳ ଭେଦରେ ଭଲ ଭଲକା ଦିଶେ । ଦୂର ପର୍ବତ ସୁନ୍ଦର, ପର ପରଣୀତା ସୁନ୍ଦର । ଆଗକୁ ଆସିଲେ ବାରବର କେଡ଼େ ଧୀର, କେଡ଼େ ସୁଧାର, କେଡ଼େ ଉଦାର । ମୁହଁକୁ ଟିକିଏ ଚାହିଁବେ ନାହିଁ ଗୋ, ମନ୍ତ୍ର ଜପିଲା ପରି ମନେ ହେଉଥିବ, ପରଦାରେଷୁ ମାତୃବତ୍ । ଆଖିରୁ

ଖସିଲେ ନିଦ୍ଭୋଳାରେ ବସିଲେ, ରସିଲେ ତ ହସିଲେ, ପ୍ରେମସାଗରରେ ଭାସିଲେ, ଦୂର ପରବତ ସୁଷମା ଆଣି ପାଖ ପରବତେ ନେସିଲେ । ଅଭିଳ ଅଳଜୁଳ ଦଲ ମ !

ସମସ୍ତେ ହସିଉଠିଲେ— ।

ସୁକାନ୍ତ ଆଗେଇ ଯାଇଛନ୍ତି ।

ସଞ୍ଜ ପହର କେତେବେଳୁ ଗଡିଗଲଣି । ରାତିର ଅନ୍ଧାର ଘୋଟି ଆସିଲଣି । ଆରେ କେତେ ଦୂରକୁ ସେମାନେ ଚାଲି ଆସିଲେ ।

ଜୟପୁର ସହରର ଆଲୁଅମାଳ ଆଉ ଆଖିକୁ ଦେଖା ଯାଉନାହିଁ । ତାର ଆଲୁଅରେ ଗମ୍ଭୁଜଟି ଅସ୍ପଷ୍ଟ ଦିଶୁଛି । ଆଗରେ ପାହାଡ଼ । ଡାହାଣ ପାଖେ ନାକ୍‌ଟିଡ଼ଙ୍ଗର ପାହାଡ଼ ଉପରର ଚନ୍ଦନ ଗଛ ବଣ ଅନ୍ଧାରିଆ ଦିଶୁଛି । ବାଲମାଳ ସେପାଖ ଶ୍ରେଷ୍ଠ ପାହାଡ଼ ତଳେ ବାଢ଼େଣୀପୁଟ ଗ୍ରାମ । କେଉଁ ଘରୁ କ୍ଷୀଣ ଆଲୁଅର ଧାରଟିଏ ଆସୁଛି ।

ରମାର ଛାତିରେ ଛନକା ପଶିଲା ।

ସୁକାନ୍ତ ଆଗେଇ ଚାଲିଛି । ପୋଲ ପାର ହୋଇ ଘାଟି ଉପରକୁ ସେ ଉଠୁଛି । ଭଉଣୀକୁ କଥା ବାହାରୁ ନାହିଁ ।

ଏତେ ରାତିରେ କୁଆଡ଼େ ସେ ଯାଉଛନ୍ତି, କୁଆଡ଼କୁ ନେଉଛନ୍ତି ? କଥା କହୁନାହାନ୍ତି କାହିଁକି ?

ରମା ଭୀତ ସ୍ୱରରେ ପାଟି କରି ଡାକିଲା, ରହ ମ, ରହ ।

ସୁକାନ୍ତ ଆଉ ଦେଖା ଯାଉନାହାନ୍ତି । ରମାକୁ ଏକା ଛାଡ଼ି ଅଦୃଶ୍ୟ ହୋଇଗଲେଣି ।

ଅସ୍ତବ୍ୟସ୍ତ ହୋଇ ରମା ପାଟି କରି ଆଗକୁ ଧାଇଁଲା । ବାଟ କଡ଼ର ପଥର ଝୁଣ୍ଟିଯାଇ ତାଳ ଗମ୍ଭୀର ନାଳର ଜଳରେ ପଡ଼ିଲା । ଅଘାତ

ହୋଇ ନାହିଁ । ଅଳପ ପାଣି ହେଲେ ବି ପ୍ରଖର ସ୍ରୋତ । ଦୁଇ ପାଖେ ଘଞ୍ଚ ଜଙ୍ଗଲ । ହାତରେ କଅଣ ଧରି ଅଟକି ରହିବାକୁ ହାତ ବଢ଼ାଇଲା । କିଛି ମିଳୁନାହିଁ । ସେ ଭାସିଯାଉଛି ।

ଚିତ୍କାର କରି ଡାକ ଛାଡ଼ୁଛି, ହାଇ ହୋ ହାଇ ହୋ— ।

ଘଞ୍ଚ ଜଙ୍ଗଲ ଉଭେଇ ଯାଇଛି । ପଥର ଧରି ସେ ଅଟକି ରହିଛି । ଅନ୍ଧାର ଅପସରିଛି । ଫିକା ଆଲୁଅ । ନାଳ କୂଳରେ କୁନୁ ଓ ଇରି ଠିଆ ହୋଇ କାନ୍ଦୁଛନ୍ତି । କୁନୁ ଡାକ ଛାଡ଼ୁଛି, ମା, ମା— ।

ଦେହରେ କଅଁଳ ହାତର ପରଶ ଲାଗିଲା ।

ନିଦ ଭାଙ୍ଗିଲା । ସପନ ଅପସରିଗଲା । ଦେହାଙ୍ଗ ଥର ଥର ହୋଇ କମ୍ପୁଛି ।

ରମା ଆଖି ଖୋଲିଲା । ଖୋଲା ଝରକା ବାଟେ ପାହାନ୍ତି ଆଲୁଅର ଆଭା ଘର ଭିତରେ ପଶୁଛି । ଶୀତଳ ବାଆରେ ଲୋମ ଟାଙ୍କୁରି ଉଠୁଛି । ପାଖରେ ବସି କୁନୁ ଡାକୁଛି । ଇରି ଗଡ଼ି ଗଡ଼ି ଯାଇଁ ଗୋଡ଼ତଳେ ଶୋଇଛି । ସେ ଶେଯ ଓଦା କରିଛି ।

ରମା ବ୍ୟସ୍ତ ହୋଇ ଉଠିଲା । କି ଅସମ୍ଭବ ଭୀଷଣ ସ୍ୱପ୍ନ ସେ ଦେଖିଲା ସତେ !

ସୁକାନ୍ତ ଗସ୍ତରେ ଯାଇଛନ୍ତି । ପିଲା ଦିଓଟି ତା ପାଖରେ ଅଛନ୍ତି । ଏଇ ତା'ର ଘର, ଏଇ ତା'ର ସଂସାର । ନଦୀ, ନାଳ, ପର୍ବତ ନାହିଁ । ଅନ୍ଧାର ଘଞ୍ଚ ବଣ ପାହାଡ଼ ନାହିଁ । ପାହାନ୍ତା ବେଳର ନୀରବତାକୁ ଥରାଇ କୁନୁ କେବଳ କାନ୍ଦିଲା ସ୍ୱରରେ ଡାକ ଛାଡ଼ୁଛି, ମା, ମା— ।

କଅଣରେ କୁନୁ ?

ଭୂ କାନ୍ଦିଲୁ; ପାଟି କଲୁ—

ଡରିଲୁ କି ? ଆ ମୋ କୋଳକୁ ।

କୁନୁକୁ ସେ କୋଳକୁ ନେଲା । ଇଏ ଛଟପଟ ହେଲାଣି । ତା'ର ନିଦ ଭାଙ୍ଗିଲାଣି ।

ମଙ୍ଗଳବାର ।

ଜଗନ୍ନାଥଙ୍କ ମନ୍ଦିରରେ ଭୋଗ କରାଇଛି । ମହାଦେବଙ୍କ ମନ୍ଦିରକୁ ନଡ଼ିଆ ପଠାଇଛି । ସପନ କଥା ସତ ହୁଏ ନାହିଁ । ଯଦି ହୁଏ ନିଜକୁ ଦେଖିଲେ ପରକୁ ହୁଏ । ଗତ ରାତିରେ କି ସପନ ସେ ଦେଖିଲା, ସବୁ ତା'ର ମନେ ନାହିଁ । ମନେ ପକାଇବାକୁ ଡର ନାହିଁ । ଆଉଟି ହେଉଥିବା ମନର ବିକଳ ଭାବନା ଦେବୀଙ୍କ ଚରଣ ତଳକୁ ଥରକୁ ଥର ଛୁଟିଯାଉଛି, ଶରଣ ପଶୁଛି । କରୁଣ ସ୍ୱରରେ କରୁଣ ଭିକ୍ଷା କରୁଛି । ଅଳି କରୁଛି, ମୋର ପଛେ ମରଣ ହେଉ ମା, ସିଏ ଶୁଭରେ ସେ ଫେରିଆସନ୍ତୁ ।

ଶୁଭ କାଲି କେତେଥର ଅସି ଅଗଣାରେ ନାଚି ନାଚିକା, ରାବି ରାବିକା ଆଧାର ଖାଇ ଚାଲିଗଲାଣି । ହାତରୁ କଂସା ବାସନ ଖସି ପଡ଼ୁଛି । ବାଁ ଆଖି ଡେଉଁଛି । ଇଏ ତା ମନକୁ ବାପା ବାପା ବୋଲି ଡାକ ଛାଡ଼ୁଛି । ମଟର ଗାଡ଼ି ଶବଦ ଶୁଣିଲେ କୁନୁ ବାଡ଼ି ଖଣ୍ଡେ ଧରି ପଦାକୁ ଧାଇଁଯାଉଛି । ସେ କେତେ-ଥର କହି ହେଲାଣି, ଡ୍ରାଇଭର ତାକୁ ସଙ୍ଗରେ ନ ନେଇ ଏକା ବାପାଙ୍କୁ ନେଇ ଗଲା. ସେ ମାଡ଼ ମୂଲେଇଛି ।

ସରକାରୀ କାମ । ବଣ ପାହାଡ଼ମାଳ ମଝିରେ ରହଣି । ଦୁଇ ଦିନ ପାଇଁ ଯାଇ ପାଞ୍ଚ ସାତ ଦିନ ରହିଯିବା ଯେପରି ସ୍ୱାଭାବିକ, ପାଞ୍ଚ ସାତ ଦିନ ପାଇଁ ଯାଇ ଦିନଟିଏ ରହି ଫେରି ଆସିବା ମଧ୍ୟ ସେହିପରି । ନୂଆ ନୂଆ ଥିଲା । ଆସିବାକୁ ଡେରି ହେଲେ ମନ ଦକଦକ ହେଉଥିଲା । ଅଶୁଭ ଭାବନା ଘୁରି ଆସୁଥିଲା । ଛୁଆଖାଇ ବଲେଇ ପରି ସେ ହେଉଥିଲା । ବିନା କାରଣରେ ଦୁଇ ଆଖିରୁ ଦରଦର ଝରି ପଡ଼ୁଥିଲା ଲୁହ । ଅଭ୍ୟାସ ହେଲାଣି । ଚନ୍ଦ୍ରାଙ୍କ ମନ ଛୁଇଁ ନାହିଁ । ଠାକୁରେ ବଳେ ଶୁଭରେ ଫେରାଇ ଆଣିବେ ।

କାଲି ସେ ବିରକ୍ତ ହୋଇ ଯାଇଛନ୍ତି । ତାଙ୍କ ମନ ଗୋଳେଇ ହେଉଥିବ, ରମାକୁ ଏହା ଅଜଣା ନାହିଁ । ଫେରି ଆସିବାକୁ ଉଚ୍ଛନ୍ନ ହେଉଥିବେ । ଶୀଘ୍ର କାମ ଶେଷ କରି ସେ ବାହୁଡ଼ି ଆସିବେ । କେବେ ସେ କହିବେ ନାହିଁ ଯେ, ରାଗ କରି, ରମା ଉପରେ ବିରକ୍ତ ହୋଇ, ସେ ଗୃହ ଯାଇଥିଲେ, ଗୋଳେଇ ପୋଳେଇ ହେବାକୁ ସହଳ ସହଳ ଫେରି ଆସିଛନ୍ତି । ନ କହିଲେ ନାହିଁ । ତାଙ୍କ ଲାଜକୁ ମୁହଁ, ମଉନ ହସ, ଅବାଗିଆ ଚାହାଣି ତାଙ୍କୁ ଚିହ୍ନା ପକାଇ ଦିଏ ଯେ, ଅତୀତର ବ୍ୟବହାର ପାଇଁ ସେ ଅନୁତାପ କରିଛନ୍ତି ।

ଆଖିରେ କଜଳ ନାହିଁ, ମୁଣ୍ଡ ବନ୍ଧା ହୋଇ ନାହିଁ, ପିନ୍ଧିଲା ଶାଢ଼ୀ ମଇଳା ହୋଇଛି, ଅତି ସ୍ନେହରେ ଯେଉଁ ଗହଣା ଗଣ୍ଠି କାଟାଲଗର ଡ଼ିଜାଇନ ପ୍ରକାରେ ଗଢ଼ାଇ ଥିଲେ, ସେ ସବୁ ଦେହରେ ନାହିଁ, ବାକ୍ସ ଭିତରେ ସାଇତା ହୋଇ ରହିଛି, ଗୋଡ଼ରେ ଅଳତା ପିନ୍ଧା ହୋଇ ନାହିଁ ।

ଏ ସବୁ ତ୍ରୁଟି ଦେଖି ମଧ୍ୟ ସେ ଦେଖନ୍ତି ନାହିଁ । ଖାଲି ଆଖି ଦିଓଟିକୁ ଅନାଇଁ ରହନ୍ତି । ପାଖକୁ ଲାଗି ଲାଗି ଆସନ୍ତି । କାଖ ହେଲା ପିଲା ଝିଅକୁ କୋଳ କରୁଣୁ ଗୋଟାଏ ଚୁମାଟା ଖସି ଆସେ ରମାର ମୁହଁକୁ । ଗଲାବେଳେ ଯେଉଁ ଗୋଟାଏ ଘଟଣା ଘଟିଥିଲା, ଅଇଲାବେଳେ ସେତକ ରମା ବି ପାସୋରିଯାଏ ।

ରମା ଆଗ ଘରଦ୍ୱାର ସଫାସୁତୁରା କଲା । ବେତାଏ ଅଳିଆ । ଗୃହିଣୀ ହାତରେ ଭିତର ବାହାର ନିର୍ମଳ କରି ଧୂଆଇଲା । ସୁକାନ୍ତ ଏଇଆ ଚାହାନ୍ତି । ଘର ଦର୍ପଣ ପରି ଝଟକୁଥିବ । ଦେଖିଲେ ଖୁସି ଲାଗିବ । ଏତକ କରିବାକୁ, ଲୁଗାପଟା ସାଇତି ରଖିବାକୁ ଓ ବହିଗୁଡ଼ିକ ଝଡ଼ାଝଡ଼ି କରି ସଜାଇ ରଖିବାକୁ ଧନ ଖରଚ ହୁଏ ନାହିଁ । ମନ ଥିଲେ ହେଲା । କିନ୍ତୁ, ରମାକୁ ତ ବେଳ ମିଳେ ନାହିଁ । ପିଲା ଦୁଇଟା ଧୂଳିରେ ଲାଗାଇ ଥାଆନ୍ତି । ଅଟ୍ଟ ହେଲେ କେଉଁ କାମ ହାତରେ ଗୋଡ଼ରେ ପଶେ ନାହିଁ । ସୁକାନ୍ତ ହାକେ ସାତ ପିଲାଙ୍କଠିଁ ବଳନ୍ତି । ଘରେ ଥିଲାବେଳେ ସେ ଏତେ ବିରୁଦ କରନ୍ତି ଯେ, ଏପାଖ ସେପାଖ ହୋଇ ବେଳ ଯାଏ ।

ରେଡ଼ିଓ ଟର ଟେବୁଲ ପାଖରେ ବସିଛନ୍ତି । ଘଡ଼ ଘଡ଼ କରୁଛନ୍ତି । ଗୋଟିଏ ଭାଷା କି ଗୋଟିଏ ଷ୍ଟେସନର ଖବର କି ଗୀତ ଶୁଣି ସନ୍ତୁଷ୍ଟ ହେବାର ଧୈର୍ଯ୍ୟ ତାଙ୍କର ନାହିଁ । ବୁଝନ୍ତୁ କି ନ ବୁଝନ୍ତୁ, ସବୁ ପ୍ରକାର ଭାଷା ସେ ଶୁଣିବାକୁ ଚାହାନ୍ତି । ସବୁ ଷ୍ଟେସନ ସଙ୍ଗେ ସଂଯୋଗ ସ୍ଥାପନ କରିବାକୁ ଆଗ୍ରହ କରନ୍ତି । ଶୁଣିଲା ଲୋକକୁ ବିରକ୍ତି ଲାଗେ । ତାଙ୍କୁ କିପରି ବିରକ୍ତି ଲାଗେ ନାହିଁ କେଜାଣି ? ଡାକ ଛାଡ଼ନ୍ତି, କପେ ଚା’ ଦିଅ ମ ।

ସକାଳୁ ଦୁଇ ଥର ଚା’ ପିଇ ସାରିଲେଣି । ବେଳ ନଅଟା ନ ହେଉଣୁ ପୁଣି ଚା’ ବରାଦ କଲେଣି । ନ ଦେଲେ ବିରକ୍ତ ହେବେ ନାହିଁ, ଅଭିମାନ କରିବେ । ଅଟିଆ, ଅପିଆ, ଜରୁରୀ କାମ ବାହାନାରେ ଅଫିସ ଚାଲିଯିବେ, ଫେରିବେ ଡେରିରେ । ଚା କପେ ଦେଲେ ଭୋକ ମରିଯିବ । ଭାତ ବାଢ଼ିଲେ ପାଟିକି କିଛି ରୁଚିବ ନାହିଁ । ଡାଲି ଲାଗିବ ଅଲଣା, ତରକାରି ଲୁଣିଆ, ଭାତ ଟାଣୁଆ, ବାସନ ବାଲିଆ, ଘରଣୀ ମଇଳିଆ, ପିଲାଏ କଳିଆ ।

ଏତେ ବର୍ଷ ସଂସାର କରି ମଧ୍ୟ ସେ ତାଙ୍କ ମନ କଥା ବୁଝିଲା ନାହିଁ ।

ରମା, ମୁଣ୍ଡ କୁଣ୍ଡାଇଲ ନାହିଁ, ବାଇଆଣୀ ପରି ବାଳ ଅଳିଆ କରି ବୁଲୁଛ ? ଦେଖିଛ ତ ପି. ପଦ୍ମଭୂଷଣମେନନ୍‌ଙ୍କ ସ୍ତ୍ରୀଙ୍କୁ ? ଆମ ଘର ଆଗରେ ତ ଅଛନ୍ତି ଶ୍ରୀମତୀ ଜୟଶ୍ରୀ, ତାଙ୍କୁ ଦେଖ ଓ ଶିଖ । ବିଛଣାରୁ ଉଠିବା ସଙ୍ଗେ ସଙ୍ଗେ ଆଗେ ମୁଣ୍ଡଟାକୁ ସଜାଡ଼ି ନିଅନ୍ତି ସେମାନେ । ଭଲ ଦିଶେ । ଆରସି ପାନିଆଁ, କଜଳ, ଅଳତା, ସିନ୍ଦୁର ଓ ପାଉଡର ଟେବୁଲ ଉପରେ ସଜାଇ ରଖିବା ଉଚିତ । ନିଜର ଯତ୍ନ ସେମାନେ ନିଜେ ନିଅନ୍ତି । କେଡ଼େ ସୁନ୍ଦର ଦିଶନ୍ତି, ସେମାନେ ବି ସକାଳୁ ସଞ୍ଜଯାଏ ଘର କାମ କରନ୍ତି । ନିଜର ଯତ୍ନ ଯେ ନେଇ ନ ଜାଣେ, ସେ ସ୍ୱାମୀ, କି ପିଲାଛୁଆଙ୍କର କି ଯତ୍ନ ନେବ ? ଆଚ୍ଛା, ମୁଣ୍ଡଟାରେ ପାନିଆଁ ମାରିବ, କି ଆମେ ଥାଳ ପାଖରୁ ଉଠିବୁଁ ?

ସତକୁ ସତ ସେ ଉଠିଯିବେ ଯେ ! ରମା ଆଉ ଘରକୁ ଯାଇ ମୁଣ୍ଡରେ ପାଣିଆଁ ମାରିଲା । ଆଖିରେ କଜଳ ଗାର ଦେଲା । ମୁଣ୍ଡରେ ସିନ୍ଦୂର ଠୋପା ଲଗାଇ ଏକ ମିନିଟରେ ଏ ଘରକୁ ଆସିଲା ।

ହଁ ଏଥର ହେଲା । ଲୁଗା କିନ୍ତୁ ମଇଳା ରହିଛି ସେ ଦିଗକୁ ଦୃଷ୍ଟି ଦେବା ଉଚିତ । ଏ. ବାନାର୍ଜୀଙ୍କ ଘରଣୀଙ୍କୁ ଦେଖିଛ ? କାହିଁକି, ଡାକ୍ତର ସାହେବଙ୍କ ସ୍ତ୍ରୀ ଶ୍ରୀମତୀ ଶୋମତୀ, ଯେତେବେଳେ ଦେଖ, ତୁଷାର-ଧବଳ ଅମଳ ବସନ । ମଇଳା ଲୁଗାରେ ନାନା ପ୍ରକାର କୀଟାଣୁ ବାସକରନ୍ତି । ଯେତେ ଜାତିର ଭୀଷଣ ରୋଗ ଏବେ ଦେଖାଦେଲାଣି, ସବୁ ସେହି କୀଟାଣୁମାନଙ୍କ ପାଇଁ, ଅର୍ଥାତ୍ ମଇଳା ଲୁଗା ପାଇଁ, ଅର୍ଥାତ୍ ତମରିମାନଙ୍କ ପାଇଁ । ଲୁଗା ପାଲଟିବ କି ଆମ୍ଭେ ଉଠିବୁ ?

ଓହୋ, ଖାଇ ଦିଅ ମ, ଅଣ୍ଡା ହୋଇଯିବ, କେତେ ଢଙ୍ଗ କାଢୁଛ । କାଲି ସକାଳେ ଏଇ ବାସୀ ଶାଢ଼ୀ କାଢ଼ିଥିଲି । ଅରେ ଧୂଆ ହୋଇଛୁ । ପିଲାଏ ମଇଳା କରି ଦେଉଛନ୍ତି । ମୋ ପାଇଁ ରଙ୍ଗ ଶାଢ଼ୀ ଦୁଇଟି ଅଜି କିଣି ଆଣିବ । ପି. ପଦ୍ମନାଭଙ୍କ ସ୍ତ୍ରୀ ରଙ୍ଗ ଶାଢ଼ୀ ପିନ୍ଧନ୍ତି, ମଇଳା ହେଲେ ଜଣାପଡ଼େ ନାହିଁ ।

ସୁକାନ୍ତ ତୁନି ରହିଲେ । ମୁଠାଏ ଭଲକରି ଭୋଜନ କଲେ । ଅଫିସ ଯିବାକୁ ପ୍ରସ୍ତୁତ ହେଲେ । ଦୁଇ ଦିନ ହେଲା ଧୋଉରେ କ୍ଷୁର ଲାଗି ନାହିଁ । ଗେଞ୍ଜି ଝାଳୁଆ ଗନ୍ଧଉଛି । ଖାକି କନାର ଅଧା ପ୍ୟାଣ୍ଟ ଓ ସାର୍ଟ ସପ୍ତାହେ ହେଲା ବଦଳା ହୋଇ ନାହିଁ । ଖାକି ମୋଜାର ଭଲ ମଡ଼ାପରି ଗନ୍ଧାଉଛି । ପକେଟର ରୁମାଲ ଅତି ମଇଳା । ଜୋତାରେ ଶୁଖିଲା କାଦୁଅ ଲାଗି ରହିଛି ।

ଏସବୁ ଆଡ଼କୁ ଇଞ୍ଜିନିୟର ସାହେବଙ୍କର ଦୃଷ୍ଟି ନାହିଁ ।

ଖୋଲା ଟ୍ରଙ୍କରୁ ପରିଷ୍କାର ଡ୍ରେସ କାଢ଼ି ରମା ଆଲନା ଉପରେ ଝୁଲାଇ ରଖିଛି । ସେ ସବୁ ସେମିତି ଅଛି । ବାଳ କୁଣ୍ଡାହୋଇ ନାହିଁ । ଅଫିସ ଯିବା ବେଳ ହେଲାଣି । ତରତର ହେଉଛନ୍ତି । ସବୁ କଥା ତାଙ୍କ କାନରେ ପକାଇଲେ ସେ ନିଜେ ତ ଲଜ୍ଜିତ ହେବ, ପରକୁ ବାଛୁଛନ୍ତି କଥଣ ।

ପୁରୁଷ ପିଲା । ଘରର କର୍ତ୍ତା । ରୋଜଗାରିଆ । ତେଣୁ, ତାଙ୍କର ସବୁ ତ୍ରୁଟି କ୍ଷମଣୀୟ । ହଉ, ଯାଉନ୍ତୁ ସେ ଅଫିସକୁ । ଫେରିଲେ ରମା ଅବଶ୍ୟ କହିବ, କହେ।, ପର ଘରର ମହିଳାଙ୍କୁ ତମେ ଅନାଅଁ କାହିଁକି ? କଏ କପଡ଼ ଲୁଗା ପିନ୍ଧିଛି, ମୁଣ୍ଡ ବାନ୍ଧିଛି, କଜଳ ଲଗାଇଛି, ପାଉଡର ବୋଳି ହୋଇଛି, ସେଥିରୁ ତମକୁ କି ମିଳିବ ?

ରମା ହସିବାକୁ ଲାଗିଲା ।

କାହିଁକି ଏତେ ହସୁଛ ମ ?

ହସିବି ନାହିଁ କଅଣ କାନ୍ଦିବି ? ତମେ ଯେତେ ବିରକ୍ତ ହୁଅ, ଯେତେ ଟାଣ ଟାଣ କଥା କହି ଗାଳିଦିଅ, ମୁଁ କେବଳ ହସିବି କହୁଛି । ତମ ମନ କଥା ତମେ ପଦାରେ ପକାଇ ଦେଇଛ । ଅତି ବୁଦ୍ଧିଆ ମଣିଷ ନିଜକୁ । ଧରା ପଡ଼ିଗଲଣି ଯେ ।

କଅଣ ଧରା ପଡ଼ିଗଲି କହ ତ ?

କହିଲେ କଅଣ ମୋତେ ଦେବ ?

ଆଗ କହିବ, ନା ଆଗ ନେବ ?

ଆଗ ନେବ ।

ସୁକାନ୍ତ ତା'ର ମୁଣ୍ଡଟିକୁ ଦୁଇ ହାତରେ ଧରି ରଙ୍ଗିଲା ଗାଲ ଦିଓଟିରେ ଚୋକ ଦେଲା । ମୁଣ୍ଡଟିକୁ ଛାତିରେ ଜାକି ଧରିଲା । ଅଧାଖୋଲା ପରଦା ବାଟେ ପଦାକୁ ଚାହିଁଲା । ଜୟଶ୍ରୀ ରାସ୍ତା ଆର ପାଖ ଘର ବାରଣ୍ଡା ଉପରେ ଠିଆ ହୋଇ ହସିଲା ମୁହଁରେ ଅନାଇଁଛନ୍ତି । ହଳଧର ବାବୁ ଚାଲି ଚାଲି କୋର୍ଟକୁ ଯାଉଛନ୍ତି । ଆଗକୁ ଅନାଇଁ ସେ ଚାଲୁ ନାହାନ୍ତି । ତାଙ୍କ ଦୃଷ୍ଟି ସୁକାନ୍ତର ଝରକା ଉପରେ । ମନର ଅଗ୍ରହ ଯେପରି ଗୋଟାଏ ହଜିଲା ଦରବ ଖୋଜୁଛି । ଆଖି ଅଣ୍ଡାଳି ହେଉଛି । ଆଜି ତାଙ୍କ ପୁରୁଣା ଗାଡ଼ିର କଳ ବିଗିଡ଼ିଛି ।

ସୁକାନ୍ତ ରମାକୁ ମୁକ୍ତ ଦେଇ କହିଲା, ନେଲ ତ, ଏବେ କହ । ଦେଖ କହୁଣୀ କେମିତ ଅନାଇଛନ୍ତ । ହଳଧର ବାବୁ ତମକୁ ଖୋଜ ଖୋଜକା ଆଗେଇ ଗଲେଣି । ଅଖି ଉଣ୍ଡୁଥିଲ, ଏବେ ମନ ଧୁଣ୍ଡୁଥିବ ।

ଛି, ଅଲକ୍ଷଣା ବେହୁଆ, ପରଦାର ଧାର ଟାଣ ମ !

ଥାଉ ଥାଉ । ଜହ୍ନଶ୍ରୀ ଘର ଭିତରକୁ ଗୁଲ ଯାଉଛନ୍ତ ଦେଖ । କେଡ଼େ ବେଖାତଣିଆ ଗବିତ ଗୁଲି ।

କହିବ ? ଯେତେ ଯେଉଁଠି ଘରଘରଣୀ ତମେ ଦେଖିଥାଅ, ସମସ୍ତଙ୍କୁ ମୋଠଠେଇଁ ଦେଖିବାକୁ ମନ କର । ମନ ନ ମାନିଲେ ବିରକ୍ତ ହୁଅ । ଚଗଲ । ତମ ମନଟା ହାଇଁପାଇଁଆ ।

ହଁ ଆଖି ଡେଉଁଛି ।

ଆଜି ସେ ନିଶ୍ଚୟ ସଙ୍ଗ ଶୁଭରେ ଫେର ଅସିବେ । ତାଙ୍କର ପ୍ରକୃତ, ସେ ଅଖିଆ ଅପିଆ ବେଲବୁଡ଼ଙ୍କୁ ଫେରନ୍ତ । କାମରେ ମନ ଲାଗିଗଲେ ସେ ନିଜକୁ ଓ ଘର କୁଟୁମ୍ବଙ୍କୁ ଭୁଲ ଯାଅନ୍ତ । କାମ ସରିଲେ, ଘରକୁ ଫେରିଲେ, ଛୋଟ ବଡ଼ ସବୁ କଥା ତାଙ୍କ ଅଖିରେ ପଡ଼େ ।

ଆଜି ଅଉ କିଛୁ ସେ ବାଛ ପାରିବେ ନାହିଁ । ଘରଦ୍ୱାର ସଫା ସୁତୁରା । ସବୁ ପଦାର୍ଥ ଯଥା ସ୍ଥାନରେ ସଜା ହୋଇଛି । ମଇଳା ଓ ଦରମଇଳା ଲୁଗାପଟା ବନ୍ଧା ହୋଇ ରହିଛି, ଧୋବା ଅସିଲେ ନେଇଯିବ । କେବଳ ରମା ନିଜେ ଯେଉଁ ଧଳା ଶାଢ଼ୀ ଖଣ୍ଡି ପିନ୍ଧିଛି, ସେଇଟି ଦରମଇଳା । ସବୁ କାମ ଶେଷ କର ସେ ସେଖଣ୍ଡିକ ପାଲଟିଦେବ ।

ଗୁଇ ଲେଉଟା ବେଳ । ପିଲ ଦିଓଟିଙ୍କୁ ରଙ୍ଗିଆ ଖେଳାଇବାକୁ ନେଇଛି । ଫେରୁଥିବ କ କଅଣ ! ସେ ଫେରିଲେ, ତାକୁ ବଜାରକୁ ପଠାଇବ । ଘିଅ ଅଧସେର ଅଣିଲେ ପୁର ଦପୁଡ଼ା ଗୁଣି ଦେବାକୁ ଅଧିକ ବେଳ ଲାଗିବ ନାହିଁ । ମହନଭୋଗ, ଆଲୁଦମ୍ ଟିକିଏ ଓ ସିମେଇ କ୍ଷୀରି ଅଳପ ହେଲେ ସେ ଶାନ୍ତିରେ ଖାଇବେ । ମାଛରେ ତାଙ୍କର ଘୃଣା,

କିନ୍ତୁ ଅବେଳରେ ମିଳିବା କଷ୍ଟ । ବଜାରକୁ ପଠାଇବାକୁ କେହି ଲୋକ ନାହାନ୍ତି । ନ ହେଉ, ଚଳିଯିବ ଯେ । ମୁଣ୍ଡ ଏତିକିବେଳେ ବାନ୍ଧି ନ ଦେଲେ ଆଉ ବେଳ ମିଳିବ ନାହିଁ । ପିଲା ଦୁଇଟି ଫେରି ଆସିଲେ ଦୁଷ୍ଟାମି କରିବେ ।

ରମା ନିଜର ଯତ୍ନ ନେଲା ।

ବଡ଼ ଆଇନାରେ ନିଜକୁ ଦେଖିଲା । ନିଜ ହାତରେ ସେ ମୁଣ୍ଡ ବାନ୍ଧୁଛି । ସୁକାନ୍ତର ହାତ ଧରି ଆସିଲା ବେଳେ ମୁଣ୍ଡରେ କେତେ କେଶ ଥିଲା । ଆଣ୍ଠୁ ଯାଏ ଲମ୍ବ । ବୋଉ, ଖୁଡ଼ୀ, ଅପା, କି ଝଙ୍କାର ଆଉ କେଉଁ ମାଇପେ ଘଷି ତେଲ ବୋଳି, ଘଣ୍ଟାଏ ସମୟ ଲଗି ବାନ୍ଧି ଦେଉଥିଲେ । କେତେ ପ୍ରକାର ଜୁଡ଼ା ବାନ୍ଧି ଜାଲି ଜାଲିକା ଫୁଲମାଳ ଗୁଡ଼ାଇ ଦେଉଥିଲେ ।

ସୁକାନ୍ତଙ୍କ ଘରକୁ ଆସିଲା ଦିନୁ ନିଜେ ସେ ନିଜ କେଶର ଯତ୍ନ ନେବାକୁ ଚେଷ୍ଟା କରିଥିଲା । ଶାଶୂ, ଯା, କି ନଣନ୍ଦ କେହି ପାଖରେ ନାହାନ୍ତି । ଯାଙ୍କ ମାଇପେ ସିନା ସ୍ନେହ ଶ୍ରଦ୍ଧାରେ କେବେ କାହାରି ମୁଣ୍ଡରେ ହାତ ଦିଅନ୍ତି, ସବୁଦିନେ କିଏ ଏହା କରିବ ? କେହି କେହି ଈର୍ଷାରେ ହେଉ, କି ସହଳ କାମ ଛିଣ୍ଡାଇ ଦେବାକୁ ରଡ଼ି ରଡ଼ି କରି ପାନିଆରେ ଛିଣ୍ଡାଇ ଦିଅନ୍ତି । ଖୁଣ୍ଟନ୍ତି ପୁଣି ମାଆଟିଏ, ଝୋଟ ଗୋଛାପରି ଏତେ ବାଳ କେମିତି ବଢ଼ାଇଲୁ ମ ?

ବୋଉ, କି ଅପାଙ୍କ କାନରେ ଯଦି ଏକଥା ପଡ଼ିଥାଆନ୍ତା, ସେମାନେ ଖୁଣିଲା ମାଇପୀକିର ମହତ ସାରନ୍ତେ । କିଏ କହେ ଗୋ ତମକୁ ମୋ ବାଡ଼ୁଅ ଝିଅର ମୁଣ୍ଡରେ ହାତ ଦେବାକୁ ? ଉଠ, ହଠ । ନାଗ ଫୁଲଦ ସେତିକି । ଖୁଣି ଦେଲେ ବାଳ ଉପୁଡ଼ି ଯାଏ, ଏକଥା କଅଣ ଜଣା ନାହିଁକି ?

ଅଖିରେ ଲୁହ ଆସିଲା । ମା ଖୁଡ଼େଇ ଅପାଙ୍କ ସ୍ନେହ ଆଜି ସାତ ସପନ । ବାପା ଦାଦି ଭାଇଙ୍କ ଆଦର ଓ ଗେହ୍ଲା ପଣିଆଁ ଶୀତକାଳର ଶୀତଳସକାଳର

କୁହେଳିକାର ଗଛ ଗହଳର ମହଳ ଗୁଇ ପରି ପରକେ ହେଉଛି ! ସେଇ ଜଞ୍ଜାଳସ୍ଥାନ ଗେଲବସର ଦରସ ଧନ ଆଉ ଫେରିବ ନାହିଁ, ଫେରିବ ନାହିଁ ।

ଜୀବନର ନାହା ବାହାନାର ପାର ହୋଇ ସେ କୂଳରୁ ଆସି ଏ କୂଳରେ ଲାଗିଛି । ନାଉରିଆ ସୁକାନ୍ତ ସେ ତା'ର ନାହାର ସାହା । ବାହା ପଡ, ଅହା ପଦ ତାଙ୍କର ତୁଣ୍ଡରେ । ସେଇ ସେ କାଣ୍ଡାରୀ, ତାରିବା ମାରିବା ଓ ସବୁ ସ୍ନେହ ସୋହାଗର ଏକା ସେଇ ତ ଉତ୍ସ ।

ନିଜ ମୁହଁକୁ ଆଇନାରେ ନିରେଖି ରମା ଆତ୍ମ-ସନ୍ତୋଷ ଲାଭ କଲା । ସେ ଆସିଲେ ଆଜି ଆଉ ଖୁଣି ପାରିବେ ନାହିଁ । ଅଭିମାନ କରି ଛଳେଇ କହି ପାରିବେ ନାହିଁ ଯେ ମୁଣ୍ଡ ଅଳିଆ ହୋଇଛି, ଲୁଖୁର ହୋଇଛି । ଦାଣ୍ଡରେ ହର୍ଣ୍ଣ ଶୁଭିଲେ ଦରସଫା ଶାଢ଼ୀଖଣ୍ଡି ପାଲଟିଦେବାକୁ ବେଶୀ ବେଳ ଲାଗିବ ନାହିଁ ।

ନାକପୁଡ଼ା ତଳେ, ଓଠ ଉପରେ, ଡାହାଣ ପାଖେ, ଛୋଟ ବ୍ରଣଟିଏ କେବେ ଉଠିଥିଲା । ତହିଁରେ ଦୃଷ୍ଟି ପଡ଼ି ନ ଥିଲା । ସାବୁନ ଲଗାଇ ମୁହଁ ଧୋଇ ତଉଲିଆରେ ମୁହଁକୁ ରଗଡ଼ି ସଫା କଲା ବେଳେ ବ୍ରଣର ମୁଣ୍ଡ ଛିଣ୍ଡି-ଗଲା । ତେଲ ହାତରେ ମୁହଁ ଘଷି ଚକ୍‌କଣ କଲା ବେଳେ ତେଲ ହାତ ବ୍ରଣ ମୁହଁରେ ବାଜିଥିଲା । ରଗ ରଗ ହୋଇ ପୋଡ଼ୁଛି । ନାଲି ଦିଶୁଛି ।

ରମା ତହିଁରେ ସ୍ନୋ ଟିକେ ଲଗାଇ ଦେଲା । ଶୀତଳ ଲାଗିଲା । ଜଳା କମିଲା । ଯୌବନ-ବ୍ରଣ ଏପରି ଭୟଙ୍କର ହୁଏ । ଚନ୍ଦନ ଘୋରି ଲଗାଇ ଦେଲେ ବସିଯାଏ କି ପାଚିଯାଏ । ତା ମୁହଁରେ କେତେ ଥର ଉଠିଛି । ଆପେ ଆପେ ଭଲ ହୋଇଯାଇଛି । ସେମିତି ଚଳେ ଭଲ ହୋଇଯିବ । ସେଥିରେ ମନ ଦେଲେ କାମ ଅଧା ରହିଯିବ । ସେ ଫେରିଲେ ଖାଇବେ କଅଣ ? ଭୋକରେ ପେଟ ଆଉଣ୍ଡି ହେଉଥିବ ।

ଆରେ ହଁ, ବେକ ଲଟାଲା କରି ବସିଛି । ଜାନ ଫୁଲ ଢିଲା ହୋଇଛି । ହାତରେ ବାପ ଘରର ଦି ଦିପଟି ସୁନା କାଚ ଅଛି । ସେ ବ

ମଜ୍ଜା ହୋଇ ଗଲାଣି । ସୁକାନ୍ତ ପୁରୁଣା ଗହଣା ଭଙ୍ଗାଇ, ସେଇ ସୁନାରେ ନୂଆ ନବେଲା ସୁନା ପକାଇ, କେତେ ଗହଣା ଗଢ଼ାଇ ଦେଇଛନ୍ତି । କାଟା-ଲଗ୍ ଦେଖି ନୂଆ ଓ ରମାର ମନ ପାଇଲା ଡିଜାଇନ୍ ପ୍ରକାରେ ସେ ସବୁ ଗଢ଼ା ହୋଇଛି ।

ଅଥ ଅଳଙ୍କ ଅଲ୍ଲ କରନ୍ତି, ପେଡ଼ିରେ ସାଇତା ହେବାକୁ ସେସବୁ ଗଢ଼ା ହୋଇଥିଲା କି ? ଦେହରେ ନ ମଣ୍ଡିଲେ ସେଗୁଡ଼ାକ ମାଟି ଗୋଡ଼ି ସଙ୍ଗେ ସମାନ ନୁହଁ କି ରମା ? ତମ ଅଙ୍ଗରେ ସେସବୁ ଗହଣା ଶୋଭାକାର ହବେ, ତମର ଶୋଭାକୁ ସେ ବଢ଼ାଏ । ଆଜି ଭଲ ଦିନ, ଭଲ ବାର । ସବୁ ଗହଣା ତମେ ପିନ୍ଧିବ । ତମକୁ ମୋ ରାଣ ।

ଛି, ହଣ ପକାଉଛ ? ଇଲା ମିଲା ଥିକ । କୁନୁ ଓ ଇରା ଟାଣି ପକାଇବେ । ଦୁଇଟାଯାକ ପିଲା ତମର ପରି ଅବେଇଜ ହୋଇଛନ୍ତି । ସଞ୍ଜ-ବେଳେ କେହି ଗହଣା ପିନ୍ଧନ୍ତି ନାହିଁ । ଉଠ ତ, ମୁଁ ଶୋଇବା ଘରକୁ ଯାଏଁ । ରଙ୍ଗିଆ କଅଣ କରୁଛି ଦେଖି ଆସେଁ । ଦେଖ ଦେଖ, କୁନୁ କଅଣ କରୁଛି ।

କୁନୁ ଇରା ଦେହରେ ପାଉଡ଼ର ବୋଳୁଛି । ଇରା ତଳେ ବସି ରବର କଣ୍ଢେଇ ଧରି ଖେଳୁଛି । କୁନୁକୁ କଣ୍ଢେଇରେ ପିଟୁଛି ।

କୁନୁକୁ କଣ୍ଢେଇ ଗୁହାଁ ସୁକାନ୍ତ କହିଲା, ଖେଳୁଛନ୍ତି ସେମାନେ । ତାଙ୍କ ଆଗ ଦେଇ ମତେ ଭୁଲାଉଛ ? ମୁଁ ଏଥର ରୁଷିବି କହୁଛି । ପିନ୍ଧିବ ନାହିଁ ?

ସୁକାନ୍ତ ମୁହଁ ଫଣ ଫଣ କରି ଗୁହାଁଳା । ରମା ହସି ହସିକା ତଉକ ପାଖକୁ ଘୁଞ୍ଚିଗଲା । ସ୍ୱାମୀଙ୍କର କେଶ ସଜାଡ଼ିଲା ଆଙ୍ଗୁଠିରେ । ମୁହଁ ନୁଆଁଇ କାନ ପାଖରେ କହିଲା, ଡ଼ାକ୍ତର ବାବୁଙ୍କ ସ୍ତ୍ରୀ ଅଜି ହପ୍ତାରେ ବୁଲି ଆସିବେ, ଖବର ପଠାଇଛନ୍ତି । ସେ ଅସିଲେ ଜଜଙ୍କ ଘରଣୀଙ୍କ ସଙ୍ଗରେ ଅଣନ୍ତି । ଜୟଶ୍ରୀ ଯେମିତିକା ତମେ ତ ଜାଣିଛ । ଧ ପଦରେ ସେ ଆସିଥିଲେ । ମତେ ଏମିତି ରୂପରେ ଦେଖି ଯାଇଛନ୍ତି । ତମେ ଅସିଛ ବୋଲି ସେ ଜାଣନ୍ତି ।

କବେନ୍ଦ୍ରୀ ଶୁଣିବେ । ମୁଣ୍ଡକ ହସିବେ । କେତେ ଥଟ୍ଟା କରିବେ । ମନେ ମନେ ଲାଜ ମାଡ଼ିବ । କାଲି ସକାଳେ ପିନ୍ଧିବ ।

ସୁକାନ୍ତ ହାତ ଧରି ହସିହସିକା କହିଲା, ଏଥର ଧରା ପଡ଼ିଛ । ରଙ୍ଗିଆ କଅଣ ଶୁଣୁଛ ବନ୍ଧୁ । ରୋମଣି ଓ ଜୟଶ୍ରୀ ଆସିବା ଆଗରୁ ମୁଁ ତମକୁ ଚନ୍ଦ୍ରମା ପିନ୍ଧାଇ ଦେବି । ସେମାନେ ଉପହାସ କଲେ ମତ କଥା କହିଦେବ । କହିବ, ମୁନୁବାପା ଶୁଣାହେଲା କାବ୍ୟ, କବିତା, କି ଉପନ୍ୟାସ, ଗଳ୍ପ ପଢ଼ନ୍ତି ନାହିଁ । ଏ ପ୍ରକାର ଯେତେ ବହି ଓଡ଼ିଆ ଭାଷାରେ ଛାପାହୁଏ, ସବୁ ସେ କିଣନ୍ତି କୁନୁ, ଇରା ଓ ମୁନୁଙ୍କ ମା ପାଇଁ । ତମେ ସେ ସବୁ ପଢ଼ିବ । ମୋ କାବ୍ୟ, କବିତା, ଗଳ୍ପ, ଉପନ୍ୟାସ ନାଇଁ ବ ନୁହନ୍ତି । ମନଗଢ଼ା ନୁହନ୍ତି । ସେ ସବୁ ଜୀବନ୍ତ ହୋଇ ଜଣକ ଦେହରେ, ଜଣକ ମନରେ, ଜଣକ ଗୃହ ଚଳଣି, ଢଙ୍ଗଢାଙ୍ଗ, ରାଗରୋଷ, ମାନ ଅଭିମାନ, ସ୍ନେହମମତା ଓ ହସକାନ୍ଦରେ ଠୁଳ ହୋଇଛନ୍ତି । କହ ତ ରମା, ସେ ଜଣକ କିଏ ?

ରମା ପାଖ ଆଲମାରୀ ଆଡ଼କୁ ଚାହିଁଲା । ଓଠରେ ହସ ।

କେବକାର ନଟଣୀ ମନ ଗହନର ରଙ୍ଗମଞ୍ଚରେ ଅଭିନୀତ ହେଉଛି ।

ଦେହର ସୀମା ଅଛି, ମନର ସୀମା ନାହିଁ । କାଳ ଓ ବ୍ୟବଧାନ ମନର କେଉଁ କୋଣରେ ହଜି ଯାଆନ୍ତି, ଲୁଚି ଛପି ଯାଆନ୍ତି । ଅନ୍ଧାର ରାତିରେ ଝିଙ୍କି ଅଲୁଅ ଜୁଗଲଲ ପରି ମନର ଅଲୁଅ ଜୁଳିଯାଏ । ଅତୀତକୁ ଆଲୋକିତ କରେ । ବର୍ତ୍ତମାନ ତ ଗତିଶୀଳ, ଦୈର୍ଘ୍ୟ ପ୍ରସ୍ଥବିହୀନ ରେଖାଟିଏ । ଅତୀତ ଓ ଭବିଷ୍ୟତର ମଝିଆ ମଝି ଅନ୍ତରଙ୍ଗରତ; ଦେଶକାଳହୀନ ଅଭେଦ୍ୟ ପ୍ରାଚୀର । ମନର ଆଲୁଅ ସେହି ପ୍ରାଚୀରକୁ ଭେଦ କରିବାକୁ ସାହସ କରେ, ପାରେ ବା ନ ପାରେ, ଫେରେ ବା ଫେରେ ।

ମୁନୁ ତାଙ୍କର ଅନାଗତ ପୁତ୍ର, ଭବିଷ୍ୟତର କାମନା !

ଆଲମାରୀ ଭିତରେ କେତେ ବହି ସଜା ହୋଇ ରହିଛି । ରମା ସେଥିରୁ କେତେ ଖଣ୍ଡି ପଢ଼ିଛି, ଆଉ କେତେଖଣ୍ଡି ଅତି କଷ୍ଟରେ ଅଧା ଧଡ଼ା

ହୋଇଛି । ଶେଷ କରିବାକୁ ମନେ ନାହିଁ । ବେଳ ମିଳେ ନାହିଁ । ସୁକାନ୍ତ ଅଫିସ ଗଲେ ଦ'ପହରେ ବିଶ୍ରାମ ନେଲାବେଳେ ସେ ପଢ଼ିବାକୁ ଚେଷ୍ଟା କରେ । ପିଲା ଦୁଇଟି ଟାଣି ଓଟାରି ପକାନ୍ତି । ସେମାନେ ଅଲଗା ଖେଳିଲେ ମନ ଛନ ଛନ ହୁଏ । ପଢ଼ାରେ ମନ ଲାଗେ ନାହିଁ । କେତେ ମାଇପେ ପଢ଼ିବାକୁ ବହି ମାଗି ନିଅନ୍ତି । ମନେ ରହେ ନାହିଁ । ଫେରାଇବା, ନ ଫେରାଇବା ସେମାନଙ୍କର ଦୟା ଉପରେ ନିର୍ଭର କରେ ।

ରମାର ଗହଣା ପିନ୍ଧା ସରିଛି ।

ଆଇନା ଆଗରେ ଠିଆ ହୋଇ ନିଜକୁ ନିଜେ ଚାହିଁଲା । ସେ ଅଙ୍ଗ ଆଉ ପ୍ରକାରେ ଦିଶୁଛି । ମୁଣ୍ଡ, ନାକ, କାନ, ହାତ, ବେକ, ସବୁଠି ପଥର ବସା ସୁନାଗହଣା ଝଟକି ଉଠୁଛି । ଘର ଭିତର ଅନ୍ଧାରିଆ ଦିଶିଲାଣି । ତାଙ୍କର ଆସିଲା ବେଳ ହେଲାଣି । କାନରେ ସତେ କି କେତେ ଦୂରରୁ ଛୁଟି ଆସୁଥିବା ହର୍ଣ୍ଣର ଶବଦ ବାଜୁଛି । ମନ କହୁଛି, ସେ ନିଶ୍ଚୟ ଫେରି ଆସିବେ । ନାହିଁକି ଆଜି ଅଜଣା ଉଚ୍ଚାଟିଆ ଭାବନା ଗ୍ରାସ କରୁଛି ?

ପିଲା ଦୁହିଁଙ୍କୁ ନେଇ ରଙ୍ଗିଆ କେତେବେଳୁ ଗଲାଣି । ସେ ଫେରିଲା ନାହିଁ କାହିଁକି ?

ଘରେ ସେ ଏକା ଅଛି । ସଞ୍ଜ ହୋଇ ଆସିଲାଣି । ରଙ୍ଗିଆର ବୁଦ୍ଧି ନାହିଁ । ଆରେ, ଆଜି ସଞ୍ଜରେ ଜଗତ୍‌ଜନନୀଙ୍କ ମନ୍ଦିରକୁ ଦର୍ଶନ କରିବାକୁ ସେ ଯିବ ପରା, ଶୋମତୀ ଦେବୀଙ୍କୁ ଖବର ପଠାଇଥିଲା । ଯିବେ କି ନ ଯିବେ ସେ ବେଉରା ପଠାଇ ନାହାନ୍ତି । ରଙ୍ଗିଆ ଆସୁଥିବ । ଦେଖେଁ ।

ଦାଣ୍ଡ କବାଟ ଖୋଲି ପଦାକୁ ଚାହିଁଲା । ସତେ, ସେ ଆସୁଛି । କୁନୁ ଓ ଇରା ସଙ୍ଗରେ ଅଛନ୍ତି । କୁନୁ ଓ ଇରା ତା'ର ଦୁଇ ଆଖି । ଦି ଘଣ୍ଟା ହେବ ଆଖି ଫୁଟିଗଲା ପରି ଲାଗୁଥିଲା । ହେଉ, ଆସୁଛନ୍ତି ତା'ର ଆଖିର ଜ୍ୟୋତି । କୁନୁ ରଙ୍ଗିଆର ହାତ ଧରି ଚାଲିଛି, ଇରା ତା'ର କାଖରେ । ପାଖେଇ ଆସିଲେଣି, ରମାକୁ ଦେଖି ନାହାନ୍ତି ।

ମନ କୁରୁଳି ଉଠିଲା । ରମା ଆଖି ବୁଲାଇଲା । ରାସ୍ତା ଅରପାଖ ଘର ବାରଣ୍ଡାରେ ହଲଧର ବାବୁ ଠିଆ ହୋଇ ଏକ ଧ୍ୟାନରେ ତାଆରି ଆଡ଼କୁ ଚାହିଁ ରହିଛନ୍ତି । ଘର ଭିତରେ ଥାଇ ଜୟଶ୍ରୀ ପରଦା ଆଡ଼େଇ ଏକ ଦୃଷ୍ଟିରେ ଅନାଇଁ ରହିଛନ୍ତି କୁନୁ ଓ ଇରାଙ୍କୁ ।

ରମାର ଓଠ ଉପରେ ଖଣ୍ଡିଆ ବ୍ରଣ ପୋଡ଼ି ଉଠିଲା । ସେ ଘର ଭିତରକୁ ପଳାଇ ଆସିଲା ।

ସଞ୍ଜବତୀ ଲଗାଇ, ଅଗଣାର ତୁଳସୀ ଚଉରା ମୂଳେ ଜଳାଇ, ରମା ତଳେ ମୁଣ୍ଡ ଲଗାଇ ପ୍ରଣାମ କଲା । ପ୍ରାର୍ଥନା କଲା, ସ୍ୱାମୀ ସକଳ କାର୍ଯ୍ୟରେ ସଫଳ ହୋଇ ସର୍ବଶୁଭରେ ଫେରି ଆସନ୍ତୁ । ଠାକୁରାଣୀ ପ୍ରସନ୍ନ ହୋଇ ସ୍ୱାମୀ ଓ ପୁତ୍ରକନ୍ୟାଙ୍କୁ ଦୀର୍ଘାୟୁ କରନ୍ତୁ । ଧନ ଜନ ଗୋପଲକ୍ଷ୍ମୀରେ ତା'ର ସଂସାର ପରିପୂର୍ଣ୍ଣ ହେଉ ।

ରଙ୍ଗିଆ ଆଲୁଅ ଜଳାଇ ସାରିଲାଣି । ବୃଦ୍ଧରାଣୀ ପାର୍ବତୀ ବାରଣ୍ଡାରେ ଗୋଡ଼ ଲମ୍ବାଇ ବସିଛି । ତାଆରି ଗୋଡ଼ରେ ଇରା ଶୋଇ ପଡ଼ିଲାଣି । ହରି ପିଅନ ପାଖରେ ଦାଣ୍ଡପରେ ବସି କୁନୁ ବାଘ ଭାଲୁ ଗପ ଶୁଣୁଛି । ଗୋମତୀ ଖବର ପଠାଇଲେ ଯେ ସେ ତାଙ୍କ ପିଲାଙ୍କୁ ଡାକ୍ତରଙ୍କ ପାଖରେ ଛାଡ଼ି ରମା ଘରକୁ ଆସିଲେ ଜୟଶ୍ରୀଙ୍କୁ ସଙ୍ଗରେ ନେଇ ଉନାନ୍ଦେଁ ଠାକୁରାଣୀଙ୍କ ମନ୍ଦିରକୁ ଯିବେ ।

ଜୟଶ୍ରୀ କଜଳଙ୍କ ସଙ୍ଗେ ବୁଲି ବାହାରି ଗଲେଣି । ଗୋମତୀ ଆସିଲେ ରମା ତାଙ୍କ ସଙ୍ଗେ ଯିବ । ହରି ପିଅନ ସଙ୍ଗରେ ଥିବ । ପାର୍ବତୀ ଓ ରଙ୍ଗିଆ ଘରେ ରହିବେ । ଏହା ବିଚାର ରମା କରୁଛି । ରଙ୍ଗିଆ ପାଖରେ କୁନୁ ରହିବାକୁ ରାଜି ନ ହେଲେ ତାକୁ ସଙ୍ଗରେ ନେଇ ଯିବ ।

ରମା ଅନ୍ଧାର ଘରେ ମୁଣ୍ଡ ଲଗାଇ ବୃନ୍ଦାବତୀଙ୍କୁ ଓଲଗି ହେଲା । ବାପା ମା ମୋର କୁଶଳରେ ଥାଆନ୍ତୁ । ଭାଇ ଭାଉଜ ଓ ପିଲା ସଉଟି ଦୀର୍ଘାୟୁ ହୁଅନ୍ତୁ । ଆଜ ଛଠି ଆସିବ ବୋଲି ଶୁଭ କାଉ ସକାଳେ ଅସି ସେବ ଛାଡ଼ି ଅଗଣାରେ ନାଚୁଥିଲା ।

ବାପା ଲେଖିଛନ୍ତି, ଦାଣ୍ଡ ଧାଉଡ଼ିର ସୁଲଘର ଭଙ୍ଗାଇ ଯେଉଁ ପକ୍କା ଘର ତୋଳା ହେଲା, ସେ ଘର ଅବିକଳ ସୁକାନ୍ତ ଦେଇଥିବା ପ୍ଲାନ୍ ପ୍ରକାରେ ହୋଇଛି । ଅଳ୍ପ ଖର୍ଚ୍ଚରେ ଏଡ଼େ ସୁନ୍ଦର ହୋଇଛି ଯେ ଲୋକେ ପ୍ରଶଂସା କରୁଛନ୍ତି । କେତେ ଲୋକ ପ୍ଲାନର କପି ନେଉଛନ୍ତି । ମୋ କୋଠା ପାଇଁ ମୋ ମନରେ ଯେଉଁ ଗର୍ବ ଓ ଆନନ୍ଦ ଆସୁଛି, ମୋ ଜୋଇଁ ସୁକାନ୍ତର ଦକ୍ଷତା ଓ ବୁଦ୍ଧି କଥା ଭାବି, ମନରେ ତହୁଁ ବଳି ଗର୍ବ ଓ ଆନନ୍ଦ ଆସୁଛି । ଠାକୁରେ ତା'ର ଉତ୍ତରୋତ୍ତର ଉନ୍ନତି କରିବେ ଏ ବିଷୟରେ ମୁଁ ନିଃସନ୍ଦେହ । ଦଶରା ପାଖେଇ ଆସିଲା । ସେଇଦିନ ଘର ପ୍ରତିଷ୍ଠା କରାହେବ । ତୁ, ସୁକାନ୍ତ ଓ ପିଲାମାନେ ଅବଶ୍ୟ ଆସିବ ।

ବୋଉ ଲେଖିଛନ୍ତି, ଦୁଇ ବର୍ଷ ପାଖେଇ ଆସିଲା, ତୋର ମୁହଁ ଦେଖିଲି ନାହିଁ ଲୋ ରମା, ମନ ମୋର ଛଟପଟ ହେଉଛି । ଦବୁବେଳେ ତମେମାନେ ମୋ ଆଖି ଆଗରେ ନାଚି ଯାଉଛ । ଦଶରାକୁ ନିଶ୍ଚୟ ଆସିବ । ବୁନୁ ଓ ଇରାକୁ ମୋ ପାଇଁ ଗେଲ କରିବୁ । ଜୋଇଁ ଯେଉଁ ଜାନଫୁଲ୍ ହାଲକ ପଠାଇଥିଲେ, ସେ ଏଡେ ସୁନ୍ଦର ହୋଇଛି ଯେ ଗାଁ ମାଇପେ ଦେଖି ହାଇଁପାଇଁ ହେଉଛନ୍ତି । ଠାକୁରେ ତାକୁ ଦୀର୍ଘାୟୁ କରନ୍ତୁ । ପୁଅ ତ ନାତିବୁହିଙ୍କୁ ଓ ବୋହୂଙ୍କୁ ନେଇ ସୁନ୍ଦରଗଡ଼ ଗଲା ଯେ ଆସି ବର୍ଷ ପୂରିବାକୁ ବସିଲାଣି । ବୋହୂଙ୍କର କଅଣ ପିଲାପିଲି ହେବ । ରାମ ଆସିଲେ ମୁଁ ସୁନ୍ଦରଗଡ଼ ଯିବି । ଦଶରା ଆଗରୁ ମୁଁ ଗାଁକୁ ଫେରି ଆସିଥିବି ଯେ ।

ଭାଇ ସୁନ୍ଦରଗଡ଼ରୁ ଲେଖିଛନ୍ତି, ତୋ ଭାଉଜର କାଲି ରାତି ପାହାନ୍ତାରେ ପୁଅଟିଏ ହୋଇଛି । ମୋର ତ ଜଙ୍ଗଲ ବିଭାଗରେ ରେଞ୍ଜର କାମ, ବଣ ପାହାଡ଼ରେ ବୁଲି ବୁଲି ସମୟ କଟୁଛି । ଆଜି ଦୁଇ ପ୍ରହରେ ଫେରିଲି । ଦେଖିଲି, ଠିକ ପୁଅ ରଡ଼ି ଗ୍ରୁଡ଼ିଛି । ତା ନାମ ତୁ ବାଛିବୁ ବୋଲି ତୋ ଭାଉଜ ଆଦେଶ ଦେଇଛନ୍ତି, ଯେ ପରି ଧୀରେନ୍ଦ୍ର ଓ ବୀରେନ୍ଦ୍ର ସଙ୍ଗକୁ ମାନିବ । ତୋ ପାଇଁ ଓ ସୁକାନ୍ତ ପାଇଁ ଆଜି ପାର୍ଶଲ କରି ହଟେଲ ଭଲ ଏଣ୍ଡି ଚଦର ପଠାଇଲି । ବୋଉକୁ ଆଣିବାକୁ ଯାଉଥାଆନ୍ତି, ମନା କରି ଆଜି ଲେଖି ଦେଉଛି । ଦଶରାକୁ

ସମସ୍ତଙ୍କୁ ନେଇ ଘରେ ଗ୍ରୁରି ଆସିବ । ବେଳ ପାଇଲେ ଜୟପୁର ଯାଇ ତମମାନଙ୍କୁ ଦେଖି ଆସିବ ।

ରମା ମନେ ମନେ ହସିଲା । ଠିକ ପୁଅଟିର ମୁହଁ ଦିଶି ଯାଉଛି । ତା'ର ଭାଇକୁ ବଳି ଖାଉଳ ସୁନ୍ଦର । ଧୀର ଓ ସ୍ଥିର ବାପ ଓଳି ଆଣିଛନ୍ତି । ସାନ ପୁଅ ନିଶ୍ଚୟ ମା ପରି ହୋଇଥିବ । କେଡ଼େ ସୁନ୍ଦର ନାମଟି ତାଙ୍କର, ବକୁଳ । ହେଲେ, ସେ ଅତି ଧୀର ସ୍ଥିର । ଭାଇଙ୍କ ନାମ ରାମଚନ୍ଦ୍ର । ତାଙ୍କ ନାମ ସୀତା ହୋଇଥିଲେ ଭଲ ହୋଇଥାନ୍ତା । ସାନ ପୁଅ ନାମ ନରେନ୍ଦ୍ର ଦେଲେ ଭଲ ହେବ ପରା, ନୋହିଲେ ସୁରେନ୍ଦ୍ର କି ହରେନ୍ଦ୍ର ଦିଆଯାଉ । କୁନୁବାପା ଗସ୍ତରୁ ଫେରିଲେ ସ୍ଥିର କରାହେବ । ସେ କହିବେ ଗୁଳା ପକାଇବା, ଇଏ ଗୁଳା ଟେକିବ । ଯେଉଁ ନାମ ଉଠିବ ସେଇଆ ଲେଖିଦେବ ।

କୁଜଙ୍ଗର ତଳମାଳରେ ରମାର ଶଶୁର ଘର ।

ଶାଶୁ ଶଶୁର ନାହାନ୍ତି । ନଣନ୍ଦମାନେ କେବେଠୁଁ ପରଘରକୁ ଗଲେଣି । ଶାଶୁଘର ଗ୍ରାମର ରୂପ ସେ ଦେଖି ନାହିଁ । କଟକରେ ବାହାଘର ହେଲାବେଳେ ଯେଉଁ ଭଦ୍ରଲୋକଟି ସ୍ୱାମୀଙ୍କର କର୍ତ୍ତା ହୋଇଥିଲେ, ବେଦିରେ ବସି ବାହା କରାଉଥିଲେ, ସେ କୁଆଡ଼େ ତାଙ୍କ ଦେଢ଼ଶୁର । ତାଙ୍କ ନାଁ ଦାମୋଦର । ଜାଆଙ୍କ ନାମ ନୟନତାରା । ଦୁଇ ପୁଅ ଓ ତିନି ଝିଅଙ୍କୁ ସଙ୍ଗରେ ନେଇ ସେ ଗ୍ରାମରୁ କଟକ ଆସିଥିଲେ । ମାସଟିଏ ରହି ଫେରିଗଲେ ।

ଦୁଇଭାଇଙ୍କ ମଧ୍ୟରେ ଚିଠିପତ୍ରର ଅଦାନ ପ୍ରଦାନ ନ ଥାଏ । ଅକାଳେ ସକାଳେ ଜାଆ ଖଣ୍ଡେ ଖଣ୍ଡେ ପତ୍ର ଲେଖନ୍ତି । ଟଙ୍କା ପଠାଅ ବୋଲି ସିଧାସଳଖ ନ ଲେଖି କେବଳ ଦୁଃଖ ବର୍ଣ୍ଣନା କରନ୍ତି, ଅଗୋ! ରମା, ଶଶୁରଘର ତ ଦେଖିଲ ନାହିଁ, ଆମ କଳାବଲ କଥା ଜାଣିବ କିପରି ? ଲୁଣିପାଣି ମାଡ଼ି ଆସିଲା ଏ ବର୍ଷ ସେ ବନ୍ଧ ଭାଙ୍ଗି ଜମିରେ ଲୁଣ ଚରିଲା । ଅଳ୍ପ ଫସଲ, ପେଟକୁ ନିଅଣ୍ଟ । ବଡ଼ପୁଅ ଭଗବାନ ଦଶ କ୍ଳାସରେ ଅନନ୍ତପୁରରେ ପଢୁଛି । ଦରମା ନ ଦେଲେ ନାମ କଟିଯିବ । ମୋର ଦଢ଼ ଲୁଗା ଖଣ୍ଡେ

ନାହିଁ ବୋଲି ଦାଣ୍ଡକୁ ବାହାରୁ ନାହିଁ । ପିଲାଗୁଡ଼ାକ ଅଭେକାଙ୍କ ପରି ହୋଇଛନ୍ତି । କାନ୍ତକୁ କହିବ, ଗଣ୍ଡବ ଭଗ ଭଞ୍ଜନ ବୋଲି ଏକାଥରେ ଭୁଲିଯିବେ ନାହିଁ । ଦଶରାକୁ ଭଗବାନ ଜୟପୁର ଯିବ ବୋଲି ହେଉଛି । ଗଦାଏ ବାଟ । ମୁଠାଏ ଟଙ୍କା ଖରଚ ହେବ । ଦୁ ବେଳା ଦୁ ଢୋକ ମିଳିବା କାଠିକର ପାଠ, ବାଟଖରଚ ଦେବ କିଏ ? ମୁଁ କହିଲି, ଗୁଡ଼ିଙ୍କୁ ଲେଖନ୍ତୁ । ସେ କହିଲେ, ଲାଜ ମାଡ଼ୁଛି । କାନ୍ତକୁ କହିବ । ଚିଠି ଖଣ୍ଡେ ଦେବ ମ ରମା, ଗଣ୍ଡବ ହୁଏଁ ଧନେ, ତୁମର କାଆଁ ମ ମୁଁ, ତୁମର ବଡ଼ଠ ହେଉ ବୋଲି କେତେ କଲ୍ୟାଣ କରୁଛି । ପିଲା ଦୁଇଟିଙ୍କୁ ଦେଖି ନାହିଁ ଯିନା ଦରୁବେଳେ କଲ୍ୟାଣ କରୁଛି, ଠାକୁରେ କୋଟି ପରମାୟୁ ଦେଉନ୍ତୁ । ତୁମ ରୂପ ଯଦାବେଳେ ମୋ ଆଖିରେ ନାଚୁଛି । ଆଉ, ରହିଲି ।

ସୁନାଖଡ଼ିକା ପରି ଧଡ଼ିଆ ଧେଡ଼ିଙ୍କ ମାଈପିଟିଏ, ହତେ କ ଆଗରେ ଆସି ଠିଆ ହୋଇ ଯାଉଛନ୍ତି । ଅମରବାବୁଙ୍କ ସ୍ତ୍ରୀ ଇନ୍ଦିରାଙ୍କ ଚୁଟିକା । ସୁକାନ୍ତ ଆସିଲେ ରମା ଅବଶ୍ୟ କହିବ, ଭାଇଙ୍କ ଠିକଣାରେ ଶହେଟି ଟଙ୍କା ପଠାଇ ଦିଅ । ଭଗବାନଙ୍କୁ ଆସିବାକୁ କହ । ତୁମର ଭୁଲ ବୁଝାମଣା, ବେଶିଦିନ ଶହରରେ କଟୁଛି, ନିଜ ଲୋକ ପାଖରେ ଥିଲେ ନିରାପଦ । ଦୁହିଙ୍କର ମଙ୍ଗଳ । ପୁଅ କିଏ, ପୁତୁରା କିଏ ? ଗଳ୍ପକଥା ଭୁଲିଯାଅ । ହଉ, ଭାଇ ଯିନା ତୁମକୁ ହେଳା କରିଥିଲେ, ସବୁ ସମ୍ପତ୍ତି ଲେଖାଇନେଲେ ତାଙ୍କ ନାମରେ, ଭିନେ କରିଦେଲେ, ଭଗବାନ ତ ପୁତୁରା । ବାଦ ଛେଦ ଭେଦରେ ସେ ନ ଥିଲା । ଠାକୁରେ ତୁମକୁ ବଡ଼ କରିଛନ୍ତି । ବଡ଼ ପଣ ତୁମର ରଖ । ଠାକୁରେ ତୁମର ମଙ୍ଗଳ କରିବେ । ତାଙ୍କ ଆଶୀର୍ବାଦର ଟେକ ରହିବ ।

ହରି ପିଥନ ଅଫିସରୁ ଖବର ଆଣିଛି, ବାବୁ ଯିନା ଧନଦନ ପାଇଁ ଶସ୍ତ ପକାଇଛନ୍ତି, ଫେରିବାକୁ ପାଞ୍ଚଦିନ କି ସାତଦିନ ଲାଗିବ କିଏ କହିବ ? ଅରଣ୍ୟ ମଝିରେ ବହି ଆସୁଥିବା ପାହାଡ଼ିଆ ନାଳରେ ବନ୍ଧ ପକାଇ ପାଣିକୁ ଅଟକାଇ ରଖାହୋଇଛି । ନୂଆ କାମ, ନୂଆ ମାଟି । ବଳକା ପାଣି ବାହାର କରିବାକୁ ଯେଉଁ ନାଳ ହେବାର କଥା ସେ କାମ

ହେଉ ନେଇନାହିଁ । କେବଳ ଚେଷ୍ଟା ହୋଇସାରିଛି । ପାହାଡ଼ କାଟି କଟେଇ ବାନ୍ଧ ବାନ୍ଧି ଜଗଜାଗିଆ ନାଳ ଠିକ ମାରିଲା ଆସିଲା ପରେ ଚନ୍ଦନପୁର ଓ ଆଖପାଖ ଗ୍ରାମର ହଜାରେ ଏକର ଭୂମିରେ ପାଣି ଛୁଟିବ । ବଡ଼ ବିଶେଷଜ୍ଞ ଶ୍ୟାମ ଓ ନାଳର ଅବସ୍ଥା ଦେଖି ବ୍ୟବସ୍ଥା କରିବାକୁ ଲୋକଜନ, ଘୋଡ଼ା, ଗାଡ଼ି ଧରି ଡେରାରେ ଲାଗି ରହିବେ । ବଡ଼ ଇଞ୍ଜିନିୟର ଦେଖିବାକୁ ଆସୁଛନ୍ତି ବୋଲି ତାରବାର୍ତ୍ତା ଆସିଛି ।

ଏତେ କେନ୍ଦ୍ର ପାଖରେ ଅଛନ୍ତି । ଅପଦ ବିପଦ ଭୟଭ୍ରାନ୍ତିର ପ୍ରଶ୍ନ ଉଠୁନାହିଁ । ଗଲାବେଳେ ସେ ଅଶାନ୍ତ ହୋଇ ଗଲେ । ସେଇଥିପାଇଁ ରମାର ମନରେ ଦୁଃଖ ।

ରମା ବୃନ୍ଦାବତୀ ଚଉରା ତଳେ ମୁଣ୍ଡ ଲଗାଇ ପୁଣି ଜଣାଣ କଲା, ମାଆଗୋ, କଅଣ କଲେ ସେ ସୁଖୀ ହେବେ, ଅଶାନ୍ତ ହେବେ ନାହିଁ, ବିରକ୍ତ ହେବେ ନାହିଁ, ସେହି ବୁଦ୍ଧି ମତେ ଦିଅ । ନିଜକୁ ଭୁଲି, ଜୀବନ ଦେଇ ଯେମିତି ତାଙ୍କୁ ମୁଁ ସୁଖୀ କରି ପାରିବି, ସେତିକି ଦୟା, ସେତିକି କରୁଣା ମୁଁ ମାଗୁଣି କରୁଛି । ସେତିକି ଶିକ୍ଷା, ସେତିକି ବୁଦ୍ଧି ଓ ଦକ୍ଷତା ମୋ ନାରୀ ଜୀବନର ମହାମନ୍ତ୍ରୀ ହେଉ । ଆଉ ସବୁ ତ ତାଙ୍କର, ଧନ ଦରବ, ଗହଣାଗାଣ୍ଠି, ପୁଅ ଝିଅ, ହାତଧରି ଘରଣୀ କରି ଆଣିଛନ୍ତି ଯେଉଁ ରମାକୁ ସେ । ତାଙ୍କୁ ସୁଖୀ କରିବାର ମନ, ଆଗ୍ରହ, ବୁଦ୍ଧି ଓ ଦକ୍ଷତା ମୋର ହେଉ, ଏତିକି ମୋ ନିଜପାଇଁ ମାଗୁଣି ।

ଗୋମତୀ ଡାକଲେ ପଦାରୁ, ରମା, ରମା—

ଜଗନ୍ନାଥଙ୍କ ମନ୍ଦିର ।

ମଙ୍ଗଳବାର । ସନ୍ଧ୍ୟା ଆରତି ଦେଖିବାକୁ ଆଜି କେତେ କୁଳକାମିନୀ ଏକଠି ହୋଇଛନ୍ତି । କେତେ ଭଦ୍ରଲୋକ ମଧ୍ୟ ଆଡ଼େଇ ହୋଇ ଗୋଟିଏ ପାଖରେ ହାତ ଯୋଡ଼ି ଠିଆ ହୋଇଛନ୍ତି । ପୁଅଝିଅ ଛତାଣୀ ପିଲା କେତେ ମାଆମାନଙ୍କର କାନି ଧରି, କୋଳରେ କାଖରେ ଥାଇ ଦେବୀଙ୍କର ଆରତି

ଦେଖୁଛନ୍ତି, ପାଠି ତୁଣ୍ଡ କରୁଛନ୍ତି । ଘଣ୍ଟି ଶବ୍ଦରେ କାନ ଅତଡ଼ା ପଡ଼ୁଛି । ସୁବାସିତ ସୁମନ ଓ ଧୂପଧୂଆଁର ମହକରେ ନାସା, ଫୁଲି ଉଠୁଛି । ମନରେ ଆସୁଛି ନୂତନ ଶକ୍ତି । ଅଭିଳାଷ ପୂରଣର ଆଶା ଜାଗି ଉଠୁଛି ।

ସମସ୍ତେ ଏଠାରେ ସମାନ । ଜାତି, ଧନ, ମାନ, ଆସନ, ଶାସନ ଓ ଅଭିମାନ । ଭିନ୍ନ ହେଉଛନ୍ତି ରୂପ, ବେଶ, ବୟସ, ମାନସ ଓ କାମନା । ନାରୀ ମେଳରେ ଜୟଶ୍ରୀ, ଗୋମତୀ, ଇନ୍ଦିରା ଓ ରମା ଦେବୀ ଦର୍ଶନ କରୁଛନ୍ତି । ଗୋମତୀଙ୍କ କାଖରେ ତାଙ୍କର ଦେଢ଼ବର୍ଷର ସାନ ଝିଅଟି ବଲବଲ କରି ଚାହିଁଛି । ମୋର କାନି ଧରି ଠିଆ ହୋଇଛି କୁନୁ । ସିଏ କଣ ହରି ପିଅନ ପିଠିରେ ଲଦି ହୋଇ ଆସିଛି । ଇନ୍ଦିରାର ଦନୋଟି ପୁଅ ଆରପାଖେ ଅମର ବାବୁଙ୍କ ପାଖରେ ଠିଆ ହୋଇଛନ୍ତି । ତିନି ଚାରିଜଣ ଭଦ୍ରଲୋକଙ୍କ ପରେ ଯୋଡ଼ହସ୍ତ ହୋଇ ଉଭା ହୋଇଛନ୍ତି ହଳଧର ବାବୁ ।

ଆରତି ହେଲା ।

ସମସ୍ତେ ତଳେ ମୁଣ୍ଡ ଲଗାଇ ଓଳଗି ହେଲେ । ଜୟଶ୍ରୀ ମାଗିଥିବେ ପୁଅଟିଏ ! ଗୋମତୀ ଚାହିଁଥିବେ, ସ୍ୱାମୀଙ୍କ ମନରୁ ନାସ୍ତିକତା ଦୂର ହେଉ । ଇନ୍ଦିରାର ମାଗୁଣି, ସ୍ୱାମୀଙ୍କର ପଦୋନ୍ନତି ହେଉ । ଅଭାବର ପେଷଣରେ ସେ ଛଟପଟ ହେଉଛନ୍ତି । ସ୍ୱାମୀ ଓ ପିଲାମାନଙ୍କୁ ଭଲକରି ମୁଠିଏ ଖାଇବାକୁ ଦେଇ ପାରୁନାହାନ୍ତି । କେଜାଣି ବା ଇନ୍ଦିରା କନ୍ୟାଟିଏ ମାଗୁଣି କରୁଛନ୍ତି । ରମାର ଗୁହାରି, ସ୍ୱାମୀ ହେବ ଶୁଭରେ, ମନ ଖୁସିରେ, ଶ୍ୱାପଦସଂକୁଳ ଅରଣ୍ୟ ଭିତରୁ ଫେରି ଆସନ୍ତୁ ।

ସମସ୍ତଙ୍କର ମାଲଶ୍ରୀ କାମନା । ସଷ୍ଠକୁ ଚାହିଁ କେତେ ମାନସିକ !

ସମସ୍ତେ ତଳୁ ମୁଣ୍ଡ ଟେକି ଉଠିଲେ ।

ରମା କଡ଼େଇ ଚାହିଁଲା ଆଗକୁ । ହଳଧର ସ୍ଥିର ଦୃଷ୍ଟିରେ ଚାହିଁ ରହିଛନ୍ତି ତାହାରି ଆଡ଼କୁ । ଚାରି ଚକ୍ଷୁ ମୁହୂର୍ତ୍ତେ ହେଲା ଏକାଠି ।

ବିଜୁଳି ବେଗରେ ମୁଣ୍ଡ ଫେରିଗଲା ସାତବର୍ଷ ତଳକୁ—ଭୁବନେଶ୍ୱର । ମାଉସୀମାଙ୍କ ମନ୍ଦିର । ପାଖରେ ବୋଉ, ଆଗରେ ଭାଇ ଓ ତାଙ୍କ ପାଖରେ ଜଣେ

ଅପରିଚିତ ଯୁବକ । ତା'ର ରୂପ ବସ୍ତୁଧର ଦର୍ଶକ, ତା'ର ଭବିଷ୍ୟତର ସ୍ୱପ୍ନରଜ ! ସେହି ଏ ହଳଧର, ମନର କଷଟି ପରଖି ଦେଖିଥିଲେ । ଭଲ ନୁହେଁ ଭେଲ ବୋଲି ବାପାଙ୍କ ଆଗରେ ମୁହଁ ନେଫଡ଼ି ଜହ୍ନୁଁ କହିଥିଲେ ।

ଆଖି ପଲକରେ ଭାବନା ଦୂର ଅତୀତକୁ ବାହୁଡ଼ି ଆସିଲା ।

ରମା ଦୃଷ୍ଟି ଫେରାଇଲା । ମନ ଗଗନରେ ହଳଧରଙ୍କର ସ୍ମୃତି କୌତୁହଳୀ ଅନନର ଲେଉଟିଲା ଅଧିର ଦୋଳା । ଦିଓଟି ଜ୍ୟୋତିରିଙ୍ଗଣ ଧରି ଝଲମଲ ଝଲମଲ ଅବଜ୍ଞାର ଚହଟବନ୍ଧ ରହିବନ୍ଧ ନିଶ୍ୱାସିଆ ପବନରେ ଆଉ ଦିନେ ଖେଳି ବୁଲିଲା । ରମାର ଅଶାନ୍ତ ଛାତିରେ ହଜିଲା ଅଭିମାନ ଉପହାସ କରି ରଡ଼ି ଛାଡ଼ିଲା, କେଉଁ ଗୁଣରେ ତମେ ସମାନ ମ ମୋର କୁନୁବାପ ସଙ୍ଗରେ ? ରୂପ, ଗୁଣ, ସାହସ, ନା ଟାଣପଣ ?

ରମା କୁନୁକୁ କାଖକରି ଛାତିର ଦ୍ରୁତତର ସ୍ପନ୍ଦନକୁ ଉପଶମ କଲା । ଗୋମତୀଙ୍କ ପଛେ ପଛେ ମନ୍ଦିର ବାହାରକୁ, ରାସ୍ତା ଉପରକୁ ଆସିଲା ।

କୁନୁକୁ ହରି କାଖ କରି ପଛରେ ଆସୁଛି । ଜୟଶ୍ରୀ ପଛରୁ ଆସି ରମାର ହାତ ଧରିଲେ । ଇନ୍ଦିରା ଧରିଲେ ଗୋମତୀଙ୍କର ହାତ । ଇନ୍ଦିରା ସେ ଅପନ ନଣିଦ । ଦିନ ଓ୍ଲୋକରେ ପୁଣି ଜନନୀ ହେବେ । ତାଙ୍କର ପିଲା ତିନୋଟି ଅମରବାବୁଙ୍କ ଉପରେ ସବାର ହୋଇ ଆଗେଇ ଗଲେଣି, କାଖରେ, କାନ୍ଧରେ ଓ ପିଠିରେ ।

ଜୟଶ୍ରୀ କହିଲେ ଗୋମତୀଙ୍କୁ, ଦେଖ ଦେଖ ତାଙ୍କ ପାରିଲା ପଣ, ଆଉ କାଖଟି ଖାଲି ଅଛି ।

କାହାର ଗୋ ?

ତାଙ୍କ ନାମ ତୁଣ୍ଡରେ ଧରିବ ନାହିଁ । କହୁନ ଇନ୍ଦିରା, ତମ ବରଙ୍କ ନାମ କଅଣ ? ସେ ମୋଓର ତିନ ପୁଅର ବାପ । ମୁଁ ଆଗ, ଇନ୍ଦିରା ପଛ । ମୋ ପିଲାଙ୍କୁ ଜନମ କରିବା ଦାୟିତ୍ୱ ଇନ୍ଦିରାକୁ ଦେଇଛୁ । ଆଉ ଗୋଟିଏ ହେଲେ ଆଉ କାଖ ଖାଲି ରହିବ ନାହିଁ । ଅଲାଜୁକ ପଣକୁ ସେ ଧରିଛନ୍ତି, ହେଲେ···

ଜୟଶ୍ରୀ କଥା ଅଧା ରଖିଦେଲେ । ହଳଧର ପଛରେ ଆସୁଛନ୍ତି ବୋଲି ତାଙ୍କର ମନେ ପଡ଼ିଗଲା ।

ଇନ୍ଦିରା କହିଲେ, ବଡ଼ ଲୋକଙ୍କୁ ଉତ୍ତର ନାହିଁ । ନୋହିଲେ କହନ୍ତି, ଯନେ କାଳେ ଜୟଶ୍ରୀ ଦେବୀଙ୍କର ପାଦଧୂଳି ତାଙ୍କ ପିଲାଙ୍କ ଘରେ ପଡ଼ିଲା ନାହିଁ । ସୁଖ ଦୁଃଖ କଥା ସେ କିପରି ବୁଝିବେ ? ଅବୋଇଜ ପିଲାଗୁଡ଼ାଙ୍କର ଗୁହ ମୂତ ଗନ୍ଧ ସେ କରୁଥାଅନ୍ତି, ରୋଗବଇରାଗରେ ରାତି ଅନିଦ୍ରା ହୋଇ ଜଗି ବସି ପହରା ଦେଉଥାଆନ୍ତି, ପେଟକୁ ଅନ୍ନ, ଦେହକୁ ବସନ ଯୋଗାଇ ଦେଉ ଥାଅନ୍ତି, ତେବେ ମୁଁ କେତେ କାହିଁକି ଏକ ପୁଞ୍ଜା ପିଲା ପେଟରୁ କାଢ଼ି ତାଙ୍କ ମନକଲା ବରଙ୍କ ଆଗରେ ଥୋଇ ଦିଅନ୍ତି । ତାଙ୍କର ହେଉ ହେଉ ନହେଲା ବରଙ୍କର ଯେଉଁ ହାଇଁପାଇଁଆ ମନ, କାଙ୍ଗାଳିଆ ଅଲକ୍ଷଣା ସ୍ୱଭାବ, ତାକୁ ଛୁ କରି ହାତ ଗୋଡ଼ରେ ତାଙ୍କୁ ଆଡ଼େଇ ଦିଅନ୍ତି ନାହିଁ ।

ବାଟ ଚାଲୁ ଚାଲୁ ଇନ୍ଦିରା କଥାଗୁଡ଼ା ଟାଉ ଟାଉ କରି କହିଗଲେ । ଏକ ଓଳକରେ ତାଙ୍କର ପିଲାପିଲି ହେବ । ଝିଅଟିଏ ପାଇଁ ମାନସିକ କରିଛନ୍ତି ।

ଦାଣ୍ଡର କୋଳାହଳ ଭିତରେ ସମସ୍ତେ ନୀରବ ହୋଇ ଖଣ୍ଡେ ଦୂର ଚାଲିଗଲେ ।

ରମା ମନେ ମନେ ଖୁସି ହେଲା । ଧଡ଼ିଆ ଧେଡ଼ୀଙ୍କ ମଉନମୁହାଁ ସୁନା-ଝିଅକା ଇନ୍ଦିରା ହାଡ଼ଜଳା କଥିଲା କଥା କହି ପାରନ୍ତି । କଥାରେ ଅଉସି ବଡ଼ପଣିଆଁର ପ୍ରଚ୍ଛନ୍ନ ଦରପରୁ ଚୋପା ଛଡ଼ାଇ ପାରନ୍ତି । ଭଲ ହୋଇଛି । ଜୟଶ୍ରୀଙ୍କର କୁହାଳିଆପଣକୁ ଇନ୍ଦିରା ଭଲ ମାଡ଼ ମାରିଛନ୍ତି ।

ପ୍ରକାରାନ୍ତରରେ ଇନ୍ଦିରା କହି ଦେଇଛନ୍ତି, ତମେ ବନ୍ଧ୍ୟା, ତମକୁ ତମର ସ୍ୱାମୀ ପ୍ରେମ କରନ୍ତି ନାହିଁ । ପର ପିଲାଙ୍କୁ ଦେଖି ଡହଳ ବିକଳ ହୁଅ ନାହିଁ । ସେମାନେ ଯେଉଁ ଭଗବାନଙ୍କର ଦାନ, ସେହି ଭଗବାନଙ୍କୁ ସୁମରଣା କର । ଜନନୀ ହେବ ଓ ବୁଝିବ, ଦୁଃଖ ଯନ୍ତ୍ରଣା, ଆନନ୍ଦ ଓ ମା'ପଣିଆର ଗର୍ବ କିପରି ହାତ ଧରାଧରି ହୋଇ ଚାଲନ୍ତି ।

ରମାର ଓଠକଡ଼ ଖଣ୍ଡିଆ ବ୍ରଣ ପୋଡ଼ି ଉଠିଲା ।

ଜୟପୁରର ବଡ଼ ଦାଣ୍ଡରେ ଆଗ ପଛ ହୋଇ ବୋଝେଇ ଟ୍ରକ୍ ଦୁଇଟା ତୀର ବେଗରେ ଛୁଟି ପଳାଇଲା । ସମସ୍ତେ ଆଡ଼େଇ ଗଲେ । ଗୋମତୀଙ୍କର କୋଳରୁ ଛିଙ୍କ ଟିଅକୁ ରମା ଟାଣି ନେଇ ଛାତିରେ ଯାକିଲା । କହିଲା, ବେବିକୁ ମୁଁ ବୋହୂ କରିବି । କୁନୁକୁ ବାହା କରାଇବି । ବେବି, ତୁ ମୋ ବୋହୂ ହେବୁ ?

ରମା ତା' ପୁରିଲା କଅଁଳ ଗାଲରେ ଗେଲ କଲା ।

ଗୋମତୀ କହିଲେ, ମୋର ସେଥିରେ ବାଜ । ସୁକାନ୍ତ ବାବୁ ସିନା ମନା କରିଦେଲେ, ନୋହିଲେ ସେ ଲିଲି, ମିଲି ଓ ବେବିଙ୍କର ବାପ ହୋଇଥାନ୍ତେ । ନ ହେଲେ ନାହିଁ । ବେବିର ଶଶୁର ହେଉନ୍ତୁ । ଯେଉଁଦିନ ସେ ମୋ ସମୁଦି ହେବେ, ସେଇଦିନ ତାଙ୍କୁ ପଚାରିବି, କାହିଁକି ମନାକଲ କହୋ, ସବୁ ମାଇପେ ତ ଏକା ପରକା ।

ଜୟଶ୍ରୀ ପଚାରିଲେ, ଏବଯାଏ ଝୁରି ହେଉଛ ?

ଗୋମତୀ କହିଲେ, ଯେଉଁମାନେ ପ୍ରେମରେ ପଡ଼ି ହତାଶ ହୁଅନ୍ତି, ସେହିମାନେ ଝୁରନ୍ତି । ଝୁରିମରି ହୁଅନ୍ତି । ବଡ଼ପଣ ଦେଖାଇ ହୁଅନ୍ତି । ଯେଉଁମାନେ ହାତକ ଦି'ହାତ ହେଲା ପରେ ନିଜ ବର ସଙ୍ଗେ ପ୍ରେମରେ ପଡ଼ନ୍ତି, ସେମାନେ ସୁଖରେ ରହନ୍ତି । କେବେ କାହାର କେଉଁଠି ସମ୍ବନ୍ଧ ପଡ଼ିଥିଲା ସେଇ କଥା ମନରେ ରହି ଯାଇଥାଏ । ପର ଜୀବନରେ କେବେ ଅଚାନକ ମନେ ପଡ଼ିଲେ କୌତୁକ ଲାଗେ, ହସ ମାଡ଼େ । ଥଟ୍ଟା କରି ପଦେ କହିବାକୁ ପାଟି ଖଲଖଲ ହୁଏ ।

ଇନ୍ଦିରା ବିଦାୟ ନେଇ ବାଟ ଭାଙ୍ଗି ଗଲେ । ଅମର ଗଳି ରାସ୍ତାର ମୋଡ଼ରେ ଅପେକ୍ଷା କରିଛନ୍ତି । ପିଲା କେନେହେଁ ରାସ୍ତା ଉପରେ ଠିଆହୋଇ ବୋବାଳି ଛାଡ଼ିଲେଣି । ହଳଧର ଝଣ୍ଡେ ଦୂର ଆଗେଇ ଗଲେଣି । ହରି କୁନୁର ହାତ ଧରି ତାଙ୍କ ପଛରେ ଚାଲିଛି । ଶୀଘ୍ର ଘରକୁ ଫେରିଯିବାକୁ

ରମାର ମନ ଉଚ୍ଛନ୍ନ ହେଲାଣି । ଇଏବେ ଯଦି ନିଦ ଭାଙ୍ଗିଥିବ, ସେ ଗଦାଧର କାନ୍ଦୁଥିବ । ରଙ୍ଗିଆ, କି ପାର୍ବତୀ ତା'କୁ ବୁଝାଇ ରଖି ପାରିବେ ନାହିଁ ।

ରମା ଆଗେଇ ଗଲା । ମନରେ ଧାରଣା ହେଲା, ତା'ର ଅନୁପସ୍ଥିତିରେ କୁନୁବାପା ଫେରି ଆସିଥିବେ । କେତେଥର ଏପରି ଘଟିଛି । ଆଜି କାହିଁକି ନ ଘଟିବ ? ରମାର ଅନୁପସ୍ଥିତିରେ ବଢାକୁ ଫେରିଲେ ଦେହରୁ ଜାମା ଯୋତା କାଢ଼ି ଅଗ ଘର ଝୋଡ଼ିବାରେ ଲାଗିଯାଆନ୍ତି । ମଇଳା ଲୁଗାପଟା ଭାଙ୍ଗି ବାନ୍ଧି ରଖନ୍ତି । ନିଜ ହାତରେ ଘରଦ୍ୱାର ଓଳାଇ ପରିଷ୍କାର କରନ୍ତି । ନିଜେ ସଫାସୁତୁରା ହୋଇ କାମ ବାହାନାରେ ବୁଲିବାକୁ ଯାଆନ୍ତି । ରଙ୍ଗିଆକୁ ମନା କରିଦେଇ ଯାଆନ୍ତି, ବାବୁ ଆସିଛନ୍ତି ବୋଲି କହିବୁ ନାହିଁ, ଘରଦ୍ୱାର କିଏ ସଫା କଲେ ଯଦି ପଚାରିଲେ କହିବୁ, ତୁ କରିଛୁ ।

ରଙ୍ଗିଆକୁ ମଣ୍ଡଣିବା ଆବଶ୍ୟକ ହୁଏ ନାହିଁ । ଘର ଭିତରକୁ ପଶିବାଲେ ମଧ୍ୟ ସେ ଯେପରି ହସି ହସିକା କହି ଦିଅନ୍ତି, ସେ ଆସିଛନ୍ତି । ରମା ଖୁସି ହୋଇ ପଚାରେ, କେତେବେଳେ ସେ ଆସିଲେ ରେ, ଜଳଖିଆ ଦେଇଛୁ ? ମୁଁ ଡାକ୍ତରବାବୁଙ୍କ ଘରକୁ ଯାଇଛି ବୋଲି କହିଲୁ ନାହିଁ ? ମୋତେ ଡାକିବା'କୁ ଧାଇଁଗଲୁ ନାହିଁ ? ପୁଣି ସେ ଗଲେ କୁଆଡ଼େ ? ମାଛଟା ନେଇ ଆଣିଛନ୍ତି ପରା । କାଟି ଦେଲୁ ନାହିଁ ? ହଉ, ମୁଁ କରିବି । ତୁ ଯା, ତାଙ୍କୁ ଡାକି ଆଣିବୁ ।

ସେ କେଉଁଠିକି ଗଲେ ମତେ କହି ନାହାନ୍ତି ମା ।

କ୍ଲବରେ ବସି ତାଅସ ଖେଳୁଥିବେ । ଅରେ କୁନୁ, ତୋ ବାପା ଆଇଲେଣି । ହେଇଟି ଦେଖ୍, କେଡ଼େବଡ଼ ମାଛ ଆଣିଛନ୍ତି ।

ରମାର ଉଜ୍ଜ୍ୱଳ ଦୋହଲ ମୁଣ୍ଡ ଭିତରେ କୋଛନାଧୂଆ ମନର ପାରାବାରରେ ଭାବନାର ଢେଉ ଖେଳୁଛି ।

ଗୋମତୀ ରମାର ହାତ ଧରିଲେ ।

ତା'ର ଭାବନାର ଡୋର ଛିଣ୍ଡିଲା । ସେ ରମା କୋଳରୁ ବେବିକୁ ନେଲେ । ବେବି କାହାକୁ ଅଲୋ ବାରେ ନାହିଁ । ତାକୁ ଗେଲ କରି ରମାକୁ ପଚାରିଲେ, ଆଜି ସାତରେ ସୁକାନ୍ତବାବୁ ଫେରିବେ କି ରମା ?

ଜୟଶ୍ରୀ ଉତ୍ତର ଦେଲେ, ରମାଦେବୀ ଆଜି ନୂଆବୋହୂଟିଏ ପରି ଦିଶୁଛନ୍ତି ନା । ମନ୍ଦିର ଭିତରେ ଲୋକେ ଠାକୁରାଣୀଙ୍କ ଦର୍ଶନ କରିବେ କଅଣ, ରମା ଦେବୀଙ୍କର ଦର୍ଶନ କଲେ । ଦେଖୁ ପରୀକ୍ଷାବେଳେ ତାଙ୍କ ମା ସବୁ ରମାକୁ ଏମିତି ସଜାଇ ପାର୍ବତୀଙ୍କ ମନ୍ଦିରକୁ ନେଇ ଥାଆନ୍ତି, ଆଜି ଗୋମତୀ ଆଉ କାହାପରର ଘରଣୀ ହୋଇଥାଆନ୍ତେ । ଗୋଲ୍‌ଦେହକୁ ନୀଳଶାଢ଼ୀ, ମଥାରବଡ଼ା ସୁନାଗହଣା । ଜେଜ୍ଜ ଅଲୁଅରେ ଝଟକି ଉଠୁଥିଲା । ନେପାଳ ମନ୍ଦିରଙ୍କ ଅଲଙ୍କାର ବନଶୀ ଆଖି ଲାଗି ରହୁଥିଲା । ଏପାଖ ମାଇପଙ୍କ ମନ ଈର୍ଷାରେ ଦନ ଘନ କନ କନ ଛନ ଛନ ହେଉଥିଲା । ମା ଜଗତ୍‌ଜନନୀ ବି ଅନାଇଁ ରହୁଥିଲେ । ଆଶୀର୍ବାଦ କରୁଥିଲେ, ରମାର ସାତପୁଅ ସାତଝିଅ ହେଉନ୍ତୁ । ହେବେ ଯେ ।

ରମା ଥର ଥର କହିଲା, ଜୟଶ୍ରୀ ବି ଆଉ କାହାଘରର ଶୋଭା ବଢ଼ାଇ ଥାଆନ୍ତେ । ଦୁଇଟା ପିଲଙ୍କ ଅଳିଦୋଳି ମୁଁ କରି ପାରୁ ନାହିଁ, ଏତେ ପିଲାଙ୍କ ଅଳିଦୋଳି କରି ପାରିବ କିପରି ? ମାଆଙ୍କୁ ପ୍ରାର୍ଥନା କରୁଛି, ଆମ ଗୋମତୀଙ୍କ କୋଳରେ ଦଶଟି ପିଲା ଝଳାଡ଼ ଦେଉନ୍ତୁ, ଆଉ ଜୟଶ୍ରୀଙ୍କ କୋଳରେ ବାରୋଟି । ଜୟଶ୍ରୀ କଲେ ଗୁଟିବେ ।

ଗୋମତୀ ଚୁପ୍ ରହିଲେ ।

ତାହାହେଉ ଜଗନ୍ନାଥଙ୍କ ମନ୍ଦିର । ଯାଁ ମାଝେ ପୁରୁଣା ମନ୍ଦିର । ଆଗରେ ପରିତ୍ୟକ୍ତ ନୂଆ ମନ୍ଦିର । ତାହାରି ପାଖେ ସୁନାର୍ସି ଧାଡ଼ି ଚାଲି । ପୁରୁଣା ମନ୍ଦିରର ଧାଡ଼ରି କଡ଼େ କଡ଼େ ବାଁ ହାତ ଅନ୍ଧାରିଆ ଗଳିଟି ଶିବ ମନ୍ଦିର ଆଡ଼େ ପଡ଼ିଛି । ବଡ଼ ରାସ୍ତା ଛାଡ଼ି କେତେ ଲୋକ ଦେହି ଗଳି ଅଡ଼େ ମୋଡ଼ିଛନ୍ତି ।

ହଲଧର ବଡ଼ ଗ୍ରୁାରେ ମସଜିଦ୍ ପାଖରେ ଠିଆ ହୋଇ ସନ୍ଧକୁ ଗ୍ୱହିଁଛନ୍ତି । କୁନୁ ମାଆ ମାଆ ଡାକ ଛାଡ଼ୁଛୁ ।

ହଲଧର କହିଲେ, ସହଳ ସହଳ ପାଦ ପକାଇଲେ ଭଲ ହେବ ।

ଜୟଶ୍ରୀ କହିଲେ, ରମା ଗ୍ୱଲି ପାରୁ ନାହାନ୍ତି ।

ଗୋମତୀ କହିଲେ, ନାହିଁ ମ, ଜଲ୍ ସାହେବ ଧାଇଁ ଧାଇଁ ଗ୍ୱଲୁଛନ୍ତି । ଅଗେଇ ଯାଇ, ଅପେକ୍ଷା କରି, ଅଲ୍ଲଅ ଶମ୍ଭୁ ପାଖରେ ଠିଆ ହୋଇ ପଛେଇ ଗ୍ୱହୁଁଛନ୍ତି । ତାଙ୍କ ସାଙ୍ଗରେ କଏ ଧାଇଁ ପାରିବ ? ଅପଣ ଅଗରେ ନ ଯାଇ ପଛରେ ଆସନ୍ତୁ । ଦେଖିବେ, ଆମେ କେତେବେଗି ବାଟ ଗ୍ୱଲିବୁ । ଟିକଏ ଦୂରେଇ ଗ୍ୱଲିବେ ହିଁ, ନୋହିଲେ ଆମ କଥା ଆପଣଙ୍କର କାନରେ ପଡ଼ିବ ।

ହଲଧର ଆଡ଼େଇ ଯାଇ କହିଲେ, ହଉ, ପଛରେ ରହିଲି । କାନରେ ହାତ ଦେଉଛୁ ।

କଣେଇ ଗ୍ୱହିଁଲେ ରମାକୁ, ହସ ହସ ମୁହଁ ।

ରମାର ଦୃଷ୍ଟି ପଡ଼ିଲା । ଅକୁହା ଅହମିକା ତା'ର ପାଦରେ ଯୋଗାଇଲା ଅଜଣା ଶକ୍ତି । ଗୋମତୀଙ୍କର ହାତ ଧରି ହଲଧର ବାବୁଙ୍କର କଡ଼ ଦେଇ ସେ ଆଗେଇ ଗଲା । ସହଳ ପାଦ ଆଗକୁ ଆଗକୁ ପଡ଼ିଲା । ଆପେ ଆପେ କଥା ଖସିଲା ଓଠରୁ, କହ ମ ଭମର ତାଙ୍କୁ, କାନରେ ହାତ ନ ଦେଇ ଅଖିରେ ହାତ ଦେଇ ଗ୍ୱଲିବେ ।

ଜୟଶ୍ରୀଙ୍କୁ ଚମକି ଦେଲା ।

ଜୟଶ୍ରୀ କହିଲେ, ଓହୋ, ମତେ କାହିଁକି ଚମକୁଛ ? ସେ କାନରେ ଅଖିରେ ହାତ ନ ଦେଉନ୍ତୁ । ଘରକୁ ଗଲେ ତାଙ୍କର କାନରେ ହାତ ଦଆଇବି ।

ସମସ୍ତେ ହସିଲେ ।

ପାଖ ଦେଇ କେତେଜଣ ନାରୀପୁରୁଷ ଆଗେଇ ଗଲେ । ସମସ୍ତେ ତୁନି ହେଲେ । ସମସ୍ତଙ୍କର ମନେ ପଡ଼ିଲା ଯେ ସେମାନେ ବାଟରେ ଗ୍ୱଲୁଛନ୍ତି ।

ରାସ୍ତା ଉପରେ ଏଣେ ତେଣେ ଗଳ୍ପ କରିବା ଓ ଉଚ୍ଚହାସ୍ୟ କରିବା ଭଦ୍ରଘରର ନାରୀସୁଲଭ ପ୍ରକୃତି ନୁହେଁ । ମାଦଳାପାଣି ଅଫିସ କେତେ ଦୂର ଅଛି ।

ଆଗେଇ ଚାଲିଲେ । ଅସ୍ୱାଭାବିକ ନୀରବତା ସୂଚାଇ ଦେଲା, ଦୁହେଁ ନିଜ ନିଜର ଭାବନାରେ ବିଭୋର ।

ମନର ସବୁଜ ମଉଳି ଗଲା ।

ସ୍ୱାମୀ ଫେରି ନାହାନ୍ତି । ଫେରିବେ ବୋଲି ଖବର ପାଇ ନ ଥିଲେ ମଧ୍ୟ ଅବୋଧ ମନ ତାଙ୍କୁ ଡାକ ଛାଡ଼ୁଥିଲା । ଅବଶ୍ୟ ତାଙ୍କର ମନ ଶୁଣି ପାରିଥିବ । କାମ କାର୍ଯ୍ୟ ମଝିରେ ବୁଡ଼ି ରହି ପାସୋରି ଯାଇଥିବେ । ସେ ଶୀଘ୍ରେ ଫେରନ୍ତୁ, ମା ଜଗଜ୍ଜନନୀଙ୍କ ପାଖରେ ଏହି ପ୍ରାର୍ଥନା କରି ଆସିଛି । ଅଉ ତା'ର ଚିନ୍ତା ନାହିଁ ।

ଇରା ପଲଙ୍କ ଉପରେ ଶୋଇ ପଡ଼ିଛି । ପାଙ୍କଣି ବିଦାୟ ନେଇ ନିଜ ଘରକୁ ଫେରିଗଲା । ହରି ଗୋମସ୍ତଙ୍କୁ ଛାଡ଼ି ଆସିବାକୁ ଯାଇଛି । ଗଉଡ଼ିଆ ସାହି ବେଶି ଦୂର ନୁହେଁ । କୁନୁକୁ ଗିଲାସେ କ୍ଷୀର ପିଇଦେଲେ ସେ ଶୋଇ ପଡ଼ିବ । ପ୍ରସାଦ ପାଇଛି । ଭାତ ନ ଦେବା ଭଲ । ରମାର ଭୋଜନ କରିବାକୁ ଆଗ୍ରହ ନାହିଁ; କିନ୍ତୁ ପର୍ବବାସିଆ ଦିନରେ ଘରର ଘରଣୀ ଉପାସ ରହିବା ଅମଙ୍ଗଳ କଥା । ଜଙ୍ଗଲ ଭିତରେ ଫ୍ଲେଟ ବଙ୍ଗଳାରେ କଅଣ ଆଜି ସେ ଖାଇଥିବେ ?

ରାତି ଦଶଟା । ଏଥର ସେ ଶୋଇବାକୁ ଯିବ । ହରି ଓ ରଙ୍ଗିଆ ବାରଣ୍ଡାରେ ଶୋଇ କଥାବାର୍ତ୍ତା ହେଉଛନ୍ତି । ଡରଭୟର ପ୍ରଶ୍ନ ଉଠୁନାହିଁ ।

ରମା କବାଟ କିଳିଲା । ଓଠ ଉପରେ ଖଣ୍ଡିଆ ବ୍ରଣ ଅଧିକ ଜଳୁଛି । ଓଠଟା ମାଡ଼ି ମାଡ଼ି ପଡ଼ୁଛି । ରମା ବ୍ୟସ୍ତ ହୋଇ ଅଇନା ଟେକି ଦେଖିଲା । ଆରେ, ବ୍ରଣଟା ଚମ ଭିତରେ କେତେ ବଡ଼ ହୋଇ ଫୁଲି ଉଠିଲାଣି । ଫୁଲି ଅଖିତଳଯାଏ ମାଡ଼ି ଗଲାଣି । ସ୍ନୋ ଟିକିଏ ଲଗାଇଦେଲେ ଥଣ୍ଡା ଲାଗିବ । ଭଲ ହୋଇଯିବ ।

ରମା ସେଇଆ କଲା । ଏତେ ଦୂର ଚାଲି ଚାଲି ଯାଇ ଦେବୀଙ୍କ ଦର୍ଶନ କରି ସେ ଫେରିଛି । କ୍ଳାନ୍ତ ଅନୁଭବ କରୁଛି । ଲୁଗା ପାଲଟିବାକୁ ଦେହରେ ବଳ ନାହିଁ । ବୁଣ୍ଟି ଥଣ୍ଡା ଲାଗିଲାଣି । ପୋଡ଼ା ଜଳା କମିଲାଣି । ମୁଣ୍ଡ ବୁଲାଉଛି ।

ରମା ଏ ଘରର ଅଲୁଅ ଲିଭାଇ ଆର ଘରକୁ ଗଲା । ପିଲା ଦୁଇଟି ଶାନ୍ତରେ ଶୋଇଛନ୍ତି । ରମା ଟର୍ଚ୍ଚ ଆଲୁଅ ହାତରେ ଧରି ହରିକେନ୍ ଆଲୁଅ ଲିଭାଇଲା । ଟର୍ଚ୍ଚ ଜାଳି ପଲଙ୍କ ଉପରକୁ ଉଠି ଦୁଇ ପିଲାଙ୍କ ମଝିରେ କ୍ଳାନ୍ତ ଦେହ ଲମ୍ବାଇ ଦେଲା । ଅଲୁଅ ଲିଭାଇ ତକିଆ କଡ଼ରେ ରଖିଲା । ଆଖି ବୁଜିଲା ।

ମନେ ପଡ଼ିଲା, କେତେ ଭୁଲ ସେ ନ କରିଛି ସତେ, ସୁଟକେଶ୍‌ରେ ଟର୍ଚ୍ଚ ଦେଇ ନାହିଁ । ଅନ୍ଧାର ରାତି । ମଶାଲ ନାହିଁ । ଆଲୁଅ ନାହିଁ । ପାହାଡ଼ ଗଡ଼ାଣି ଝରଣାକୂଳ ନିବିଡ଼ ଅରଣ୍ୟ ମଝିରେ ଗ୍ରେଟ ବଙ୍ଗଳାଘର । ଉପରେ ଚାଲ । ପୁରୁଣା । ମାଟି କାନ୍ଥରେ ଗାତ ଥିବ । ନଳୁଆଁଣି । କବାଟ ଖୋଲି ପଦାକୁ ବାହାରିଲେ ବାଘ ଭାଲୁ ଡର । ଜଣା ଗର୍ଜୁଥିବ । ଭୂତପ୍ରେତ, ଜଣି ପାହାଡ଼ର ଦେବୀଦେବୀ, ଅତଯାତ ହେଉଥିବେ ।

ଭୟଙ୍କର କଥା । ଚଣ୍ଡାଳୁଣୀ ମୁଁ ନ ମଲି କାହିଁକି ? କେତେ ଭୁଲ ମୋର ମନ । କପରି ନିଶ୍ଚିନ୍ତ ହୋଇ ଶୋଇବ ?

ରମା ଛଟପଟ ହୋଇ ଉଠି ବସିଲା । ଅନ୍ଧାର ଘର ଭିତରେ ସତେ କି ସେ ମଶାଲ ବାହାରେ ଠିଆ ହୋଇଛନ୍ତି ।

ତମେ ମତେ ଭଲ ପାଅ ନାହିଁ, ରମା । ତମକୁ ମୁଁ ଚାହିଁଥିଲି । ଜୀବନ ସଙ୍ଗିନୀ କରି ଆଣିଥିଲି । ସୁଖୀ କରିବାକୁ ଆପ୍ରାଣ ଚେଷ୍ଟା କରିଛି । ନିଜକୁ ସମର୍ପି ଦେଇଛି; କିନ୍ତୁ ତୁମେ ମୋତେ ଚାହିଁ ନ ଥିଲ ।

ତମର ଓ ମୋର ଆଗରୁ କେବେ ଦେଖା ସାକ୍ଷାତ ହୋଇ ନ ଥିଲା ରମା, ତମର ପିତା ମାତା ତମର ମତାମତ ଚାହିଁ ନ ଥିଲେ । ଯଦି ଚାହିଁ-

ଥାଆନ୍ତେ, ତମେ ହୁଏତ ମନା କରି ଦେଇଥା'ନ୍ତ । ତୁନି ରହି ଅସମ୍ମତି ପ୍ରକାଶ କରିଥାଆନ୍ତ । କିନ୍ତୁ, ସେମାନେ ମୌନଂ ସମ୍ମତି ଲକ୍ଷଣଂ ଭାବି ଯାହା ଠିକ ହୋଇଛି ସେଇଆ କରି ଥାଆନ୍ତେ । ସେମାନେ ଗୋଟିଏ ପୁରୁଷ ଆଗର ଲୋକ । ସେମାନଙ୍କର ଧାରଣା, ଯାହାର ଯିଏ ତା'ର ସିଏ ଅବଶ୍ୟ ହେବ ।

ପତି ପରମ ଗୁରୁ, ପରମ ଦେବତା । ପତ୍ନୀ ଗୃହ-ଲକ୍ଷ୍ମୀ । ସେମାନେ କେବଳ ଏହା ଶିଖି ନ ଥିଲେ, ମନ ଓ ପ୍ରାଣରେ ଅନୁଭବ କରୁଥିଲେ । ପରସ୍ପରର ଭୁଲଭ୍ରାନ୍ତିକୁ ନିଜର କରି ନେଉଥିଲେ । ପରସ୍ପରର ଅଲଗା ଦେହ କେବେ ସିନା ପାଖେଇ ଆସୁଥିଲା, ଏକାଠି ହେଉଥିଲା, କିନ୍ତୁ ମନ ଓ ସରାଗ ଛନ୍ଦାଛନ୍ଦି ହୋଇ ଏକାକାର ହୋଇଥିଲା । ଜଣକ ପ୍ରତି ଅନ୍ୟ ଜଣକର ଅଜଣା ଅନ୍ୟମନସ୍କ ଦୃଷ୍ଟି ପାଇଁ ଦୁଇଟି ମନ ବ୍ୟାକୁଳ, ଛଟପଟ, ଉଦ୍ବେଳବିହ୍ୱଳ ହେଉଥିଲା ।

ହଁ, ରମା, ଏବକାଳର ବିବାହ ମିଳନ କେବଳ ଦେହ ପାଇଁ ବୋଲି ଆମେ ଗ୍ରହଣ କରିଛୁ । ସାମାଜିକ ନିୟମ, କୁଳର ପ୍ରଥା, ମାନସମ୍ମାନ ବ୍ୟାହତ ହେବାର ଭୟ, ଦୁନିଆର ସମାଲୋଚନାର ଡର, ଉଭୟଙ୍କୁ ଗୋଟିଏ ଘରେ ବନ୍ଦୀ କରି ରଖିଛୁ । ଦୁଇଟି ଦେହ ଏକାଠି ହେଉଛି । ପିଲାଛୁଆ ସଂସାରକୁ ଆସୁଛନ୍ତି ।

ଦୁଇଟି ମନ ଦୂରେଇ ରହୁଛି । ପରସ୍ପରର ସ୍ୱାର୍ଥ, ପିଲାଛୁଆଙ୍କୁ ମଣିଷ କରିବାର ଦାୟିତ୍ୱ, ଗୋଟାଏ ଜାଲ ଜୀବନର ଅଭିନୟ କରାଉଛି । ସେହି ଜୀବନ ଓ ଚଳନରେ ପ୍ରକୃତ ପ୍ରେମର ପରଶ ନାହିଁ । ସେଇଥିପାଇଁ ତମର ହବୁ ଦୃଷ୍ଟି ମୁଁ ଲକ୍ଷ୍ୟ କରୁଛି ।

ତମେ ମତେ ଚିହ୍ନି ନ ଥିଲ । ତମେ ଯାହାଙ୍କୁ ଚିହ୍ନିଥିଲ, ସେଇ ହଳଧର ତମର ଆଗରେ ଅଛନ୍ତି !

ରମା ଦୁଇ ହାତରେ ନିଜ ମୁଣ୍ଡକୁ ଧରି ଅନ୍ଧାର ଘରେ କାନ୍ଦି ଉଠିଲା । ମୁଣ୍ଡ ହଲାଇ କହିଉଠିଲା, ନା, ନା, ନା—

ତୃଷ୍ଣା ହେଲା । ସ୍ତ୍ରୀଧର କୋହ ଗୁପ୍ତି ମନ ଭିତରେ କହିଦେଲ, ମୋତେ ତମେ ଏପରି ଭୁଲ ବୁଝ ନାହିଁ । ମୁଁ କାହାକୁ ଗୃହିଁ ନ ଥିଲ । ମୋତେ ଯିଏ ନିଜର କରି ଆଣିଛ, କେବଳ ତା'ର । ସିଏ ମୋର ସ୍ୱାମୀ, ମୋର ସର୍ବସ୍ୱ, ମୋର ଚଳନ୍ତ ଦେବତା । ସବୁ ବ୍ୟାକୁଳତା ସତ୍ତ୍ୱେ ତମର ସେବା ମୁ କରି ପାରୁନାହିଁ । ମୋତେ ଆସୁନାହିଁ । ପ୍ରେମ କଅଣ ମତେ ଜଣା ନାହିଁ । ମୋ ମନରେ ତମ ବ୍ୟତୀତ ଆଉ କାହାର ସ୍ଥାନ ନାହିଁ ।

କିଏ ସେ ହଳଧର, ତାଙ୍କୁ ମୁଁ ଚିହ୍ନେ ନାହିଁ ।

ଆମେ ତ ଝିଅ । ମୋ ପରି କେତେ ଝିଅ ପରଘରେ ଘରଣୀ ହେଲେଣି । କେତେ ପିଲାଛୁଆଙ୍କର ଜନନୀ ହେଲେଣି । ଦାଣ୍ଡକୁ ବାହାରିବାର ସ୍ୱାଧୀନତା ତମେମାନେ ଦେଇଚ, ହାତେ ଓଢ଼ଣା ଟେକ ମୁଣ୍ଡ ଉପରେ ରଖିବାକୁ ତମେ କହୁଛ । ତମେ ପୁଣି କହୁଛ ମୁଣ୍ଡ ଯତ୍ନ କରି ବାନ୍ଧ, ମୁହଁରେ ପାଉଡ଼ର ବୋଳ, ଓଠରେ ରଙ୍ଗ ଲଗାଅ, ଆଖିରେ କଜଳ ପିନ୍ଧ, ନଖରେ ନାଲିପୁଷ୍ଟ ଚଢ଼ାଅ, ପାଦରେ ଅଳତା ମଣ୍ଡ । ଦେହକୁ ରଙ୍ଗଢଙ୍ଗର ହେମିକ୍ ବ୍ଲାଉଜ୍‌ରେ ଅଧା ଘୋଡ଼ାଅ, ଅଧା ଦେଖାଅ, ରଙ୍ଗଢଙ୍ଗର ସୂକ୍ଷ୍ମ ଶାଢ଼ୀ ଅବୃତ କର, ରଙ୍ଗଢଙ୍ଗର ପଥରବସା ଗହଣା ଦେହଙ୍ଗରେ ମଣ୍ଡ ।

ତମ କଥା ନ ମାନିଲେ ତମେ ମୁହଁ ଶୁଖାଅ । କଥା ମାନିଲେ ତମେ ଖୁସି ହୁଅ । ପଦାକୁ ବାହାରିଲେ ଲମ୍ପଟଙ୍କା ସହସ୍ର ଲୋକଙ୍କ ଲୋଭରା ଚାହାଁଣୀ ଉପରେ ପଡ଼େ । ଚାହାଁଣୀ ନୁହେଁ, ବନଶୀ । ସେ ଚାହାଁଣୀ ଚୋଟାଏ ଗିଳି ପକାଇବାକୁ ଆଗ୍ରହ ପ୍ରକାଟେ ।

ହଳଧରଙ୍କ ଚାହାଁଣୀ ସେମିତିକା ।

ତାଙ୍କର ପରି ଅନେକ କେତେ ଭଦ୍ରଲୋକ—ଯୁବକ, ପ୍ରୌଢ଼ ଓ ବୃଦ୍ଧ, ମନ୍ଦିର ଭିତରେ ଥାଇ ଦେବୀଙ୍କର ଦର୍ଶନ କରୁଥିଲେ । ସେମାନେ ଯୋଡ଼ହସ୍ତ । ଦୃଷ୍ଟି ଭ୍ରମି ଯାଉଥିଲା । ସେଥିରୁ ଦୃଷ୍ଟି ହୁଏତ ଉଦ୍ଦେଶ୍ୟହୀନ । କେଜାଣି ବା, କୌତୁକପୂର୍ଣ୍ଣ, କୁତୂହଳପୂର୍ଣ୍ଣ । କେତେ ଦୃଷ୍ଟିରେ ସଙ୍କେତ ଓ ଆଶଙ୍କାପୂର୍ଣ୍ଣ ।

ହଳଧରଙ୍କ ଦୃଷ୍ଟି ... ।

... ?

ଏକଥା ତମକୁ ଅଜଣା ନାହିଁ ନିଜର ଲାଳସାର ହଳାହଳକୁ ନିଜେ ସେ ପାନ କରିଛନ୍ତି, ନିଜେ ସେ ... ଉଠନ୍ତି । ସେଥିରେ ତମର କଅଣ ଥାଏ, ମୋର କଅଣ ଥାଏ ? ଜୟଶ୍ରୀଙ୍କର ରୂପଯୌବନକୁ ସବୁବେଳେ ସଜ ସତେଜ ଓ ଉଜଳ କରି ହଳଧରଙ୍କର ଓଲେଇ ଆଗ୍ରହକୁ କେବଳ ନିଜ ଗୃହପାଖେ ବେଙ୍ଗଳା ପକାଇବାର ସବୁ ଉଦ୍ୟମ ବିଫଳ ହୋଇଛି ।

ସେ ନ ଜାଣନ୍ତୁ, ମୁଁ ଜାଣିଛି, ତମକୁ କହୁଛି, ତମେ ବିଶ୍ୱାସ କର । ପତ୍ନୀ ପାଇଁ ଅସରନ୍ତି ପ୍ରେମର ସେ ଅଭିନୟ କରୁଛନ୍ତି । ନିଜ ପାଖରେ ପ୍ରତି ମୁହୂର୍ତ୍ତରେ ସେ ନିଜର ଅଣଅସ୍ୱସ୍ତି ମନ ପାଇଁ ଦୋଷୀ ହେଉଥିବେ । ନିଜେ ସବୁ ସେ ବିଚାରକ, ଏତେ ଲୋକଙ୍କୁ ଦଣ୍ଡ ଦେଉଛନ୍ତି, ନିଜ ପାଇଁ ସେ କେଉଁ ଦଣ୍ଡର ବ୍ୟବସ୍ଥା କରିଛନ୍ତି ତମେ ଜାଣ କି ?

ଭାବନା ଭିତରେ ଆଗ୍ରହୀ ସୁକାନ୍ତ ପଚାରୁଛନ୍ତି, ମୁଁ ଜାଣେ ନାହିଁ, ତମେ ଜାଣ ତ କୁହ ।

କହିବି ? କାମନାର ଅନଳ ଜଳାଇ ନିଜକୁ ସେଥିରେ ଢାଳ ଢାଳ କରି ପୋଡ଼ି ଛଟପଟ ହେଉଛନ୍ତି । ହେଉନ୍ତୁ, ସେଥିରେ କାହାର କି ଥାଏ ?

ତମେ ମୋର ସୁନାମୁଣ୍ଡା, କଠୋର ଓ ନିର୍ମଳ । ତମର ଟାଣ ପଣକୁ ମୁଁ ଛଳ କରେ ନାହିଁ । ମୁଁ ଜାଣେ, ତମେ ଅଭିନୟ କର ନାହିଁ । ମନରଖା କଥା ଜାଣ ନାହିଁ । ତମ ମନକୁ ମୋ କାମ ନ ଆସିଲେ ତମେ ରାଗ, ଗାଳିଦିଅ, ଫୋପଡ଼ା କଚଡ଼ା କର । ଅଭିମାନ କରି ଦୂରକୁ ପଳାଅ । ଆପେ ଆପେ ପୁଣି ଫେରି ଆସ, ଗୋଳେଇ ହୁଅ ।

ମୁଁ ସବୁ ଜାଣେ ।

ଅଭିମାନ କରିବ ତମେ ଉପରେ ? ନାଁ, ପାରିବ ନାହିଁ । ଆସ ମ ପାଖକୁ, କାହିଁପରି ସେଠି ମୁହଁ ଶୁଖାଇ ଠିଆ ହୋଇଛ କାହିଁକି ? ମୋର ଅସାର୍‌ଗତା, ଅଶିକ୍ଷା, ଅସାବଧାନତାକୁ କ୍ଷମା କର ମ ।

ସୁକାନ୍ତ ପାଖକୁ ଆସିଲା ।

ମଶାରି ଟିକେ ପାଖରେ ବସିଲା । ବାହାରେ ଅନ୍ଧାର । ମନମଣ୍ଡଳରେ ସହସ୍ର ଦୀପାଳି ଜଳୁଛି । ସୁକାନ୍ତ ରମାର ମୁହଁ ଟିକେ ହସ ହସ ହୋଇ ଗଲେଣି ପଚାରିଲା, ରାଗିଲ କି ? ସେତେବେଳେ ମୁଁ ମୋ ନିଜ ଭିତରେ ନ ଥିଲି । ମୋ ମନ ପାହାଡ଼ ତଳ ଘନ ଅରଣ୍ୟ ମଝିରେ ବୁଲୁଥିଲା । ସେଠାରେ ସହସ୍ର ଲୋକ କାମ କରୁଛନ୍ତି । ଗିରି ଝରଣାକୁ ପୋଷା ମନାଇବାକୁ ମଝିରେ ବନ୍ଧ ପକାଉଛନ୍ତି । ନାଳ ଖୋଳୁଛନ୍ତି । କେତେ ଭୂମିରେ ପାଣି ମାଡ଼ିବ । କେତେ କୁଟୁମ୍ବଙ୍କର ଜମିରେ ଦ୍ୱିଗୁଣ ଫସଲ ଫଳିବ । ସେମାନେ ସୁଖରେ ଆନନ୍ଦରେ ଘର ସଂସାର କରିବେ । ମୁଁ ବି ଉପରିସ୍ଥମାନଙ୍କଠାରୁ ପ୍ରଶଂସା ପାଇବି । ପଦୋନ୍ନତି ପାଇଁ ସୁପାରିସ୍ ପାଇବି । ପଦୋନ୍ନତି ହେବ । ଆମେ ମଧ୍ୟ ସୁଖରେ ରହିବା, ରମା !

ଅଭିମାନ କଲ କି ? ମୋର କେତେ ରାଗ ରୋଷ ତମେ ସହୁଛ । କାଲିକା ଘଟଣା ପାଇଁ ମୁହଁ ଶୁଖାଇଛ, ରାଢ଼ ଅଧରେ କାନ୍ଦୁଛ ? ରମା, ତମେ ମୋର ସବୁ ପାଗଳାମି, ତଗଲପଣିଆଁ ସହୁଛ ବୋଲି ମୋର ଅତି ସ୍ନେହ ଆଦରର ଅମୂଲ୍ୟ ମଣି ହୋଇ ଗୃହ ତଳେ ସଦାବେଳେ ଝଟକୁଛ । ମୋର ଅତି ଆପଣାର ହୋଇପାରିଛ ।

ସଂସାରରେ ଆଉ କିଏ ଅଛି କହତ ରମା, ଯିଏ ମୋର ଅଳି ଅର୍ଦ୍ଧୋଳି ଓ କଥା ଅକଥାରେ ରାଗ ରୋଷ ସହି ପାରିବ ? ମୋର ସବୁ ଦୁର୍ବଳତାକୁ ହଜମ କରି, ମାନ ଅଭିମାନକୁ ପଛକୁ ପକାଇ ହସି ହସିକା ଆଗକୁ ଆସିବ ? ଅରଟିଏ ମନକିଣା ଗୃହିଣୀରେ ସବୁ ଦୋଷ କ୍ଷମା କରି ମୋର ମନ ଓ ଆତ୍ମାକୁ ଓଟାରି ନେଇ କୋଳ କରିବ, ଗେଲ କରିବ ? ଆଉ କେହି ନାହିଁ । ଏକା ତମେ ।

ମୁହଁ ଟେକ ତ, ହଉ, ଥରଟିଏ ହସ । ହସିବ ନାହିଁ କେବଳ ଦେଖିବ ରହ ।

ସୁକାନ୍ତ ରମାର ଲୁହଧୁଆ ମୁହଁରେ ଗେଲ କଲା । ସବୁ ଅଭିମାନ, ଦୁଃଖ ଓ ସନ୍ଦେହ ତା'ର ବାହୁବନ୍ଧନର ପରଶରେ ଦୂର ହୋଇଗଲେ । ମୋର ଦେହ, ମନ ଓ ଆତ୍ମା ଉଚ୍ଛ୍ୱସିତ ହେଲା ।

ସେ ଭାବିଲା, ଦେହଟି ତାଙ୍କର ଦୂରରେ ଥିଲେ ବି ମନଟି ଏଇଠି ଅଛି, ଏଇ ଅନ୍ଧାର ଘରର ମଶାରି ତଳେ, ରମାର ଭିତରେ ଓ ବାହାରେ । ଆଉ, ତାଙ୍କର ଦେହ ଓ ମନରୁ ଉଦ୍ଭବ, ସ୍ନେହ ସରାଗ, ଆଶା ଆକାଙ୍‌କ୍ଷାର ଉପାଦାନ ନେଇ ଗଢ଼ା ହୋଇଛନ୍ତି ରମାର ଭିତରେ, ରମାର ରକ୍ତ ମାଂସରେ ଯେଉଁ ନୂଆ ମଣିଷ ଦୁଇଟି—କୁନୁ ଓ ଇରା, ନା, ସୁକାନ୍ତ ଓ ରମା, ସେ ଦୁଇଟି କେଡ଼େ ନିଶ୍ଚିନ୍ତରେ ଶୋଇଛନ୍ତି !

ରମା ଆଖିରୁ ଲୁହ ପୋଛି, ପୁଣି ବିଛଣାରେ ଶୋଇଲା । ଦୁଇ ପାଖକୁ ହାତ ଲମ୍ବାଇ କୁନୁ ଓ ଇରାଙ୍କର ପିଠି ଥାପୁଡ଼ିଲା । ସବୁ ରାଗ ରୋଷ ମାନାଭିମାନ ମନରୁ ଅପସରିଗଲେ । ତେଣେ ଉଠିଲା ବ୍ୟାକୁଳତା—ଅନ୍ଧାର ରାତିରେ ବିନା ମଶାରି ଓ ଆଲୁଅରେ କିପରି ସେ ରହୁଥିବେ ? ଦୁଇ ହାତ ଆଣି ମୁଣ୍ଡରେ ଲଗାଇ ମନେ ମନେ ଡାକ ଛାଡ଼ିଲା, ମା ଗୋ ଜଗତ୍ ଜନନୀ, ତୁମର ଚରଣତଳେ ମୁଁ ଶରଣ ପଶୁଛି, ମାଗୁଣି କରୁଛି, ତୁମର ଦୟା, ତୁମର ଶୁଭ ଦୃଷ୍ଟି ତାଙ୍କର ଉପରେ ରହୁ, ଆପଦ ବିପଦ ଆଡ଼େଇ ଯାଉ ।

ମନରେ ବଳ ଆସିଲା । ଛାତିର ସ୍ପନ୍ଦନ ସ୍ୱାଭାବିକ ହେଲା; କିନ୍ତୁ ଡାହାଣ ଆଖିର ଭ୍ରୂଲତା ଓ ପତା ମାଡ଼ି ମାଡ଼ି ପଡ଼ୁଛି । ଓଠ ଉପରେ ଖଣ୍ଡିଆ ବ୍ରଣ ବେଶି ପୋଡ଼ୁଛି ବେଶି କଟକଟ ହେଉଛି । ସ୍ନୋ'ର ଶୀତଳତା ଆଉ ନାହିଁ ।

ଚନ୍ଦନ ଘୋରି ଲଗାଇ ଦେବ ? ଝିଅକୁ ଡାକି ଡାକ୍ତରଙ୍କ ପାଖକୁ ଖବର ପଠାଇବ ? ଏତେ ରାତିରେ ସେ ଆସିବେ ?

ରମା ଅସ୍ଥିରତା ଅନୁଭବ କଲା ।

ରମା ଶୁଖି ଶୁଖି ଯାଉଛି । ସିଧା ସଳଖ ମୁହଁକୁ ଚାହୁଁ ନାହିଁ । ନିତିବେଳାରେ ରୂନ ରୂନ କାନ୍ଦ ଆଖି ମୁହଁ ଫୁଲିଲ ପରି ଦିଶୁଛି । ସୁନ୍ଦର ସୁଠାମ ନାସିକାଟି ଲାଲ ଦିଶୁଛି । ଓଠ ପତା ଥରି ଉଠୁଛି । ତଥାପି ସେ ନିଜକୁ ସଜାଉଛି । କେଜାଣି ବା ତା'ର ବାନ୍ଧବୀ ଗୋମତୀ ତାକୁ ସଜାଇ ଦେଇଥିବେ ।

ଗୋମତୀ ଜାଣନ୍ତି, ରମା ନିଜେ ନିଜର ଯତ୍ନ ନେଇପାରେ ନାହିଁ । ସେଇଥିପାଇଁ ତା ର ଚନ୍ଦ୍ରଉଦିଆ ଝଟକିଲା ମୋହିନୀ ରୂପ ବିକଶିତ ହୁଏ ନାହିଁ, ସୁକାନ୍ତ ବିରକ୍ତ ହୁଏ ।

ଗୋମତୀଙ୍କୁ ବିବାହ କରିବାକୁ ସେ ମନା କରି ଦେଇଥିଲା । ଗୋମତୀ ସୁନ୍ଦର କି ଅସୁନ୍ଦର, ତାଙ୍କର ବିଦ୍ୟାବୁଦ୍ଧି କେତେ, ଢଙ୍ଗଢାଙ୍ଗ କିପରି ଏ ସବୁ ବିଷୟ ସେ ଭାବି ନଥିଲା । ସେତେବେଳେ ଏ ସବୁ ବିଷୟର ଚିନ୍ତା ସୁକାନ୍ତର ମନରେ ପ୍ରବେଶ କରି ନ ଥିଲା ।

ଗରିବ ଚାଷୀ ଘରର ପିଲାଟି, ଅଭାବ, ଅସୁବିଧା ପାଖଲୋକ ଓ ନିଜ ଲୋକଙ୍କର ପଛଟଣା ବାଧାବିଘ୍ନକୁ ଡେଇଁ ଡେଇଁ ଆଗେଇ ଆସିଛି । ଜୀବନ ସୁରୁଖୁରୁରେ କଟି ନାହିଁ । ସେ ଅଟକିଛି । ଆଗର ପ୍ରତିବନ୍ଧକ ଅଲଂଘନୀୟ ବୋଲି ମନେ ହୋଇଛି । ଧୈର୍ଯ୍ୟ ଧରି ପୁଣି ସିଧା ସଳଖ ଚାଲିଛି, ଅବା ପ୍ରତିବନ୍ଧକକୁ ଆଡ଼େଇ ଆଗେଇ ଯାଇଛି ।

ସେ ଝୁଣ୍ଟିଛି, ତଳେ ପଡ଼ିଛି । ଖଣ୍ଡିଆ ଖାବରା ହୋଇ ଲହୁଲୁହାଣ ହୋଇ ଅଟକିଛି । ଦୁନିଆର ଲୋକେ ହସିଛନ୍ତି । ଫେରିଆ ବୋଲି ଈର୍ଷାମିଶା ସହାନୁଭୂତି ଦେଖାଇ ଡାକ ଛାଡ଼ିଛନ୍ତି । ହାତ ବଢ଼ାଇଛନ୍ତି । ଡରିଲା ଥରିଲା ଗୋଡ଼ ଆକୁଳ ବିକଳ ରୋଦନ କରିଛି, କହିଛି ସେଠିକି ଥାଉ, ଫେରି ଚାଲ ।

ମନର କାମନା ନିଜର ଅଜାଣତରେ ଆଗକୁ ଠେଲିଛି, ଆଗକୁ ବଢ଼ିଛି । ପଦେ ପଦେ କଣ୍ଟା'ଝଣ୍ଟା । ଅଡେଇ ଚାଲିଲେ ମଧ୍ୟ ଗୋଡ଼ରେ ଲାଗେ, ଗୋଡ଼ରେ ଛିଦ୍ର ହୁଏ ।

ଏ ଦୁନିଆ ଏଇଆ । ଏ ଜୀବନ ଏଇଆ । ଯେ ଘଟେ, ସେ ରହେ । ଅଧିର ଅସ୍ଥିର ହୋଇ, ବିଚଳିତ ବିବ୍ରତ ହୋଇ, ନିଜକୁ ଯେ ଦହେ, ସେ ପଛେଇ ଯାଏ, ଅନେଡ଼ା ଅପୂର୍ଣ୍ଣ ହୋଇ ବିସ୍ମୃତିର ଅନ୍ଧାରି ଗୁହାରେ ସେ ସମାଧି ନିଏ ।

ଏହାହିଁ ସେ ଦେଖିଛି । ନିଜର ଅତୀତ ଅନ୍ଧାର ଭିତରେ ନିଜକୁ ଆତଯାତ ହୋଇ ଆଗେଇ ଆସିବାର ସେ ଦେଖିପାରୁଛି । ସବୁ ଘଟଣା, ସବୁ ଅନୁଭୂତି, ସେ ସବୁ ଢଙ୍ଗରେ ଯେଉଁ ଘଟିଛି ଓ ଯେଉଁସବୁ ଲୋକଙ୍କର ପ୍ରମେକ ଏବଂ ପ୍ରଭାବ ପଡ଼ିଥିଲା, ଆଜି ତାହା ମନେ ପଡ଼ୁନାହିଁ । ଯାହା ଦେହରେ ଓ ମନରେ ଗଭୀର ଗାର ଟାଣିଥିଲା ତାହାହିଁ ମନେ ପଡ଼ୁଛି, ଆଖିରେ ଅସ୍ପଷ୍ଟ ହୋଇ ଦେଖାଯାଉଛି ।

ଦରିଦ୍ର କୃଷୀ ଘରର ପୁଅ ।

ପଦ୍ମା ମହାପାତ୍ର । କୁଜଙ୍ଗ ଅଞ୍ଚଳରେ ମୋଫସଲରେ ଘର । ଏରସମା ଥାନା ପାଖରୁ ଯେଉଁ ଚାଲିବାଟଟି ଗହ୍ମର ମଝିରେ ଦକ୍ଷିଣ-ପୂର୍ବ ଆଡ଼କୁ ପଡ଼ିଛି, ସେହି ବାଟରେ ଗଲେ ତିନି ଚାରି ମାଇଲ ଦୂରରେ ତାଙ୍କର ଛୋଟ ଗ୍ରାମ ନରେନ୍ଦ୍ରପୁର ।

ଗ୍ରାମଟି ଛୋଟ ହେଲେ ମଧ୍ୟ ବହୁ ଜାତିର ଲୋକେ ସେଠାରେ ରହନ୍ତି । ଅତି ଧନୀ ହେଉଥିଲା ବଂଶରୁ ଆରମ୍ଭ କରି ଅତି ଦରିଦ୍ର ନିତମୂଲିଆ ବାଉରି ବଂଶ-ଯାଏ । ଜାତିଆଣ ପାହାଚରେ ମହାପାତ୍ର ବଂଶର ସ୍ଥାନ ବେଶ୍ ଉଚ୍ଚରେ । ଜାତିର ବଡ଼େଇ ଓ ସମ୍ମାନ କେଉଁକାଳରେ ଅବଶ୍ୟ ଥିଲା, ଏ ଯୁଗର ପେଟ ପାଇଁ ନାଟ ଅମଳରେ, ତିଷ୍ଠିବା କି ବଞ୍ଚିବାର ଟଣାଓଟରା ବେଳେ, ଜାତିଅଭି-ମାନ ଗଣଦେବତାର ଚରଣ ତଳେ ଗଡ଼ି ପଡ଼ିଛି । ଅନିବାର୍ଯ୍ୟ ତା'ର ମରଣ ।

କେଉଁ କାରଣରୁ କେଉଁ ଯୁଦ୍ଧକ୍ଷେତ୍ରରେ କେଉଁ ରାଜା ସେମାନଙ୍କର ଅତୀତ ପ୍ରପିତାମହଙ୍କୁ ମହାପାତ୍ର ଉପାଧି ଦେଇ ମୁଣ୍ଡରେ ପାଗ ବାନ୍ଧିଥିବେ, ହାତରେ ଲେଖନ, କି ଖଣ୍ଡା ଦେଇଥିବେ, ଏହାର ଅବକାଶ ନାହିଁ । ସେ ଘଟଣା, କି ସେଇ ପ୍ରପିତାମହଙ୍କର ନାମ କାହାରି ମନେ ନାହିଁ ।

ସୁଖରେ ସେ ଧନୀ ଥିଲେ । ନରେନ୍ଦ୍ରପୁର ଗଆଁରେ ତାଙ୍କର ବାଡ଼ିବାଡ଼ି ଭୂଇଁ ଥିଲା । ବାଗ ବଗିଚା ବି ଥିବ । ସାପୁଆ ଜୁଆରିଆ ନାଳରୁ ମାଛ ଧରିବାକୁ ଖାଉଡ଼ି ଜାଲ ଓ ହୁଲଡଙ୍ଗା ଥିବ । ଘରେ କେତେ ହଳିଆ, ମୂଲିଆ କାମ କରୁଥିବେ । ଗାଈ ମଇଁଷି ଗୋଠ ଥିବ ।

ଯେଉଁମାନେ ଆଜି ନରେନ୍ଦ୍ରପୁରରେ ଧନୀ, ମାନୀ ଓ ଦାନୀ ହୋଇ ଦୁଃଖୀରଙ୍କୀଙ୍କ ହାନି-ଲାଭରେ ଆଗେଇ ଆସୁଛନ୍ତି ଦୟା ବିତରଣ କରିବାକୁ, ସେମାନଙ୍କର ପ୍ର-ପଣଅଜା ମହାପାତ୍ର ଘର ଯାଆଯାଆବେଳେ ଦୂରରେ ଉଭା-ହୋଇ କାନ ପାତୁଥିବେ ।

ମହାପାତ୍ର ବଂଶର ଉପାଧ୍ୟାୟ ପ୍ରପିତାମହ ପ୍ର-ପଣଅଜା ଅଭୁ କଅଣ ବୋଲଉଥିବେ । ଘର ଘରେ ମୂଲ ଲାଗୁଥିବେ । ଗାଳି ମାଡ଼ ସହି ରହୁଥିବେ ।—

ଏହିପରି ଗଡ଼ି ଆସିଥିବ ଚାଟୁଳି । ହେତୁ ପାଇଲା ଦିନୁ ବାପ ନନ୍ଦ ମହାପାତ୍ରଙ୍କୁ ସେ ମୂଲ ଲାଗିବାର ଦେଖିଥିଲା । ବଡ଼ଭାଇ ଆନନ୍ଦ ତାଙ୍କୁ ସାହାଯ୍ୟ କରୁଥିଲେ । ଆଗ ମାଆଙ୍କୁ ସେ ଦେଖି ନ ଥିଲା । ଆନନ୍ଦ ଭାଇ ଓ ରତି, ମତି ଏବଂ ସତୀ ଅପା ଆଗ ମାଆଙ୍କର ସନ୍ତାନ । ସାପ କାମୁଡ଼ାରେ ସେଇ ମା ପ୍ରାଣ ହାରିଲେ । ଘର ଅଚଳ ହେଲା ବୋଲି ବେଶି ବୟସରେ ବାପ ଆଉ ଥରେ ବିବାହ କଲେ । ବହୁ ବର୍ଷ ପରେ ସୁକାନ୍ତ ତାଙ୍କର ପେଟରୁ ଜନମି ଥିଲା ।

ରତି ଅପା ଓ ମତି ଅପା କେବେ ପରଘରକୁ ଗଲେ ସୁକାନ୍ତର ମନେ ନାହିଁ । ସେ ଶୁଣିଛି, ପୈତୃକ, ସମ୍ପତ୍ତି ପାଞ୍ଚମାଣ ଜମିରୁ ସେମାନଙ୍କ ବାହାଘରେ ପାଞ୍ଚ ଦୁଇମାଣ ଗୁଡ଼ିଆ ଘରେ ବନ୍ଧା ପଡ଼ିଥିଲା । ସୁଧ ଓ ମୂଳ ବାବଦକୁ ଗୁଡ଼ିଆ ସେତକ ନିଲାମ କରାଇ ନେଲେ ।

ସତୀଅପା ଅତି ଭଲ । ସାନବୋଉଙ୍କର ଅତ୍ୟାଚାର ସହି ମଧ୍ୟ ତୁଣ୍ଡ ଖୋଲି ପଦେ ଜବାବ୍ ଦିଏ ନାହିଁ । ଦିନ ରାତି ପରିଶ୍ରମ କରୁଥାଏ । ସୁକାନ୍ତକୁ ସ୍ନେହ

କରେ । ଆନନ୍ଦ ଭାଇଙ୍କୁ ବାଘ ସାପ ପରି ଡରେ । ସାନ ବୋହୂ ମଧ୍ୟ ଆନନ୍ଦ ଭାଇଙ୍କୁ ଡରନ୍ତି । ସେ ଅତି ଦୁଷ୍ଟ ବୋଲି ଗ୍ରାମ ଲୋକେ କହନ୍ତି । ସେ ରାଗିଲେ ନିଜ ପ୍ରାଣକୁ ମୂରୁଛିବ ପଛେ, ପଛେଇ ଆସିବ ନାହିଁ । ସୁକାନ୍ତକୁ ସେ ଗେହ୍ଲା କରେ । ପାଠ ପଢ଼ାଇବାକୁ ଗୃହାଳରେ ବସାଏ ।

ବାପ ଭଲ ଲେଖାପଢ଼ା କରି ପାରୁ ନଥିଲେ । ଝିଣ୍ଟିଝିଣ୍ଟିକା ଗୋପୀ-ଭାଷା ବୋଲୁଥିଲେ । ଆନନ୍ଦ ଭାଇଙ୍କର ପାଠର ଦଉଡ଼ ସେତିକି ଦୂର । ପାଠରେ ତାଙ୍କର ମନ ନ ଥିଲା । ପଢ଼ିବାକୁ ବେଳ ନ ଥିଲା । ଅନୁର୍ବର ଲୁଣିଚରା ଜମିର ଫସଲରେ ପାଞ୍ଚପ୍ରାଣୀ କୁଟୁମ୍ବର ପେଟକୁ ଦାନା ଓ ଦେହକୁ କନା ମିଳିବା ଅସମ୍ଭବ । ତେଣୁ ପିଲାଟି ଦିନରୁ ଗୋରୁଗାଈ ଚରାଇବା ଓ ପରଘରେ ମୂଲ ଲାଗିବାକୁ ତାଙ୍କୁ ପଡ଼ିଲା ।

ସତୀ ଅପାର ବାହାଘର ମନେ ପଡ଼ୁଛି । ଅଠର ମାଣେ ଜମି ସଉଳ ଘରକୁ ଲେଖିଦେଇ ପଚାଶ ଟଙ୍କା ଋଣ ଆଣିଲେ ବୋଲି ସାନ ବୋଉ ବାପାଙ୍କୁ ଗଞ୍ଜଣା ଦେଲେ । ସତୀ ଅପା ଘରୁଆ ଘରର ବୋହୂ ହୋଇ ଗଲା କୁଜଙ୍ଗ ଗଡ଼କୁ । ତା'ର ରୂପ, ଗୁଣ ଓ ସର୍ବ-ସହଣୀ ଭଲପଣିଆଁର ପ୍ରଶଂସା ଶୁଣି, ତାକୁ ଆଖିରେ ଦେଖି, ବୁଢ଼ା ଚଉଧୁରୀ ବଡ଼ବୋହୂ କରିନେଲେ । ତୁଳସୀପତ୍ର ପାଣି । ଚଉଧୁରୀଙ୍କ ବଡ଼ପୁଅକୁ ବି ଝିଅ ମିଳୁ ନ ଥିଲା । ପାଠୁଆ ପୁଅ ସେ, ହେଲେ, ବସନ୍ତ ରୋଗରେ ଗୋଟିଏ ଆଖି ସେ ହରାଇଥିଲେ । ଦେହ ଓ ମୁହଁରେ ଗାତୁଆ ଦାଗ, ପୋଶାକ ପକାଇବାକୁ ଚହ୍ନା ନାହିଁ । ତାଙ୍କର ନାମ କାର୍ତ୍ତିକ । ଗୋରା ତକ ତକ ବଳିଷ୍ଠ ଦେହ । ବସନ୍ତ ହୋଇ ନ ଥିଲେ, ସେ କାର୍ତ୍ତିକ ପରି ସୁନ୍ଦର ଦିଶୁଥାନ୍ତେ ।

ଅଠର ମାଣେ ଜମି ଗଲା । ଘରବାରି ମାଣକ ଛାଡ଼ିଦେଲେ ବାକି ରହିଲା ଦୁଇମାଣ ବୃଷ ଜମି । ଅବସ୍ଥା ଅଚଳ ହେଲା । ଦିନ ରାତି ଗଞ୍ଜଣା ହୁଏ, ଆନନ୍ଦଭାଇ ଗାଁ ଛାଡ଼ି କଲିକତା ଗଲେ । ଉପାସ ଭୋକରେ ବେଳ କାଟିବା ଅପେକ୍ଷା ବୋଝ ବୋହି ପେଟ ପୋଷିବା ଭଲ । ହାଡ଼ଭଙ୍ଗା ପରିଶ୍ରମ କରି ଗ୍ରାମରେ ଆଉ ଯେଉଁ ମୂଲ ମିଳେ, ସେତକ ସାନ ବୋଉଙ୍କ ହାତକୁ ନଦେଲେ

ସେ ବଡ଼ଭାଇ କି ବୁଢ଼ା ବାପାଙ୍କର ଅବଗୁଣ ଗାଇ ଗର୍ଜନ କରନ୍ତି । ଗାଁ ମାଇପେ ମୁହଁ ଉପରେ ତାଙ୍କୁ ସୁହାବାଲୀ ବୋଲି କହନ୍ତି ।

ଆନନ୍ଦଭାଇ କଲିକତାରେ କି କାମ କଲେ ତାଙ୍କୁ ଜଣା । ଘରକୁ କେବେ ପାଞ୍ଚଲଟିଏ ପଠାଇଲେ ନାହିଁ । ଅକାଳେ ସକାଳେ ଚିଠିଖଣ୍ଡେ ଦିଅନ୍ତି ନାହିଁ । ସେ ବିଦେଶ ଗଲାରୁ ଘରକାମ ଓ ପରକାମର ବୋଝ ପଡ଼ିଲା ବୁଢ଼ା ବାପାଙ୍କ ଉପରେ । ଯେତେ କାମ କଲେ ବି ବୋଝ ଟିକେ ଢେ଼ ହୁଏ । ତାର କଥା କହୁ ଝିଙ୍ଗାସେ, କିନ୍ତୁ ଦେହ ଖରାପ ହେଲେ ଝିଅପିଆ ଭୁଲି ଦିନରାତି ସେବା କରେ । ବଇଦ ଡକାଇ ଚିକିତ୍ସା କରାଏ । ସମ୍ବଳ ଧନ ଖରଚ କରିବାକୁ କୁଣ୍ଠିତ ହୁଏ ନାହିଁ । ଆନନ୍ଦଭାଇଙ୍କ ଅଭିଶାପ ଦିଏ । ଝିଅମାନଙ୍କର ନାମ ଧରେ ନାହିଁ । ଲୋକେ ତାର ନିନ୍ଦା କରନ୍ତି । ସେଥିକି ସେ ଖାତିର କରେ ନାହିଁ ।

ସୁକାନ୍ତକୁ ଜନ୍ମ ଦେଇଛନ୍ତି, ସ୍ନେହ ଶ୍ରଦ୍ଧା ହେବାର କଥା, କିନ୍ତୁ ଅକଥାରେ ମାଡ଼ଗାଳି ଦେବାକୁ ସେ ଭୁଲନ୍ତି ନାହିଁ ।

ଗ୍ରାମ ପାଠଶାଳୀରୁ ପାଠ ଶେଷ କରି ଗାଈ ଗୋରୁ ଛେଳି ମେଣ୍ଢା ଜଗିବାରେ ସୁକାନ୍ତର ଗୋଟିଏ ବର୍ଷ କଟିଲା । ଗୋଟିଏ ଗୋରୁ ପାଇଁ ମାସିକ ମୂଲ ଗୁରଣା । ଗୋଟିଏ ଛେଳି କି ମେଣ୍ଢା ପାଇଁ ଦୁଇଅଣା । ପଢ଼ିଲା ପାଠ ଧୀରେ ଧୀରେ ଭୁଲିବାକୁ ଲାଗିଲା । ପାଠର ମୂଲ୍ୟ ମୂଲିଆ ଜୀବନରେ କିଛି ନାହିଁ । ମୂଲିଆର ପୁଅ ସୁକାନ୍ତ ମୂଲିଆ ହେବ, ଏଥିରେ ସନ୍ଦେହ କରିବାର କାରଣ ନାହିଁ । ଏହାଛଡ଼ା ଯେ ସେ ଆଉ କଅଣ ହୋଇପାରିବ, ସେପରି ଧାରଣା ନଅବର୍ଷର ପିଲା ସୁକାନ୍ତର ମନରେ କେବେ ଥାନ ପାଇ ନ ଥିଲା ।

ହାତ ବଢ଼ାଇଲେ ରମା ଦୂରେଇ ଯାଉଛି ।

ସୁନ୍ଦର ମୁହଁରେ ଅନୁତାପର ଅସ୍ପଷ୍ଟ କାଳିମା ପ୍ରଚ୍ଛନ୍ନ । ଘୃଣାର ଅଣଅଟକା ତୋଫାନ ଓଠପଟା ଓ ନାକପୁଡ଼ା ଥରାଇ ଦେଉଛି । ଯେଉଁ ଇଞ୍ଜିନିୟର ତାକୁ ବିବାହ କରିବାକୁ ପ୍ରସ୍ତାବ ପଠାଇଲେ ତାଙ୍କ ପାଖରେ ସେ କୃତଜ୍ଞ, କିନ୍ତୁ ସେ କିଏ, ତାଙ୍କର ଅତୀତ କଅଣ, ସେ କଥା ରମା ଜାଣି ନ ଥିଲା । ସେ ବିଷୟରେ ତା'ର ପିତା ମାତା କି ଭାଇବନ୍ଧୁ କେହି ଅନୁସନ୍ଧାନ କରିବାକୁ

ଆଗ୍ରହୀ ହୋଇ ନ ଥିଲେ । ସେମାନେ ଆନନ୍ଦିତ ଓ ସନ୍ତୁଷ୍ଟ ଯେ ସେମାନଙ୍କର ଜାମାତା ଜଣେ ଇଞ୍ଜିନିୟର, ସ୍ୱାସ୍ଥ୍ୟ ସମ୍ପନ୍ନ, ବଳିଷ୍ଠ, ସୁନ୍ଦର ପୁରୁଷ । ସେ ନିର୍ଲୋଭ, ଉଦାର, ଆଧୁନିକ । ସେମାନଙ୍କର ଅଲିଅଲ ସୁକୁମାରୀ ଝିଅଟି ସୁଖରେ ରହିବ, ଭୋଗଭାଗ୍ୟରେ ଥିବ ।

ରମାର ମନରେ ସେହି ଆଶା ଥିଲା । ସେହି ଆଶାରେ ସେ ନିଜକୁ ଶୁଭ କି ଅଶୁଭ ପ୍ରଥମ ରାତିରେ ସୁକାନ୍ତର ପଦତଳେ ଉତ୍ସର୍ଗ କରିଥିଲା । ହାତଧରି ତଳୁ ଉଠାଇ ପାଖକୁ ଟାଣିଲାରୁ ଯେ ଘୃଣା ଆସିଥିଲା, ଦୂରେଇ ଯାଇ ନ ଥିଲା ।

ସୁକାନ୍ତର ଦୁଇଟି ସନ୍ତାନର ଜନନୀ ରମା, କାହିଁକି ଦୂରେଇ ଯାଉଛି ? ହାତ ଧରି ପାଖକୁ ଟାଣିଲେ ଦେହଟା ସ୍ୱାମୀ ଦେବତାର କ୍ଷୁଧା ମେଣ୍ଟାଇବାକୁ ଅବଶ୍ୟ ଆସିବ, ତୃତୀୟ ସନ୍ତାନର ଜନନୀ ହେବାକୁ ସେ ମନା କରିବ ନାହିଁ, କିନ୍ତୁ ମନ ଓ ସଂସାର ରମାର ଜୀବନ୍ତ ପ୍ରତିମାରୁ ବାହାରି ଦୂରେଇ ରହି ଛିଛିକାର କରୁଥିବ । ଦେଖୁଥିବ ସୁକାନ୍ତର ଅତୀତ ରୂପ । ଆରେ, ସେହି ଦେହଟା ତ, ମୂଲିଆ ପୁଅ ବଢ଼ି ଉଠିଛି, ବୟସ୍କ ହୋଇଅଛି । ଛି, ଛିଇ—

ସୁକାନ୍ତ ହାତ ଟାଣି ଆଣିଲା । ଛି, ଛିଇ, ରମା କେଡ଼େ ଅପନା ଦିଶୁଛି, ଅତି ଅସହନଶୀଳା ! ଜାଣି ଜାଣି ସେ ଏପରି ହୋଇଛି କାରଣ, ସେଦିନ ଓ କେତେଦିନ ଯାଏ ନିଜ ରୂପରେ ଆଗକୁ ଆସୁଥିଲେ, ହସ ହସ ସୁବର୍ଣ୍ଣ ପ୍ରତିମା ।

ବାହାଘର ପରିବାର କେତେଦିନ ପରେ ଭାଇ ଓ ଭାଉଜ ଗ୍ରାମକୁ ଫେରିଗଲେ । ଯାହା ସେଇଠି ହାବୁଡ଼ିରେ ପଡ଼ିଲା ସେମାନେ ସଙ୍ଗରେ ଗ୍ରାମକୁ ନିବାକୁ ଉଦ୍ୟମ କୁଣ୍ଠିତ ହେଲେ ନାହିଁ, ଲଜ୍ଜିତ ହେଲେ ନାହିଁ । ସେମାନେ ଘରକାମ, ବାଲବାଡ଼ିର ଯତ୍ନ ଓ ଗାଈଗୋରୁଙ୍କର ସେବା ଛାଡ଼ି ସୁକାନ୍ତକୁ ବାହା କରାଇବାକୁ କଟକ ଆସିଥିଲେ । ଜୋଠିଆ ପିଲା ଜମା ସବୁ ଯତ୍ନରେ ଦେଇ ଆସିଥିଲେ । ଗାଉଁଲି ବଣିଙ୍କ ସଙ୍ଗେ ଯେପରି ଅନ୍ତରଙ୍ଗ ସମ୍ପର୍କ, ଘରବାସୀ

ଜାଗ ହେବଣି । କଟକରେ ବେଶିଦିନ ବସି ରହିବା ଜବାପଦ ନୁହେଁ । ଭାଉଜ ଏହିପରି କଥା ବାରମ୍ବାର ଆନନ୍ଦ ଭାଇଙ୍କୁ ବୁଝାଇ କହୁଥିଲେ ।

ସୁକାନ୍ତର ପିତାମାତା କେବେଠୁଁ ସଂସାର ଛାଡ଼ି ଚାଲି ଗଲେଣି । ବାହାଘରର ଖବର ପାଇ ଭଉଣୀମାନେ ସାମାନ୍ୟ କେଇଟି ଟଙ୍କା ଦେବାର ପାଇଁ ମନିଅର୍ଡର କରି ପଠାଇ ଦେଇଥିଲେ । ସେମାନେ ମଣିଥିଲେ, ଏତିକରେ ତାଙ୍କର କର୍ତ୍ତବ୍ୟ ସରିଲା । ଉଲୁଗୁଣା ଦେଇ ଭାଉଜ ଏକଥା କହନ୍ତି । ସେ ଗର୍ବ କରନ୍ତି ଯେ କର୍ତ୍ତା ହୋଇ ତାଙ୍କ ଭାଇ ଯଦି କଟକ ଆସି ନ ଥାନ୍ତେ, ସୁକାନ୍ତର ବାହାଘର ହୋଇ ନ ଥାନ୍ତା, କି ରମା ଏ ଘରର ବୋହୂ ହୋଇ ଆସି ନଥାନ୍ତା ।

ନୂଆ ବୋହୂ ରମା ଘରର ଘରଣୀ ହୋଇନଥାଏ । ସିଏ ଯାହା କହେ, ସବୁ ସେ ମନ ଦେଇ ଶୁଣେ । ସୁକାନ୍ତର ଅତୀତ ଜୀବନ ସମ୍ବନ୍ଧରେ ଭାଉଜଙ୍କୁ ଯେତିକି ଜଣା ସବୁ ସେ ରମା ଆଗରେ ବର୍ଣ୍ଣନା କରିଥିଲେ ।

ଆଲୋ ଭଉଣୀ, ମଣିଷ ବଡ଼ ନୁହେଁ, ତା କପାଳ ବଡ଼ । କିଏ ଜାଣି-ଥିଲା ମୂଲିଆ ପୁଅ, ମୂଲିଆ ମୁଣ୍ଡ ସୁକା, ପୁଣି ପାଠଶାଠ ପଢ଼ି ମଣିଷ ହେବ ? ଏତେ ବଡ଼ ହାକିମ ହେବ ? ଗୋରୁଗାଈ ନ ଚରାଇ ମଣିଷ ଚରାଇବ ? କିଏ ଜାଣିଥିଲା ସେ ପୁଣି ତୋ ପରିକା ଲକ୍ଷ୍ମୀ ସରସ୍ୱତୀ ଝିଅର ହାତ ଧରିବ ? ହେଲେ, ଯେଉଁ ଗରିବ ଭାଉଜଙ୍କ କୋଳରେ ସେ ବଢ଼ିଛି, ସେମାନଙ୍କୁ ଆଉ ଆଖିରେ ଅନାଏ ନାହିଁ । ତୁ ସେପରି ହେବୁ ନାହିଁ ଲୋ ଭଉଣୀ, ଉଣ୍ଡରେ ଅହା ପଦ ରଖିଥିବୁ । ଠାକୁରେ ଦବୁଦନେ କାହାର ବଡ଼ ପଣ, ସାନ ପଣ ରହନ୍ତି ନାହିଁ ।

ଭାଉଜଙ୍କ କଥା କେତେ ବର୍ଷ ଯାଏ ରମାର ମନରେ ଖଞ୍ଜି ପଡ଼ିଥିଲା । କେବେ ସେ ଭରସିକରି ସୁକାନ୍ତକୁ କହି ନଥିଲା କି ପଚାରି ନଥିଲା । ନୂଆ ଜୀବନର ଆନନ୍ଦ ଓ ଉତ୍ତେଜନାରେ ଆଖି ପିଛୁଳା ପଡ଼ିଲା ପରି ସମସ୍ତ କଟିଗଲା । ଇଞ୍ଜିନିୟରର କାମ । ଯାହା କହନ୍ତି, ହାଣ୍ଡିରେ କା । ପଡେ

ନାହିଁ । ଛଅମାସରୁ ବର୍ଷକ ଭିତରେ ବଦଳି ହୁଏ । ନୂଆ ସ୍ଥାନରେ ବନ୍ଧା-କାନଷ ସବୁ ଖୋଲି ସାରିବା ଆଗରୁ ବଦଳି ଆଦେଶ ଆସେ । ପୁଣି ବନ୍ଧାବନ୍ଧ ଲାଗେ ।

କେତେ ଅଫିସର୍ ବଦଳି ଆଦେଶ ପାଇଲେ ମୁହଁ ଶୁଖାନ୍ତି । ବଡ଼ ହାକିମଙ୍କ ପାଖରେ ବାରମ୍ବାର କହନ୍ତି । ପ୍ରତିବାଦ କରି ଅଡି ବସନ୍ତି । ସୁବାନ୍ତୁ ମେନନ୍ କେବେ କରି ନାହିଁ । କରିବାର ଦେଖା ହୋଇ ନାହିଁ । ମାମୁ ମାଈ ଦଇ ପ୍ରାଣୀ । ବଡ ପୁଅ ଜନ୍ମ ହେଲା ପରେ, ଗ୍ରହରେ ଜାକ ଧରିଲା ପରି ଛୁଆ ହେଲେନି ତ । ଚଳିବାକୁ ଯେତିକି ଦରକାର ଲୋଡ଼ା ତାହୁଁ ଅଧିକ ସେ ରଖି ନାହିଁ । ଠାକୁରଙ୍କ ଦୟାରୁ ଦେହପା କୁଶଳରେ ଅଛୁ । ବଦଳିକୁ ଡର ନାହିଁକି ? ଖୁସାମଦ କାହିଁକି ?

କାମ କରିବାକୁ ସ୍ୱୀକାର । ଯହିଁ ଗଲେ ସେଠି କାମ । ସବୁଠି ମଣିଷ ଅଛନ୍ତି । ସୁଖ ଦୁଃଖର ସଂସାର କରୁଛନ୍ତି । ପରକୁ ଆପଣାର କରି ଜାଣିଲେ ଯେଉଁଠିକି ଗଲେ ସେଠି ଦେଖିବ ଭାଇ, ବନ୍ଧୁ, କୁଟୁମ୍ବ । ଯେତେ ଲୋଡ଼ିବ ସେତେ ଅଛନ୍ତି । ସ୍ନେହ ସମ୍ମାନ ଓ ସହାନୁଭୂତି ମଣିଷ ମନରେ ଅସରନ୍ତି ଭଣ୍ଡାର ପରି ଭରି ରହିଛି । ଯେତେ ବାଣ୍ଟିଲେ ସରେ ନାହିଁ, ମନର ଭଣ୍ଡାର ଊଣା ହୁଏନାହିଁ । ପରକୁ ଆପଣାର କରେ ।

ଆଗରେ ଅସୀମ ସାଗର, ଜହ୍ନ ଆଲୁଅରେ ଚକ୍‌ଚକ୍ ଦିଶୁଛି । ଗର୍ଜି ଗର୍ଜି ଆସୁଛି ଢେଉ ଉପରେ ଢେଉ । କୂଳରେ ଜସ୍ତଡ଼ ହୋଇ ପଡ଼ୁଛି । ମାଡ଼ି ଆସୁଛି, ଫେରି ଯାଉଛି ।

ବେଶି ବେଳ ହୋଇନାହିଁ ରମା, ସାତଟା ବାଜିବ । ଶୀତଳ ପବନ । ଚାଲି ଚାଲି କ୍ଲାନ୍ତ ହୋଇ ପଡ଼ିଛ । ଆସ ଏଇ ବାଲିକୁଦ ଉପରେ ବସିବା । ଗୋପାଳପୁରର ସମୁଦ୍ର କୂଳକୁ ମୁଁ ପସନ୍ଦ କରେ । ଲୋକ ଭିଡ଼ ନାହିଁ । ନବେଳାରେ ବସି ସମୁଦ୍ରକୁ ଚାହିଁ ରହିବାକୁ ଖୁସି ଲାଗେ । ଆମର ବଙ୍ଗଳା ବେଶି ଦୂର ନୁହେଁ । 'ଏଇଠିକୁ ଆସିବାକୁ ମୁଁ ଚପରାସୀକୁ କହିଛି ।

ସୁକାନ୍ତ ଶୀତଳ ବାଲି ଉପରେ ବସିଲା । ମନରେ ଆନନ୍ଦ । ଢଙ୍ଗରେ ଫୁର୍ତ୍ତି । ନବ ପରିଣୀତା ପତ୍ନୀ ସଙ୍ଗରେ ଅଛି । କାଲିପରି ଲାଗୁଛି ତା ବାହାଘର । ଦେଖୁ ଦେଖୁ ଛଅମାସ କଟି ଗଲାଣି । ଏ ମଧ୍ୟରେ ସେ ବ୍ରହ୍ମପୁର ବଦଳି ହୋଇ ଆସିଲାଣି । ଯୁଆଡ଼େ ବଦଳି ହେଲେ ଚିନ୍ତା ନାହିଁ । ରମା ପାଖରେ ଥିଲେ ତା'ର କୌଣସି ଦୁଃଖ ନାହିଁ । ରମା ତା'ର ଘରଣୀ, ବାନ୍ଧବୀ, ବନ୍ଧନୀ । ରମା ତା'ର ପ୍ରେରଣା । ଗସ୍ତରେ ବାହାରିଲେ ସେ ସଙ୍ଗରେ ନିବାକୁ ମନ କରେ । ମୁହୂର୍ତ୍ତେ ଦୂରେଇ ରହିବାକୁ ସେ ଚାହେଁ ନାହିଁ, କିନ୍ତୁ ସବୁ ସ୍ଥାନକୁ କ୍ୟାମ୍ପ ଯାଇପାରେ ନାହିଁ, ତେଣୁ ତା'ର ମନ କାମନା ପୂର୍ଣ୍ଣ ହୋଇପାରେ ନାହିଁ ।

ବସ ରମା, ଦେଖ, କି ସୁନ୍ଦର ଦିଶୁଛି ଏ ସାଗର । ଦୂରରେ ଯେଉଁ ବଡ଼ ବଡ଼ କୋଠା ଦିଶୁଛି, ସେଗୁଡ଼ିକ ହୋଟେଲ । ବିଭିନ୍ନ ସ୍ଥାନରୁ କେତେ ଲୋକ ଜଳବାୟୁ ପରିବର୍ତ୍ତନ କରିବାକୁ ଗୋପାଳପୁର ଆସନ୍ତି । ସେମାନେ ଏଇସବୁ ହୋଟେଲରେ ରହନ୍ତି । ପ୍ରକୃତିର ଏଇ ମନୋରମ ଦୃଶ୍ୟ ଦେଖି ମୁଗ୍ଧ ହୁଅନ୍ତି, ତନ୍ମୟ ହୁଅନ୍ତି । କେତେ ଆସନ୍ତି, କେତେ ଯାଆନ୍ତି । ଏଇ ସୁଷମା ଉପଭୋଗ କରନ୍ତି । ଅପସରନ୍ତି । ମନରେ ଧାରଣାଟି ନେଇ ଫେରି ଯାଆନ୍ତି । ଯାହା ଆମେ ଦେଖୁଛୁ, ଶୁଣୁଛୁ, ଅନୁଭବ କରୁଛୁ, ସବୁତକ ଠୁଳ କରି ପେଡ଼ିରେ ରଖିପାରିବାର ଶକ୍ତି ଯଦି ଆମର ଥାଆନ୍ତା, ଆମେ କଅଣ କରନ୍ତେ ?

ରମା ପାଖରେ ବସିଲା । ସେ ଧୋବ ଫରଫର ଲୁଗା ପିନ୍ଧିଛି । ମୁଣ୍ଡରେ ସଂଯତ ନାହିଁ । ଗଳାରେ ମୋତି-ଜଡ଼ିତ ମାଳ । ମଧୁର ମହକ ଧୀର ଲହରିଆ ପବନରେ ଭାସି ଆସୁଛି । ଓଠରେ ଲାଗିରହିଛି ସ୍ମିତ । ଉଜ୍ଜ୍ୱଳ ଆଖି ଯୋଡ଼ା । ମୁହଁରେ ଭରପୂର ଆନନ୍ଦର ଉତ୍ଫୁଲ୍ଲତା । ଲକଲକର ଚପଳ ତରଙ୍ଗ ଖେଳୁଛି ଦେହରେ । ରମା ବଚନ ଶୁଣେ, ଲୋଚନ କୋଣରେ ମନର ମମତା ମୋଚନ କରେ । ମୁହଁ ଖୋଲେ ଅଳପ, ଯଦି ଆବଶ୍ୟକ ହୁଏ ।

ସୁକାନ୍ତ ରମାର କଅଁଳ ମାଂସଳ ଉଷ୍ମ ହାତଟିକି ଧରି ଟିକିଏ ଚିପିଲାଟି ପରି କହିଲା, ତମ ପାଇଁ ମୁଁ ଈଶ୍ୱର ଦେବି । ସବୁ ସୁଷମା ଏକାଠି କରି ମୁଁ ନେଇଯାଆନ୍ତି ।

କେଉଁଠି ରଖନ୍ତ ?

ତମର ଭିତରେ ।

ଗୋପାଳପୁର ଶୂନ୍ୟ ହୁଅନ୍ତା ଯେ, ମୁଁ ଏହା ଅନୁମାନ କରି ପାରୁଛି । କଳା ମିଚମିଚ ଅନ୍ଧାର ରାତି, ସ୍ୱର ଶବ୍ଦ ନାହିଁ, ଶୀତଳ ହେଉ କି ଉଷ୍ମ ହେଉ, ପବନ ନାହିଁ । ଜନମହକ କେଉଁଠି ହଜିଯାଇଛି । ଲମ୍ବି ଯାଇଛି ଆଖି ଆଗରେ ଯେଉଁ ଢେଉଢେଉକା ଚଳ୍‌ଚଳିଆ ନେଳିଆ ଦରିଆ, ଆଉ ଧୂସର ବାଲି ପନ୍ତାର, ଧଳା କୋଠା ଧାଡ଼ି, ଉପରର ନେଳି ଆକାଶ, ଭାସିଲା ମେଘ, ମିଟି ମିଟି ତାରା, ସବୁ ସେଇ ଅନ୍ଧାର ଭିତରେ ଛପି ଯାଅନ୍ତେ । କେଡ଼େ ଭୟଙ୍କର ଦିଶନ୍ତା ଏ ଥାନ !

ସୁକାନ୍ତ ଥକ୍‌କା ହୋଇ ଶୁଣିଲା । ସେ ମଧ୍ୟ ଅନୁମାନ କରି ପାରୁଛି । ନା, ଅସୀମ ଅନନ୍ତ ସନାତନ ପ୍ରକୃତିକୁ କେହି ଧରି ରଖି ପାରିବେ ନାହିଁ । ସେ ଧାରଣାତୀତ । ସେ ସମସ୍ତଙ୍କର, ସମସ୍ତେ ତା'ର । ସେ ଅତି ମନୋରମ, ଅତି ଭୟଙ୍କର । ସେ ଉଦାର, ସେ ଈର୍ଷ୍ୟୁ । ନିଜ ମଣିଷ ମନରେ ସେ ଧାରଣା ସଞ୍ଚାରେ, ସମ୍ଭବ ଓ ଅସମ୍ଭବ । ରମା ସେଇ କଥା ସୂଚାଇ ଦେଇଛି । ରମାର ଭିତରେ, ବାହାରେ ସେ ପ୍ରକୃତିର ସୁଷମାର ଉପମା ପାଇଛି । ରମା ହିଁ ପ୍ରକୃତି ।

ସେଇ ଦେହ, ସେଇ ମନ, ସେଇ ଜୀବନ । ପ୍ରକୃତି ପରି ସେ ହସେ, ଗମ୍ଭୀର ହୁଏ, ଗରଜି ଉଠେ, ଭୟଙ୍କର ଦିଶେ, ଶାନ୍ତ ହୁଏ । ବୋଲି ମାନେ, କାନ୍ଦେ । ସେ କନ୍ଦାଏ, ସେ ହସାଏ । ସେ ରୁଷ୍ଟ, ଅସଂଯତ ହୁଏ । ସେ ନିଜକୁ ସଜାଏ, ହଜାଏ, ମନ ମଜାଏ । ଆଜି ଏହି ଶୀତଳ, ହସିଲା, ଲୋଭିଲା ପ୍ରକୃତି, ତାଲେ ତାଲେ ନାଚିଲା ପ୍ରକୃତି, ସୁନ୍ଦର, ମୁଖର, ଗମ୍ଭୀର

ଓ ଉନ୍ମତ୍ତର । ଦୃଶ୍ୟର ସମାବେଶ ତାକୁ ଅଶେଷ ଉଲ୍ଲାସର ଉତ୍ସ କରିଛି । ହାତ ମୁଠାରେ ତାକୁ ସେ ଧରି ପାରିବ ନାହିଁ, କିନ୍ତୁ ତା'ର ଉପମା, ତା'ର ଅନୁକରଣ ଏଇ ରମାକୁ ସେ ଧରିବ, ନିଜର କରିବ ।

ସୁକାନ୍ତ ହାତ ବଢ଼ାଇଲା । ରମାର ହାତଟି ଧରିଲା । ପାଖକୁ ଟାଣିଲା । ରମା ପାଖେଇ ଅସୁଣୁ ଦୂରେଇ ଗଲା । ହାତର ସଂଯୋଗ ବିଚ୍ଛିନ୍ନ ହେଲା। ଛୁନ୍ ଛୁନ୍ କହିଲା, ଦେଖ, ଦୁଇ ଅଡ଼ୁ କିଏ ସବୁ ଗୁଳ ଗୁଳ ଆସୁଛନ୍ତି, କଥାବାର୍ତ୍ତା ହେଉଛନ୍ତି, ହସୁଛନ୍ତି ମ, ଆସ, ଫେରିଯିବା ବସାକୁ ।

ରମା ଅଗେଇ ଯାଉଛି ।

ମାଡ଼ି ଅସିଲା ଲହଡ଼ି ବେଳା ଭୂମିରୁ ଫେରିଯାଉଛି ପଛକୁ, ସୁକାନ୍ତର ମନର ସ୍ୱପ୍ନ ପରି ।

ରମା ଛପିଯାଉଛି ଦୂର କୋଠାର ଗୁମ୍ବ ଉହାଡ଼ରେ ।

ସୁକାନ୍ତ ଆଖି ଖୋଲିଲା ।

ବଳବଳ ଅନ୍ଧାର । ତକିଆ କଡ଼ରେ ଟର୍ଚ୍ଚ ଲାଇଟ ରଖାହୋଇଛି । ହାତ ଅଣ୍ଡାଳି ଟର୍ଚ୍ଚ ଲାଇଟ୍ ଧରିଲା । ଆଲୁଅ ଟିପିଲା । ଖଟରେ ମଶାରି ଟଙ୍ଗା ଯାଇଛି । ଉଠି ବସିଲା ।

ଗୋପାଳପୁରର ଜୋଛନାଧୁଆ ବେଳାଭୂମି ଏ ନୁହେଁ । ସେ ତ ଅତୀତର କଥା, ଦୂରର କଥା । ରମା ବି ପାଖରେ ନାହିଁ । କେତେ ଦୂରରେ ପିଲା ଦିଓଟିଙ୍କୁ ପାଖରେ ରଖି ସେ ଶୋଇଛି । ଶୋଇ ନାହିଁ ବୋଧେ, ଅଖିରୁ ଲୁହ ଗଡ଼ାଇ କାନ୍ଦୁଛି ବୋଧେ ! କହୁଛି ମନକୁ ମନ, ଯେତେ କଲେ ସେ ସନ୍ତୁଷ୍ଟ ହେଉନାହାନ୍ତି, ସବୁବେଳେ ବିରକ୍ତ, ଫୋପଡ଼ା କରଡ଼ା । ସେ ଭଲପାଉ ନାହାନ୍ତି । କାହିଁକି ? ମତେ ସେକଥା ଜଣା ଅଛି ଯେ ସେ ଅକୃତଜ୍ଞ । ମୁଁ ତାଙ୍କର ଅଲୋଡ଼ା । ମୋ'ର ମରଣ ଲୋଡ଼ା । ମୁଁ ଉଦ୍ଧାର ପାଇଯିବି ।

ସୁକାନ୍ତ ବ୍ୟାକୁଳ ହୋଇ ଉଠିଲା । ଛନଛନ ମନ ଉଚ୍ଛନ୍ନ ହୋଇ କାରୁଣ୍ୟ କଲା, ସେ ବିଚଳିତ ହେଲା । ରମା ଭୁଲେ । ଆସିଲାବେଳେ ସଙ୍ଗରେ ଦେବାକୁ କେତେ କଥା ସେ ଭୁଲିଯାଇଥିଲା । ଗ୍ଲାନଗୁଣ୍ଡାର ବଙ୍ଗଳାରେ ପହଞ୍ଚିଲା ପରେ ସେ ବୁଝିଲା । ରମାର ଅନ୍ୟମନସ୍କତାକୁ ଧିକ୍କାର କରି ସେ ବିରକ୍ତ ହୋଇଥିଲା । ତା ମନରେ ବେଖାପର ଭାବ ଓ ଅସ୍ପଷ୍ଟ ଆଭାସ ଆରୋପ କରି କେତେ ଅବାନ୍ତର ଚିନ୍ତା କରିଥିଲା । ନିଜର ସ୍ୱଭାବ ଓ ଧୈର୍ଯ୍ୟର ଅଭାବକୁ ସେ ଭୁଲିଥିଲା ।

ଟର୍ଚ୍ଚ ଲାଇଟ୍ ମିଳିଛି । କେଉଁ ଅଧସ୍ତନ ମଶାରିଟିଏ ଯୋଗାଡ଼ କରି ଦେଇଛନ୍ତି । କିଆପିଆର ଅଭାବ ହୋଇନାହିଁ । ଚଳି ଯାଉଛି । ଅନ୍ୟ ପାଖରେ ଋଣୀ ହେବାର ନ୍ୟୂନତାର ଧାରଣା ମନକୁ ଅଳସ କୋରୁଛି, କିନ୍ତୁ ଏଥିପାଇଁ ରମାକୁ ସେ ଦୋଷୀ କରିପାରିବ ନାହିଁ । ଗସ୍ତାରେ ଆସିବା ପୂର୍ବରୁ ସବୁ ସେ ନିଜେ ଯୋଗାଡ଼ କରି ଆଣିଥାଆନ୍ତା ।

ସୁକାନ୍ତ ଖଟରୁ ଓହ୍ଲାଇଲା । ଆଲୁଅ ବୁଲାଇଲା ଚାରିଆଡ଼କୁ । ସବୁ ଠିକ୍ ଅଛି । ବଙ୍ଗଳାର ପୁରୁଣା ଚାଳରୁ ସାପ ଓହ୍ଲାଇ ନାହିଁ । ଫଟା କାନ୍ଥରୁ ସାପ ମୁହଁ କାଢ଼ି ନାହିଁ । କେତେ ଦୁର୍ଘଟଣା ମନେପଡ଼ିଲା । ସେ ସବୁ ଭାଗ୍ୟର କଥା । ଲୋକେ କହନ୍ତି, ଯାହାର ଆଇସ ପୂରେ ସେ ଯାଏ । ସୁକାନ୍ତ ଇଞ୍ଜିନିୟାର, ବୈଜ୍ଞାନିକ, ଆଧୁନିକ । ଦୁର୍ଭାଗ୍ୟ କି ଦୁର୍ଯୋଗ ଆସିପାରେ, ସେଥିପାଇଁ ଭାଗ୍ୟ କି ଭଗବାନ ଦାୟୀ ହୁଅନ୍ତୁ ପଛେ ଅସାବଧାନତା ଦାୟୀ ନ ହେଉ ।

ଆର କୋଠରୀରୁ ଘୁଙ୍ଗୁଡ଼ି ଶୁଭୁଛି । ସେମାନେ ନିଶ୍ଚିନ୍ତରେ ଶୋଇଛନ୍ତି । ବାରଣ୍ଡାରେ ମଧ୍ୟ କେତେ ଲୋକ ଶୋଇଛନ୍ତି । କିଏ ଜଣେ ବକବକଉଛି । ଭୟଙ୍କର ସପନ ଦେଖୁଛି ପରି । ବାରଣ୍ଡାରେ ଆଲୁଅ ଜଳୁଛି । କ୍ଷୀଣ ଆଲୋକ ରେଖା ଝରକାର ପରଦା କଣରେ କୋଠରୀରେ ପଶୁଛି ।

ସୁକାନ୍ତ କବାଟ ଖୋଲି ପଦାକୁ ଆସିଲା । ଆଲୁଅ ଟିପିଲା । ବାରଣ୍ଡା ଉପରେ କେତେ ଶ୍ରମିକ ଶୋଇଛନ୍ତି । ବାଘ ସାପର ଭୟରେ ଛଟପଟ ହେଉ-

ନାହାନ୍ତି । ସେମାନେ ଭାଗ୍ୟବାଦୀ । ଦେବଦେବଙ୍କ ଉପରେ ବିଶ୍ୱାସ ଅଛି । ସେଥିପାଇଁ ନିଶ୍ଚିନ୍ତ ।

ନିରୀହ ମୂଳିଆ । ଛୋ'କେ ପିଇ ଦଣ୍ଡେ ଜୀଅନ୍ତି । ମୂଲ ଲଗନ୍ତି ମୁଠିଏ ଆହାର ଓ ଖଣ୍ଡିଏ କନା ପାଇଁ । ସେତିକି ନ ହେଲେ ମୂଲ ଲାଗି ପାରିବେ ନାହିଁ । ସାବଧ ନ ହେବାକୁ ସମ୍ବଳ ନାହିଁ । ଠାକୁରେ ଏକମାତ୍ର ଆଶା ଭରସା ।

ଗୁଲନ୍‌ଗୁଡ଼ା ଗାଁ ବାହାରେ ପାହାଡ଼ ଗଡ଼ାଣିରେ ଚହଣୀ ବଙ୍ଗଳା । ହତାକୁ ଲାଗି ନିବିଡ଼ ଅରଣ୍ୟ, ଲମ୍ବିଯାଇଛି ଦୂର ପାହାଡ଼ର ତଳିପାଦ ଯାଏ । ଦୂର ପାହାଡ଼କୁ ଢ'ଙ୍କି କରି ସେଠୋଟି ଦେଖାଉଛି । ଉଚ୍ଚ ବାନ୍ଧ ଝରଣାର ଜଳ ଅଟକାଇ ରଖା ହୋଇଛି । ପାହାଡ଼ ମାଳ ସେପଟେ ଦୁଇ ବର୍ଗମାଇଲ ଅରଣ୍ୟ ଭୂଇଁରେ ପାଣି ଅଟକା ରହୁଛି ।

ଝରଣା ବନ୍ଧର ଗୋଟିଏ ପାଖରେ ବାହାରିଛି ନାଳ । ତଳ ଜମିରେ ପାଣି ମାଡ଼ୁଛି । ବଳକା ଜଳ ଖଲାସ କରିବାକୁ ସେଇ ନାଳ ଖୋଲା ହୋଇଥାଏ, ସେଥିରେ ମଧ୍ୟ ପାଣି ବହୁଛି ଖଣ୍ଡେ ଦୂର ନେଇ ସେଇ ଝରଣାରେ ପାଣି ଛାଡ଼ି ଦିଆହେଉଛି ।

ବାକିଆ କାମ ଶେଷ କରିବାକୁ ସୁକାନ୍ତ ଧାଇଁ ଆସିଛି । ଅଧିକ ବର୍ଷା ହେଲେ, ଖଲାସୀ-ନାଳରେ ସବୁ ବଳକା ପାଣି ଯାଇ ନ ପାରିଲେ, ଝରଣାର ଅନିକଟ ଡେଇଁ ପାଣି ଯିବ । ବନ୍ଧ ଭାଙ୍ଗିବ । କେତେ ଖର୍ଚ୍ଚ ନଷ୍ଟ ହେବ । ଦୁର୍ନାମ ହେବ । ସବୁ ପରିଶ୍ରମ ପଣ୍ଡ ହେବ ।

ନିଶା ଗର୍ଜୁଛି । ଅରଣ୍ୟ ମଝିରୁ, କେଜାଣି କେତେ ଦୂରରୁ, ମହାବଳର ପର୍ବତ ଫଟା ହେଣ୍ଟାଳ କ୍ଷୀଣ ହୋଇ ଶୁଣାଯାଉଛି । ଝରଣା ଜଳର କଳକଳ ରବ, କାନରେ ପଡ଼ୁଛି କେତେ ଜାତି ଶବ୍ଦର ମିଶାମିଶି । ଆକାଶରେ ଘୋଟି ରହିଛି ମେଘ । ଗୋଟିଏ ସୁଦ୍ଧା ନକ୍ଷତ୍ରର ଆଭାସ ମିଳୁ ନାହିଁ । ଅତି ଭୟଙ୍କର ରଜନୀ !

ବଙ୍ଗଳାର ହତା ଭିତରେ ଓ ବାହାରେ, ପର କୁଡ଼ିଆମାନଙ୍କରେ ପ୍ରାୟ ଶହେ ମୂଲିଆ ଓ ମୂଲିଆଣୀ ପିଲାଛୁଆ ନେଇ ନିଶ୍ଚିନ୍ତରେ ଶୋଇଛନ୍ତି ।

ସୁକାନ୍ତର ମନ ଦହକହକ, ଅଧିକ ଜଳ ଆସିଲା କି ? ରାତି ଅଧରେ ଅଶନିକଟ ଭାଙ୍ଗିବ ? ଏତେ ପରିଶ୍ରମ ବୃଥା ହେବ ?

ଥରେ ଯାଇ ଜଳର ପତନ ଦେଖି ଆସିବାକୁ ମନ ହେଲା । ଅଧିସ୍ତନ-ମାନେ ସ୍ୱିଲନ୍‌ଗୁଡ଼ାକୁ ଚାଲିଯାଇଛନ୍ତି । କାନ୍ତରାତିଙ୍କ ରହଣି ସେଇଠି । ଶୋଇଲା ମୂଲିଆଙ୍କୁ ଉଠାଇବା ଉଚିତ ନୁହେଁ । ଦିନସାରା ହାଡ଼ଭଙ୍ଗା ପରିଶ୍ରମ କରିଛନ୍ତି । ସ୍ତ୍ରୀ ଓ ପିଲାଙ୍କ ସାହାଯ୍ୟରେ ମାଟି ପଥର ତାଡ଼ିଛନ୍ତି । ମୁଣ୍ଡରେ ବୋହି ବନ୍ଧରେ ପକାଇଛନ୍ତି । ସେମାନେ ଅତି କ୍ଳାନ୍ତ । ବିଶ୍ରାମ ନ ନେଲେ ରାତି ପାହିଲେ ହାତ ଗୋଡ଼ ଚାଲିବ ନାହିଁ । କାମ କରି ପାରିବେ ନାହିଁ । ନିଶ୍ଚିନ୍ତରେ ସେମାନେ ଶୋଇନ୍ତୁ । ଯାହା ହେବାର ହେବ । ବର୍ଷା ଅଳ୍ପ ନ ହେଲେ ରକ୍ଷା । ତାଆର ଦୟା । ମଣିଷର ଚାରା ନାହିଁ । କୌଣସି ଇଞ୍ଜିନିୟର ଅଟକାଇ ପାରିବେ ନାହିଁ ।

ସୁକାନ୍ତ କୋଠରୀ ଭିତରକୁ ଆସିଲା । ଚଉକି ଟିପି ପ୍ରକୋଷ୍ଠର ଗୁରଆଡ଼ ପରଖି ନେଲା । ଆପଦ ବିପଦ ନାହିଁ ବୋଲି ତା'ର ବିଶ୍ୱାସ ହେଲା । ସେ ମଶାରି ଭିତରେ ପଶି ଆଖି ବୁଜି ଶୋଇବାକୁ ଚେଷ୍ଟା କଲା ।

ମନରେ ପଶିଲା ଭାବନା । ବଡ଼ ଘରର ଅଲିଅଳି ଝିଅ ରମା, ଗୋମତୀ, ଜୟଶ୍ରୀ, ଇନ୍ଦିରା । ଅଗ ଗୋଡ଼ରେ କଣ୍ଟା ବାଜି ନାହିଁ । ନିଜପାଇଁ କୂଅରୁ ପାଣି କେତେଥର କାଢ଼ିଥିବେ କି ନାହିଁ ସନ୍ଦେହ । ସେମାନଙ୍କ ପାଇଁ ପ୍ରତି ଅନ୍ଧାରିଆ କୋଣରେ ଭୂତପ୍ରେତ ଆଁ କରି ଅନାଇଁ ବସିଛନ୍ତି । ଏକା ଗଲେ ତା'ଙ୍କୁ ଗିଳି ଦେବେ । କେଉଁଠି ହଳଦିଆ ପାଣିକୁ ଗୋଡ଼ ବଢ଼ାଇଲେ କୁମ୍ଭୀର ଟାଣି ନେବ । ପାଦରେ ଚପଲ ନ ଥିଲେ ଦାନ୍ତ କି କଙ୍କଡ଼ାବିଛା ଦଂଶିବ । ମାଟି କାଦୁଅ ଲାଗିଲେ ଗୋଡ଼ର ଅଳତା ନେସି ହୋଇଯିବ । ଖରା ତେଜରେ ମୁହଁ ମଉଳିବ । ଗମଗମ ଝାଳରେ ମୁହଁର ପାଉଡ଼ର ଆଖିର କଜଳ ବୋହି ଆସିବ । କନକ କମଳ ଆନନ ଅସନା, ମଳିନ ହେବ ।

ସୁକାନ୍ତର ମନ ମହଲରେ ଝିଲିମିଲି ହସ ।

ଝନଝନ ହୟ କାନରେ ବାଜିଯାଉଛି । ମନ କନକନ ହେଉଛି । କର୍ମ ଉପରୁ ଭାବନା ଓଟାରି ହୋଇ ଆସୁଛି । ଆଖି ଧୀରେ ଧୀରେ ବୁଜି ଯାଉଛି ।

ସେମାନେ କାମ କରୁଛନ୍ତି । ସାତ ପାଞ୍ଚ ଏକାଧାଡ଼ିରେ ଘୁଡ ଉପରେ ବସି ନୂଆ ଘୁଡର କଂଜି ପିଟୁଛନ୍ତି । ସମସ୍ୱରରେ ରହି ରହିକା ଗୀତ । ପିଟୁଣିଗୁଡ଼ିକର ସମତାଳ । ଚୁନଚୁଟିକା ମୁହଁରେ ଚନ୍ଦନ ଟୋପା ପରି ଏଠି ସେଠି ଲାଗିଛି ।

ସେମାନେ ରାସ୍ତା ଉପରେ ଗୋଡ଼ ଢାଳୁଛନ୍ତି । ଗ୍ରେଲର ଗଡ଼ୁଛି । ପାଣି ଢାଳୁଛନ୍ତି । ମୁଣ୍ଡରେ ଖୋସିଛନ୍ତି ଜାଠକାଠକା ଫୁଲ । ଗଛତଳ ଛାଇରେ ଶ୍ରାନ୍ତି ହରିବାକୁ କେତେ ଝିଅବୋହୂ ବସିଛନ୍ତି । ଲହଡ଼ିଆ ସ୍ୱର ଛୁଟାଇ ଦେଇଛନ୍ତି ।

ସେମାନେ ମାଟି ବୋହି ବନ୍ଧରେ ପକାଉଛନ୍ତି । ଚକ୍‌ଚକ୍ ଦିଶୁଛି ତେଲବୋଳା ମୁହଁଟି ମାନ । ଖୋସାରେ ଫୁଲ । ଟିକକ ଘଣ୍ଟାରେ ହସର ତୋଫାନ ଛୁଟେ । ହସରା ଥମେ । ଛୁଟେ, ଧୈର୍ଯ୍ୟ ଲୁଟେ, କର୍ତ୍ତବ୍ୟର ଅଟଳ ଅଚଳ ଭେଟି, ଆପେ କେଉଟେ ।

ସେମାନେ ଭଳଭଳକା । ଦେହରେ ସ୍ୱାସ୍ଥ୍ୟ ଓ ଶକ୍ତି ଭରପୂର । ଉଚ୍ଛଳିତ ଯୌବନ ମନ ଉଦ୍ବେଳିତ କରେ, ବେଳିତ କରେ ଭାବନା । ଆଖି ଲାଗି ରହେ ନାହିଁ, ଓଳେଇ ହୁଏ । ଭୁମି ଆସେ । ଆପେ ଆପେ ଗୋଡ଼ ଦୁଓଟି ଦେହକୁ ଟାଣିନଏ ପାଖକୁ । କେତେ କର୍ମୀ ତତ୍ପର ହୋଇ ଉଠିଲେଣି । ଉପରସ୍ଥମାନେ କାମ ଦେଖୁଛନ୍ତି । ଟିକଏ ଡେରି ହେଲେ ବିରକ୍ତ ହେବେ ।

ବେଗି ବେଗି କାମ କରରେ ଟୋକାଏ, ଧୀରେ ଧୀରେ ପାହୁଣ୍ଡ ଭୁଲିଲେ କାମ ସରିବ ନାହିଁ, ଖରା ମାଡ଼ିଆସିବ ।

ଅଭ୍ୟାସ ହୋଇଛି । ଆଖି ହିଦା ମନ ହିଦା ହୋଇଛି ।

ମଣିଷ ସବୁଠି ଅଛନ୍ତି – ନର ଓ ନାରୀ, ଶିଶୁ, କିଶୋର ଓ କିଶୋରୀ, ଯୁବକ ଓ ଯୁବତୀ, ବୃଦ୍ଧ ଓ ବୃଦ୍ଧା । ସେମାନେ ଚିରକାଳର ସମ୍ବଳ । ଥିଲେ, ଅଛନ୍ତି ଓ ଥିବେ ।

ମନ ମନର ଅଜଣା ଅଦେଖା ଟଣାଓଟରା ।

ସୃଷ୍ଟିର ଉଦ୍ଭବ ବେଳୁ ଲକ୍ଷ ଲକ୍ଷ ବର୍ଷ ଧରି ଏଇ ଝରଣା ଓ ପାହାଡ଼ ... ଉଠାପଡ଼ା ଅଭିଜ୍ଞତା ଗଢ଼ା କୃଷ୍ଟି, ଜନ୍ମିଛି ପ୍ରେମ । ଯେନାଯେନର ପଲ୍ଲବିତ କୁସୁମିତ ପେଲବ ଲଢେଇ ବଢ଼ାଇ ରଖିଛି, କାହିଁ ଅସି ଯୋଡ଼ିହେଲା, ହ କଲା, ହଓଟି ଚେଳିଲା ମନ ।

ଦୁଇଟି ଦେହ ପାଖେଇ ଆସେ, ଦୂରେଇ ଯାଏ, ପାଖେଇ ଆସେ, ଦୂରେଇ ଯାଏ । ଜୀବନ ସାଗରର ଲହଡ଼ି । କିନ୍ତୁ, ଦୁଇଟି ମନକୁ ଯେନା-ଯେନର ପେଲବ ଲଢେଇ ବାନ୍ଧି ରଖିଥାଏ । ଦେହଦେହ ପର, ମନମନର ସ୍ୱୈରଣୀ ଭାବନା କେତେ କୁଆଡ଼େ ଉଡ଼ି ଉଡ଼ି ବୁଲେ, ଘୁମୁରିଲା କପୋତ ପରି, ପୁଣି ନିଜେ ନିଜେ ବାହୁଡ଼ିଆସେ ଯୋଡ଼ିହେଲା ନୀଡ଼କୁ ।

ଆଦ୍ୟ ମଗୁଶିର ।

କୃଷ୍ଣପକ୍ଷର କଳାଘୁମର ଶୀତଳ ନିଥର ନୀରବ ନିଶି ତପ୍ତପାଣି ଘାଟିଉପର ନିବିଡ଼ ଅରଣ୍ୟଘେରା ବମାଳିଆ ପାହାଡ଼ମାଳକୁ ଆଚ୍ଛାଦ କରିଛି । ଆକାଶ ଛାତରେ ଲକ୍ଷ କୋଟି ଫୁଟିଲା ତାରାକୁସୁମ ଗୋଟି ଗୋଟି ହସିହସିକା ଲେଟି ପଡ଼ୁଛନ୍ତି । କେତେ ପୁଣି ଝରଡ଼ି ବିଜୁଳି ବେଗରେ ଛୁଟି, ଅଧ ଆକାଶରେ ମିଳାଇ ଯାଉଛନ୍ତି । ତପ୍ତପାଣି ବଙ୍ଗଳାର ଅଧା ଖୋଲା ଝରକା ବାଟେ ଆର ପାଖରେ ଅରଣ୍ୟର ମଥା ଉପରେ ତେନାଏଁ ଦିଶୁଛି । ସେଇ ଫାଙ୍କବାଟେ ହେମାଳିଆ ଗୋଲାପ ଫୁଲର ଗନ୍ଧ ପଶୁଛି କୋଠରୀ ଭିତରେ । ତପ୍ତପ୍ରସ୍ରବଣର ତଳକୁ ଗଡ଼ିଲା ପାଣିର କ୍ଷୀଣ ଶବଦ କାନରେ ବାଜୁଛି ।

ଟେବୁଲ ଉପରେ ଜମା ହୋଇ ରଖାହୋଇଛି କଲଟଣ ।

ପଲଙ୍କ ଉପରେ ମଶାରି ତଳେ ପାଖାପାଖି ଦୁଇଟି ମଣିଷ । ନରମିଲ ନଇଁଲ ମନ, ବୋଲକରା ମନ, ଛନ୍ଦାଛନ୍ଦ । ରେଜେଇ ତଳେ ଦୁଇଟି ଉଷୁମ ଦେହ ଲଗାଲଗି । ଗୋଲାପ ଫୁଲର ମଧୁର ମହକ ରକତ ଭେଦୁଛି, ଖେଦୁଛି ହାଡ଼ଦନର ଲହଡ଼ିଆ ପାହାଡ଼ ଚଢ଼ାର ଖେଦ, ତେଜୁଛି ମନ ମହଲରେ ପ୍ରଜ୍ୱଳିତ ଅନୁରାଗର ଆଲୁଅ ।

ଥରଥର ରମା ପଚାରିଲା, ସେମାନଙ୍କୁ ଲାଜ ମାଡ଼େ ନାହିଁ ? ଦେହ ମୁଣ୍ଡ ଫୁଙ୍ଗୁଳା କରି କପଟ ବଲବଲ କରି ମୁହଁକୁ ଅନାଇଁ ହସିହସି ନମ୍ଭାନ୍ତ ହୁଅନ୍ତି ମ ?

ସୁକାନ୍ତ କହିଲା, ପାହାଡ଼ମାଳର, ଝରଣା କୂଳର ଛନ୍ଦାଛନ୍ଦ ଅରଣ୍ୟ ତଳର କନ୍ଧ ଘରର ସରଳ ଝିଅବୋହୂ ସେମାନେ, ଲାଜ ସରମର ବିଷ ପଶି ନାହିଁ ତାଙ୍କ ମନରେ । ଦେହ ପରି ମନ ବି ତାଙ୍କର ଫୁଙ୍ଗୁଳା, କାଠକାଠିକା ଫୁଲପରି ସୁନ୍ଦର ଓ ସୁବାସ । ସେମାନେ ସଚେତନ ଏଇ ଅରଣ୍ୟ ରାଇଜର ଫୁଲଗୁଡ଼ିଏ । ସଭ୍ୟତାର ଧାସ ଧୀରେ ଧୀରେ ପଶୁଛି । ସେମାନେ ବି ଦିନେ ଆମପରି ଭଦ୍ର ହେବେ, ଆବରଣ ତଳେ ଅନଳ ଲୁଚାଇ ରଖିବେ, ହସ ଓ ଚାହାଁଣୀରେ ବିଷ ମିଶାଇବେ ।

ରମା ନୀରବ ହେଲା । ମନରେ ଆସିଲା ଅଭିମାନ । ସୁକାନ୍ତର କଥାରେ ଛପିଲା ଆକ୍ଷେପ । ରମା ପୁଣି ହସିଲା, କହିଲା, ତମର ଅରଣ୍ୟ ଅପନା ବାହନା ତମ ମନକୁ ଏପରି ଧାରଣା ଆଣିଛି । ବସନ-ବିହୀନ ଦେହକୁ ଯେପରି ତମର ଲୋଲୁପ ନୟନ ବେଷ୍ଟନ କରେ, ତାଅଁଣା କାମନା ଲେହନ କରେ, ବହନ ଆବୃତ ଦେହକୁ ତମର ଅଶୁଭ ଲୋଭ ବେଢ଼ନ କରିବାକୁ ଆଗ୍ରହୀ ହୁଏ । ମୁଁ ଜାଣେ ସେ ।

ରମା ପୁଣି କହିଲା, ଲାଜ ସରମ ଆମର ଧରମ । ସେଥିରେ ବିଷ ନ ଥାଏ । ତମରମାନଙ୍କ ଚାହାଁଣୀ ଯେ ସାପର ଫଣା । ତମେ ଦଂଶିବାକୁ ଧାଅଁ, ବିଷ ଚହଟାଇବାକୁ ଚାହଁ । ଆମର କଣୁଆଁ ଚାହାଁଣୀ ତମମାନଙ୍କୁ କେବଳ ଆମନ୍ତ୍ରଣ ଜଣାଏ ନାହିଁ, ତିରସ୍କାର କରେ, ଘଉଡ଼ି ଦିଏ । ଆମର ହସ ଖାଲି

ତମ ଅଳୁହା ଉଦ୍ଦେଶ୍ୟକୁ ଅନୁମୋଦନ କରେ ନାହିଁ, କି ଆସ ବୋଲି ଡାକ ଛୁଟେଡ଼ ନାହିଁ. ତମମାନଙ୍କୁ ଅବଜ୍ଞା କରେ, ତଡ଼େ । ତମେ ପଡ଼, ଆଣ୍ଠୁ ଗଣ୍ଠି ଛୁଟେଡ଼, ଭୂଇଁରେ ଗଡ଼, ବ୍ୟଥା ପାଇ ରଡ଼ । ଅମେ ଅହୁଣ ହସୁ ।

ସୁକାନ୍ତ ଅବାକ୍ ହୋଇ ଶୁଣିଲା । ସ୍ୱବଳା, ରମା ନିର୍ବୋଧ ନୁହେଁ, ସବୁ ସେ ଦେଖିଛି, କଳନା କରିଛି ମଣିଷ ମନର ଦୁର୍ବଳତା ।

ଚଇତ ମାସ, ବଡ଼ ସକାଳ ।

ଋଷିକୁଲ୍ୟା ନଦୀକୂଳର ତରତାରିଣୀ ପାହାଡ଼ । ଗୁଳ୍ମ ଆଚ୍ଛାଦିତ ପାହାଡ଼ ଉପରେ ଦେବୀଙ୍କର ଶ୍ରେଷ୍ଠ ମନ୍ଦିର । ମନ୍ଦିର ପାଖରେ କେତେଗୁଡ଼ିଏ ବଡ଼ ବଡ଼ ଗଛ ଅଛି । ନଦୀକୂଳରୁ ଦୂରରୁ ଦେଖାଯାଉଛି । କେଉଁ ଉଦାର ବ୍ୟକ୍ତି ପାହାଡ଼ ତଳୁ ପାହାଡ଼ ଉପର ମନ୍ଦିର ଯାଏ ପାହାଚ କରାଇ ଦେଇଛନ୍ତି, ତଥାପି ଉପରକୁ ଚଢ଼ି ଦେବୀ ଦର୍ଶନ କରି ଓହ୍ଲାଇ ଆସିଲେ ଗୋଡ଼ ଥକିଯାଏ ।

ପବିତ୍ର ସ୍ଥାନ ।

ପାଖରେ ପ୍ରବାହିତ ପୁଣ୍ୟତୋୟା ଋଷ୍ୟଶୃଙ୍ଗ-ନନ୍ଦିନୀ ଋଷିକୁଲ୍ୟା । ସେ ମଧ୍ୟ ତୀର୍ଥ-ସ୍ଥଳ । ଅତି ଆଗ୍ରହରେ ରମା ଆସିଛି, ଦେବୀଙ୍କର ଦର୍ଶନ କରିବ । ସଙ୍ଗରେ ବୟସ୍କା ଦାସୀଟିଏ ମଧ୍ୟ ଆସିଛି, ନଦୀ ଭିତରେ ଧୀରେ ଧୀରେ ପ୍ରବାହିତ ଜଳକୂଳରେ ଶାଢ଼ୀ ଧରି ଅପେକ୍ଷା କରୁଛି । କେତେ ଅପରିଚିତ ସ୍ତ୍ରୀ ବୋହୂ, ଶିଶୁ ଓ ପୁରୁଷ ଆଣ୍ଠୁଏ ପାଣିରେ ସ୍ନାନ କରୁଛନ୍ତି । ଦେହ ଓ ମନ ପବିତ୍ର କରି ଦେବୀଙ୍କର ଦର୍ଶନ କରିବାକୁ ଯିବେ ।

ନଦୀ-ଖଣ୍ଡି ଉପରେ ଅପରିଚିତ କେତେ ଭଦ୍ରଲୋକ ଅପେକ୍ଷା କରି ରହିଛନ୍ତି । କଣେଇଁ ଚାହୁଁଛନ୍ତି ପୁଣ୍ୟତୋୟାକୁ ।

ଡେରି ହେଲେ ଖରା ମାଡ଼ିଆସିବ । ପାହାଡ଼ ଉପରୁ ଓହ୍ଲେଇବାକୁ କଷ୍ଟ ହେବ ।

ବ୍ରହ୍ମପୁର ବସାକୁ ଫେରିବାକୁ ତେଶହେଲ । ଅନଭ୍ୟସ୍ତ ରମା ଅଧିକ କ୍ଳାନ୍ତ ହୋଇପଡ଼ିଥିଲ । ତଥାପି, ମନରେ ଆନନ୍ଦ ଓ ଫୂର୍ତ୍ତି । ହେଲେ କ ସେ ହିମାଳୟ୍ କେମିଁ ଫେରିଆସିଛୁ ।

ଭଞ୍ଜନଗରର ବାସ୍ତଦେବୀ ମନ୍ଦିରକୁ ସେ ଦିନେ ଦୂରରୁ ଅନାଇ ଗାର୍ଟଶ୍ୱାସ ଛାଡ଼ିଥିଲ । କୁଲାଡ଼ ଦୁର୍ଗର ଭଗ୍ନାବଶେଷ ଦେଖି ସେ ମୁଗ୍ଧ ହୋଇଥିଲ । ବ୍ୟାଘ୍ରଦେବୀଙ୍କ ଦର୍ଶନ କରିଥିଲ । ପାହାଡ଼ମାଳାର ନିବିଡ଼ ଅରଣ୍ୟର ସବୁଜିମା ଦେଖି ଅଭିଭୂତ ହୋଇଥିଲ । ମନୋରମ । ପାଖ ପର୍ବତରେ, ମଥାନ ଚଳକୁ, ନିବିଡ଼ ଅରଣ୍ୟଘେରା ଜନ୍ମର ଆଡ଼କୁ ମୁଗ୍ଧ ଚକ୍ଷୁରେ ଚାହିଁ ହାତ ଯୋଡ଼ି ନମସ୍କାର କଲ ।

ସେଇଠି ରମା, ସେଇଠି, ମହାକବି ଉପେନ୍ଦ୍ର ସାହିତ୍ୟସାଧକ ମନ୍ତ୍ରସିଦ୍ଧ ହୋଇଥିଲେ । ଦେଖିବାକୁ ଆଗ୍ରହ ହେଉଛି କି ?

ଆଗ୍ରହ ହେଉଛି ତ, କିନ୍ତୁ ପାହାଡ଼ ଉପରକୁ ଉଠି ହେବ ନାହିଁ । ଗଛ, ଲତା, କଣ୍ଟା, ପଥର, ଉଞ୍ଚ ଉଠାଣି ଦେଖି ସାହସ ହେଉ ନାହିଁ । ଏଇଠି ନମସ୍କାର କରୁଛି । ବୃଗୁଡ଼ା ଗ୍ରାମ ପାଖର ବୃକ୍ଷଖୋଲ ଦେଖାଇବାକୁ ନେଇ ମତେ ଯେଉଁ ହଇରାଣ କରିଥିଲ—

ଅନୁତାପ କରୁଛ ?

ନାହିଁ ମ, କଷ୍ଟ ନ କଲେ କୃଷ୍ଣ ମିଳନ୍ତି ନାହିଁ । ଗତ ଘଟଣା ମନେପଡ଼ିଲେ ଖୁସି ଲଗେ । ପରିଶ୍ରମ, କଷ୍ଟ, କ୍ଳାନ୍ତି, ଅପଦ ବିପଦ, ଭୟ, ସବୁ ମିଶି ମନରେ ଗର୍ବ ଓ ଆନନ୍ଦ ପରିବେଷଣରେ ଆଣେ । ତମେ ମୋ'ର ହାତ ଧରି ନେଉଥିଲ ତ ।

ଧୀରେ ଧୀରେ ପାଦ ଚପି ଚପି ଅସ ରମା, ଉଞ୍ଚ ପଥର । ତାହାଙ୍କୁ ଚାହିଁ, ସେଇ ଶ୍ରେଷ୍ଠ ଜଳପ୍ରପାତଟିକୁ । ତଳେ ବସି ଗାଧୋଇବାକୁ ମନ ହେଉଛି କି ? ନା, ଅବେଳ ହେଲଣି । ସୂର୍ଯ୍ୟ ମୁଣ୍ଡ ଉପରୁ ତଳକୁ ଖସିଲେଣି । ଗଛ ଗହଳ ବୋଲି ଜାଣିପାରୁନାହିଁ । ବୃଗୁଡ଼ା ବଙ୍ଗଳା କେତେ ଦୂରରେ

ରହିଲାଣି । ବିରଞ୍ଚିନାରାୟଣଙ୍କର ଦେଉଳ ତିଆରିହେଲା ପରେ । ଦେଖାଯାଉ ନାହିଁ । କହନ୍ତି, କୋଣାର୍କ ଦେଉଳ ଅପ୍ରତିଷ୍ଠା ରହିଲା ବୋଲି ସୂର୍ଯ୍ୟମୂର୍ତ୍ତିଙ୍କୁ ଆଣି ଏଇ ବୁଗୁଡ଼ାରେ ରଖିଥିଲେ । ସେଇ ସେ ବିରଞ୍ଚିନାରାୟଣ, ଦେଖିଲ ତ ?

ଦେଖିଲି, ତଷ୍ଟୁ ପ୍ରତିଷ୍ଠା କଲି । ଏହାର ନାମ ବୁଦ୍ଧଖୋଲ କାହିଁକି ହୋଇଛି ? ଏଇ ଅନ୍ଧାରିଆ ଗହ୍ୱର-ସୁଡ଼ଙ୍ଗ କେତେଦୂର ଯାଇଛି ? ବାଘ, ଭାଲୁ, ସାପ ଏହା ଭିତରେ ବସା କରିଥିବେ ତ ।

ଅସମ୍ଭବ ନୁହେଁ ରମା, ଫେରିଗଲି । ଖଣ୍ଡଗିରି ଧଉଳିଗିରିର ଗୁମ୍ଫାସବୁ ପରି ଏ ଗୁମ୍ଫା ନୁହେଁ, ପଥର ଦେହରେ ଖୋଳା ହୋଇନାହିଁ । ଆପେ ଆପେ ହୋଇଛି । ଲୋକେ କହନ୍ତି, ବୌଦ୍ଧସନ୍ନ୍ୟାସୀମାନେ ପୂର୍ବକାଳରେ ଏହି ନିର୍ଜନ ସ୍ଥାନରେ ବାସ କରୁଥିଲେ ।

ଏହାକୁ ଦେଖି ଗଞ୍ଜାମ ଗ୍ରାମର ଭଙ୍ଗା ନହରର ସୁଡ଼ଙ୍ଗ ମନେପଡ଼ୁଛି କି ରମା ?

ଓଃ, କି ଅନ୍ଧାର ! ଦୁଇ ଦୁଇଟା ଟର୍ଚ୍ଚ ଆଲୁଅ ଦେଇ ଦପଦପରେ ଜାଳିଲେ ବି ଡର ଲାଗୁଛି । କିଏ କାହିଁକି ଏ ସୁଡଙ୍ଗ ଖୋଳାଇଥିଲେ ? କେତେଦୂର ଯାଇଛି ?

ଗଞ୍ଜାମର ରାଜନହର ଭିତରୁ କୁଳକାମିନୀମାନେ ଏହି ସୁଡ଼ଙ୍ଗ ବାଟେ ଋଷିକୁଲ୍ୟା ନଦୀକୁ ସ୍ନାନ କରିବାକୁ ଯାଉଥିଲେ । ରାଜପ୍ରାସାଦ ଉପରେ ଶତ୍ରୁ ଆକ୍ରମଣ କଲେ, ବିଜୟର ସମ୍ଭାବନା ନଥିଲେ, ଏଇ ଗୁପ୍ତ-ସୁଡ଼ଙ୍ଗ ପଥରେ ଅନ୍ତଃପୁରବାସୀ ଋଷିକୁଲ୍ୟାକୁ ଆସି, ସେଠାରୁ ଡୋଙ୍ଗାମାନଙ୍କରେ ଅନ୍ୟତ୍ର ପଳାଇ ଯାଉଥିଲେ । ସବୁ ଭାଙ୍ଗିରୁଜି ଏବେ ଶ୍ମଶାନ ହୋଇଛି । ବିରାଟ ଗଞ୍ଜାମ ନଗର ତ ଦୈବୀ ଦୁର୍ବିପାକରୁ ଧ୍ୱଂସ ହେଲା । ଏବକାର ଗଞ୍ଜାମ ଗ୍ରାମଟି ସେହି ବିଖ୍ୟାତ ନଗରର ଅଂଶ ?

କି ସୁନ୍ଦର ଏଇ ବୁଦ୍ଧଖୋଲର ଝରଣାଟି ମ, ସନ୍ନ୍ୟାସୀମାନେ ଏଇ ଝରଣାରୁ ପାଣି ପିଉଥିବେ ।

ରମା ମୁଣ୍ଡରେ ପାଣି ଛୁଟିଲା ।

ଖଣ୍ଡିକୋଟର ନିର୍ମଳନୀର ନୀଳ ଢେଉରେ ସୁନ୍ଦର । ପାହାଡ଼ ଭିତରୁ ବାହାରିଛି, ମନ୍ଦିରପାଖ ଅଗଣା ଭିତର ପକ୍କା କୁଣ୍ଡଟିକୁ ପୂର୍ଣ୍ଣକରି ନାଳବାଟେ ଝରଣା ସେପାଖକୁ ବହିଯାଉଛି । ମତେ ଭାରି ଭଲ ଲାଗେ । ସେ ସ୍ଥାନ ଛାଡ଼ି ଚାଲି ଆସିବାକୁ ମନ ହୁଏନାହିଁ ।

ମନ୍ଦିରର କାନ୍ଥ ଓ ସ୍ତମ୍ଭଗୁଡ଼ିକରେ ଯେଉଁ ଅଶ୍ଳୀଳ ମୂର୍ତ୍ତିଗୁଡ଼ିକ ଖୋଦିତ ହୋଇଛି, ସେଗୁଡ଼ିକ ଦେଖିବାକୁ ମନ ହୁଏ କି ରମା ?

ନିର୍ଲଜ୍ଜ ! ତମେ ଖାଲି ସେଇଆ ଦେଖୁଥାଅ ଭୁଲି ଭୁଲିକା ? ତମ ମନ ଅଡ଼ି ଅଛନା ।

ମୁଁ କଳା ଦେଖୁଥାଏ । କୋଣାର୍କ ମନ୍ଦିର, ଜଗନ୍ନାଥ ମନ୍ଦିର, ଭୁବନେଶ୍ୱରର ଚୋରଣୀ ମନ୍ଦିର, ସବୁଠି ଅଛି ସେ ଅଦ୍ଭୁତ କଳ୍ପନା, ସେ ଯୁଗର କଳା ।

ତାରତାରିଣୀ ମନ୍ଦିର ପାଖ ଋଷିକୁଲ୍ୟା କୂଳରେ ଠିଆହୋଇ ସ୍ନାନରତା କୁଳକାମିନୀଙ୍କ ଆଡ଼କୁ ନିର୍ଲଜ୍ଜ ଆଖିରେ କେମିତି ଚାହୁଁଥିଲ କାହିଁକି ? କେଉଁ କଳା, କି ଧଳା ଦେଖୁଥିଲ ମ ?

ତମର ଅସାବଧାନତାକୁ ଅନ୍ୟମାନେ ଲକ୍ଷ୍ୟ କରୁଥିବାର ଦେଖି ମୋର ଦୃଷ୍ଟିରେ ତମକୁ ଆବୃତ କରୁଥିଲି ।

ତମର ସଲଜ୍ଜ ମୁହଁ ମୁଁ ଦେଖିଛି, କିନ୍ତୁ ଦୃଷ୍ଟି ଦେଖି ନାହିଁ । ସେ ଦୃଷ୍ଟି ଅନ୍ୟ କେଉଁଠି କଅଣ ଖୋଜୁଥିଲା । ଅନ୍ୟମାନଙ୍କର ବାଙ୍କିଲା ମୁହଁର ଚେରଚ୍ଛା ଗ୍ରାସିଲା ଦୃଷ୍ଟି ମୁଁ ଦେଖିଛି । ସେ ଦୃଷ୍ଟି ଯେପରି ଅନୁନୟ କରି କହୁଛି, ଅନ୍ତତଃ ଟିକିଏ ଅସାବଧାନ ହୁଅ । ସମସ୍ତେ ତମେ ବେହିଆ । ତମେ ଯାହା ଅନ୍ୟ ପାଖରୁ ଆଶା କର, ନିଜେ ସେତିକି ହେବାକୁ ଚାହଁ ନାହିଁ, ଛିଇ ।

ରମା କଣ୍ଠ ବୁଜିଲେ ।

ଗୋଲପର ଗନ୍ଧ ନାକରେ ବାଜୁଛୁ । ଝରକାବ'ଟେ ତପ୍ତପାଣି ପାଡି-ଉପର ବଙ୍ଗଲାର କୋଠରୀ ଭିତରକୁ ଅଧିରୀ ହେମାଳ ପଶି ଅସୁଛୁ । ସୁକାନ୍ତ ଅଭିମାନିନୀ ରମାର ଦେହରେ ହାତ ପକାଇଲ ।

ସେ ନାହିଁ । ହାତକୁ ଲଗୁ ନାହିଁ । ରେଜେଇ ଭିତରୁ ପଦାକୁ ବାହାରଗଲଣି ।

କଇଁକଇଁ ଶୁଭୁଛି । କାନ୍ଦୁଛି ସଗ୍ର ! ମଶାର ବାହାରେ ଠିଆ ହେଲଣି । କୋହ ଉଠୁଛି ।

ତମେ ମତେ ଭଲପାଅ ନାହିଁ । ତମର ପିଲା ଦୁଇଟିଙ୍କୁ ତମେ ରଖ । ତାଙ୍କ କଥା ତମକୁ ଲଗିଲ । ମୁଁ ଯାଉଛି । ଯେତେ ଯାହା କଲେ ମୋ କାମ ତମ ମନକୁ ଆସୁନାହିଁ । ମୋ ରୂପ, ଢଙ୍ଗ, ବେଶ, କଥା, ସବୁଥିରେ ତମର ନାକଟେକା ।

ଦୁଇଟି ପିଲାର ମା ମୁଁ । ତାଙ୍କୁ ଗଢ଼ି, ରଜତ ଦେଇ ବଢ଼ାଇଲ । ତାଙ୍କର କଙ୍କାଳରେ ନିଜକୁ ଭୁଲିଲି । ତମର ପିଲା ସେମାନେ, ଯାହାଙ୍କୁ ତମେ ଗଳାମାଳ କରିଥାଅ । ତାଙ୍କ ଦେହରେ ମଇଳା ଟିକେ ଦେଖିଲେ, ତାଙ୍କ ନାକରୁ ପାଣି ଟିକେ ଗଡ଼ିଲେ, ତମେ ମତେ ହିଙ୍ଗାସ ।

ତମର ସ୍ନେହ ଓ ପ୍ରେମର ପ୍ରତିମା ଦୁଇଟି । ତମର ଆନନ୍ଦ ପାଇଁ ତାଙ୍କର ମୁଁ ସହି ନିଏ । ତାଙ୍କର ସେବା କରି ତମ ସେବାର ତୃପ୍ତି ଲଭେ । ତାଙ୍କର ଭିତରେ ତମକୁ ଦେଖେ । ତମ ଭିତରେ ସେମାନଙ୍କୁ ଉପଲବ୍ଧି କରେ । ତମର ପାଇଁ ତମକୁ ମୁଁ ଭୁଲେ । ତମେ ମତେ କ୍ଷମା କଲ ନାହିଁ । ମୁଁ ତମର ଅଲୋଡ଼ା ।

କବାଟ ଖୋଲି ରମା ଗ୍ଭଲିଯାଉଛି ।

ପାଗଳ ହେଲ କି ରମା ? ତମର ପାଇଁ ମୁଁ ତମକୁ ଶାସନ କରେ । ରହ, ଶୁଣ — ।

ସୁକାନ୍ତ ବିଚଳିତ ହୋଇଉଠିଲ ।

ଆଖି ଖୋଲିଲା ।

ଅନ୍ଧାର ଘୋଟି ରହିଛି । ଝିପି ଝିପି ବରଷାର ଶବଦ ଶୁଭୁଛି । ଉଠି ବସିଲା । ଅଲୁଅ ଜାଳିଲା । କବାଟ ଖୋଲି ପଦାକୁ ଆସିଲା ।

ଦୂର ଆକାଶ କୋଣରେ, ପାହାଡ଼ମାଳର ମଥାନରେ ପାତଳ ବାଦଲଘେରା ଅରଣ୍ୟର ମଥା ଉପରେ, ଅତି କ୍ଷୀଣ ଅସ୍ପଷ୍ଟ ଆଲୋକର ଆଭା । ରାତି ପାହି ଆସୁଛି ।

କର୍ମୀମାନେ ଏବେ ବି ନିଶ୍ଚିନ୍ତରେ ଶୋଇଛନ୍ତି । ସେମାନେ ଭାଗ୍ୟବାନ୍ । ଏକା ସେ ହତଭାଗ୍ୟ ।

ରମା ନାହିଁ । ତା' ପ୍ରତି ସେ ବୃଥାରେ କଠୋର ହୋଇଥିଲା ।

ରମା କାନ୍ଦୁଛି ।

ସୁକାନ୍ତର ମନ ବାହୁନି ଉଠିଲା । ରମାର ଲୁହଝରା ମୁହଁ, ଫୁରୁଫୁରୁ ଅଳିଆ କେଶ, ଅସଯତ୍ତ ବେଶ ଆଖିରେ ଭାସିଲା । ମନ ହେଲା, ସେ ଧାଇଁଯିବ । ହସି ହସି ସେଇ ଶୁଖିଲା ମୁହଁରେ ଖେଳ କରିବ । ଫୁରୁଫୁରୁ କେଶକୁ ଆଙ୍ଗୁଠିରେ ସଜାଡ଼ି କହିବ, ତମ ସଙ୍ଗେ ଖୁସି ଝଲବ ଲଗାଇବାକୁ ମତେ ଭଲ ଲାଗେ । ତମେ ବି ସେଇଆ କର । ତମକୁ ମୁଁ ସବୁ ରୂପରେ ଦେଖିବାକୁ ଚାହେଁ । ବୁଝି ପାରୁନ ?

ବୁଲନ୍‌ଗୁଡ଼ା ନାଲର ପାଣି ବାହୁନି ଉଠୁଛି, କର୍ତ୍ତବ୍ୟ ଡାକ ଶୁଭୁଛି ।

ଜଳ ନିଷ୍କାସନୀ ନାଲର କାମ ଶେଷ ହୋଇଛି । ଜଳଅଟକା ଅସ୍ଥାୟୀ-ବନ୍ଧ ଖୋଲା ହୋଇଛି । ଅନିକଟର ଦୁଇଟି ଫାଙ୍କାରରେ କବାଟ ଅଧା ବନ୍ଦ କରାଯାଇଛି । ଡାହାଣ ପାଖ ବଡ଼ ନାଲର ସ୍ଲୁସ୍ କବାଟ ଖୋଲାଯାଇଛି । ଅବାଧ ଗିରିନିର୍ଝରଣୀକୁ ଆୟତ୍ତ କରାହୋଇଛି । ସେ ପୋଷା ମାନୁଛି, ତଥାପି ଗର୍ଜୁଛି । ଛଟପଟ ହେଉଛି । ଖଲ୍ଲୀ-ନାଲର ସିଲ୍-ବନ୍ଧ ଡେଇଁ ଆରପାଖେ କଟ୍ଟାଡ଼ ହୋଇ ପଡ଼ୁଛି ସେଇଠୁ, ସୁଧାର ହୋଇ ଦୁଇ କୂଳମାଡ଼ି କଳକଳ ହୋଇ ବହିଯାଉଛି, ଅଧମାଇଲ ପରେ ପୁଣି ପୁରୁଣା ଝରଣାରେ ମିଶିଯାଉଛି ପଥୁରିଆ

ଝରଣାର ଦେହ ପୁରୁଣା ଅଗଣା ଶଯ୍ୟାରେ ଗଡ଼ାଗଡ଼ି ବହିଯାଉଛି ତଳକୁ । ପୁଣି ତାର ଅବାଧ ଗତି, ମନଫୁଲା କଳକଳ ଗୀତ, ଫେନିଳ ହସ, କନ୍ଦୁ ଦେଉଛି ଶୀର୍ଷ ।

ସୁକାନ୍ତ ତନ୍ମୟ ହୋଇ ଦୃଷ୍ଟିରହିଲା । ପାଖରେ କେତେ ସହକର୍ମୀ ଠିଆ ହୋଇଛନ୍ତି । ସେମାନେ ମଧ୍ୟ ଝରଣାକୁ ଅନାଇଁ ରହିଛନ୍ତି । ସେମାନଙ୍କର ମନ ଦେଖୁଛି ଏହି ଯୁବକ ଇଞ୍ଜିନିୟାରକୁ । କପରି ଲୋକ ସେ ? ତାଙ୍କୁ କଅଣ ଶୋକଶୋଷ ହୁଏ ନାହିଁ ? ସକାଳୁ ଆସି କର୍ମକ୍ଷେତ୍ରରେ ଉଭା !

ସେ ସେନାପତି । କାର୍ପେଣ୍ଟର ଓ ଅନ୍ୟାନ୍ୟ ସହକର୍ମୀମାନେ ତାଙ୍କର ଲେଫଟନାଣ୍ଟ । ଶ୍ରମିକମାନେ ତାଙ୍କର ସୈନ୍ୟ—ପୁରୁଷ, ନାରୀ ଓ ଶିଶୁ । କୋଡ଼ି, କାଙ୍କି, ଶାବଳ, ଟୋକେଇ, ଗାଣ୍ଡୁଆ ତାଙ୍କର ବନ୍ଧୁକ, କମାଣ ଓ ସଂଗ୍ରାମର ଉପକରଣ ।

ପ୍ରକୃତିର ଏହି ଅବାଧ ଝରଣାକୁ ସେ ଜୟ କରିଛନ୍ତି, ପୋଷା ମନାଇ-ଛନ୍ତି । ମଣିଷର ମଙ୍ଗଳ ପାଇଁ ତାକୁ ସେମାନେ ନିୟନ୍ତ୍ରଣ କରିବେ । ଆଦେଶ ଦେଇ ସୁକାନ୍ତ ନିଶ୍ଚିନ୍ତ ରହି ନାହିଁ । ଆବଶ୍ୟକ ସ୍ଥଳେ ସେ ନିଜ ହାତରେ ଧରିଛି କୋଡ଼ି କାଙ୍କ । ମୁଳିଆ ମୁଣ୍ଡକୁ ମାଟିର ବୋଝ ଟେକିଦେଇଛି ।

ଶ୍ରେଷ୍ଠ ପାହାଡ଼ ତଳର ଝରଣା କୂଳର ମହୁଲଗଛ ତଳେ ଧବଳ ଉପଳ ଉପରେ ବସି ମନ ଖୁସିରେ ପେଜ୍ ପିଇଛି ଶ୍ରମିକମାନଙ୍କ ସଙ୍ଗରେ । ଶ୍ରମିକ ଘରଣୀ ଜନନୀ ରୂପିଣୀ ଶାଦବା ରମଣୀ, ସଙ୍କୋଚ, ସ୍ନେହ ଓ ଆଗ୍ରହଭରା ଉଜ୍ଜ୍ୱଳ ଚାହାଣିରେ କଣେଇଁ ଅନାଇଁ, ପତର ଠୋଙ୍ଗାରେ ଲାଉ ତୁମ୍ବାରୁ ପେଜ୍ ଢାଳି ଦେଇଛି । ମାଣ୍ଡିଆ ଚୁନା, ଖୁଦ ଲବଣ ମିଶା ପେଜ୍ । ତୁଣ୍ଡକୁ ଅମୃତ ପାରଣା ପରି ଲାଗିଲା ବୋଲି ସୁକାନ୍ତ କହୁଛି ।

ତମରପାଇଁ ଏଇ ଝରଣାର ପାଣି ଅଟକ କରାହୋଇଛି ମା, ସେପାଖ ନାଳରେ ପାଣି ଯିବ । ଜଙ୍ଗଲ କଟାହୋଇଛି । ଆହୁରି ଜଙ୍ଗଲ କଟାହେବ । ନୂଆ ଜମି ବାହାରିବ । ସେ ଜମିରେ ପାଣି ମାଡ଼ିବ । ଧାନ, ମୁଗ, କାହ୍ନୁଲ,

ଆଉ କେତେ ଜାତିର ଫସଲ କରିହେବ । ମୋର ଏଇ ଟିକି ଟିକି ଭାଇ-ଭଉଣୀମାନେ ବଳରେ କାମ କରିବେ । ନିଜ ଜମିରୁ ନିଜେ ଫସଲ କାଟିବେ । ଆନନ୍ଦରେ ରହିବେ । ଆମେ କାମ ଅଧା ରଖିବା ନାହିଁ, ଶେଷ କରିବା । ଚାଲ—

ଉତ୍ସାହ ଓ ଆନନ୍ଦରେ ସମସ୍ତେ କାମ କରୁଛନ୍ତି ।

ବେଳ ବୁଡ଼ ବୁଡ଼ ଆସୁଛି ।

କ୍ଳାନ୍ତ ସୁକାନ୍ତ ଆଣିକଟ ପାଖକୁ ଆସିଲା । ଚଉଦିଶି ଦେଖିଲା । ଫୁକାର-ଗୁଡ଼ିକର କବାଟ ଅଧା ଖୋଲାହୋଇଛି । ଝରଣାର ଜଳ କବାଟ ଡେଇଁ ଝରଣାର ତଳପାଖ ପାହାଚିଆ ସିମେଣ୍ଟ ଚଟାଣ ଉପରେ ପଡ଼ି ଡେଇଁ ଡେଇଁକା ପ୍ରବଳ ବେଗରେ ତଳକୁ ବୋହିଯାଉଛି ।

ସେ ପଛକୁ ମୁହଁ ଫେରାଇଲା । ଝରଣାର ଅସ୍ତିତ୍ୱ ହଜିଛି ଅଟକଳ ଲେକାର ଜଳରାଶିରେ । ଦୁଇ ପାଖରେ ମାଟିବନ୍ଧ, ଦୂରରେ ଦୁଇ ପାହାଡ଼ର ଗଡ଼ାଣିରେ ମିଶିଛି । ପାଣି ଅଟକିଛି । ଦୁଇଆଡ଼ର ପାହାଡ଼ମାଳର ତଳପାଦଏ ବୁଡ଼ି ରହିଛି । ମଝିରେ ମଝିରେ ମୁଣ୍ଡଟେକି ଠିଆ ହୋଇଛନ୍ତି କେତେ ଜାତିର ଗଛ । ସୁନ୍ଦର ଦିଶୁଛି, ଧ୍ୟାନମଗ୍ନ ଋଷିଟିମାନେ ଯେତେ ବା !

ମନେପଡ଼ୁଛି ଅଦୂର ଅତୀତର ଘଟଣା ।

ଦେବୀ ନଦୀରେ ବଢ଼ି ।

ସବୁ ପରିଶ୍ରମ ବିଫଳ ହୋଇଛି । ଦିନରାତି ଜଗି ବନ୍ଧରେ ମାଟି ପକାଉଛନ୍ତି ପାଞ୍ଚ ଶହ ଲୋକ । ଦେବୀ ନଦୀ ବେଳକୁବେଳ ଫୁଲି ଉଠୁଛି । ଏପାଖ ବନ୍ଧ ଉପରେ ଠିଆହୋଇ ଆର ପାଖକୁ ଚାହିଁଲେ ଦେଖା ଯାଉଛି କେବଳ ଗୋଳିଆ ଜଳରାଶି । ପ୍ରଖର ସ୍ରୋତରେ ନଦୀ ମଝିରେ କେତେ ବଡ଼ ବଡ଼ ଗଛ ଭାସି ଯାଉଛନ୍ତି ।

ବରଷା କୁଟୁଛି । ଦଳକା ଛୁଟୁଛି । ନଦୀ ବନ୍ଧରୁ ଅଧେ ଟାଢ଼ିଲେଣି । ସହସ୍ର ସହସ୍ର ବାଲିବସ୍ତା ପାଣି ଭିତରକୁ ପକାଇ ବନ୍ଧକୁ ରକ୍ଷା କରିବାକୁ

ଚେଷ୍ଟା କରୁଛନ୍ତି । ହିରାକୁଦ ବନ୍ଧର ସବୁ ଫାଟକର ଖୋଲା ହୋଇଛି । ପାଣି ଅଛୁଗ ବଢ଼ିବ । ଲୋକେ ସତର୍କ ହୋଇ ଉଚ୍ଚସ୍ଥାନକୁ ଚାଲିଯିବାକୁ ଚେଷ୍ଟା କଲେଣି । ମଣିଷ ଉଦ୍ୟମ କରୁଛି, ଫଳାଫଳ ତା ହାତରେ ନାହିଁ ।

ଉଦ୍ୟମ ସଫଳ ହେଲନାହିଁ । ରାତି ଅଧରେ ବନ୍ଧ ଭାଙ୍ଗିଲା । ପର୍ବତ ପ୍ରମାଣେ ଜଳରାଶି ଗର୍ଜି ଗର୍ଜି ଛୁଟିଲା ଗଛାରମାନଙ୍କୁ । ଅନ୍ଧାର ରାତି । ହାହାକାର ଛୁଟିଲା ଅନ୍ତରୀକ୍ଷକୁ । କଟକ ସଦର ଥାନାର କେତେ ଗ୍ରାମ ଜଳାର୍ଣ୍ଣବ ହେଲା ।

ମଣିଷ ହାରିଲା ।

ପ୍ରକୃତି ଜିତିଲା, ପ୍ରକୃତି ହସିଲା ।

ସ୍ୱଅଡ଼େ ଚାହିଁଲେ ଦିଶେ ସୀମାହୀନ ଜଳରାଶି, ଚିଲିକା । ଛୋଟ ଛୋଟ ଦ୍ୱୀପପରି ଦୂରେ ପାଖେ ଗ୍ରାମମାନଙ୍କର ଅନ୍ଧାରିଆ ଅବସ୍ଥିତି ।

ଚାରା ନାହିଁ ବୋଲି ମଣିଷ ହାରି ରହେ ନାହିଁ । ଉପାୟ ଖୋଜେ ସିଏ । ବେଗ ବଇରାଗରେ ଛଟପଟ ହୋଇଛି । ବଞ୍ଚି ରହିବାକୁ ଚେଷ୍ଟା କରୁଛି । ସାମାନ୍ୟ କେତେଜଣ ପ୍ରାଣ ହରାଇଛନ୍ତି ସତ, ମଣିଷ ବଞ୍ଚିଛି । ପରସ୍ପର ପ୍ରତି ସହାନୁଭୂତି, ସ୍ୱାର୍ଥତ୍ୟାଗ, ନିଜର ଜୀବନକୁ ବିପନ୍ନ କରି ଅପରକୁ ଉଦ୍ଧାର କରିବାର ପ୍ରବୃତ୍ତି, ମଣିଷକୁ ବଞ୍ଚାଇଛି ।

ଇଞ୍ଜିନିୟାର ସୁକାନ୍ତର ବିଫଳ ଉଦ୍ୟମ ତାକୁ ବିବ୍ରତ କରି ନାହିଁ । ତଳକୁ ଓଟାରି ନାହିଁ । ତା'ର ମଣିଷପଣିଆ ତାକୁ ଆଗକୁ ଠେଲିଛି ।

ନବପରିଣୀତା ପତ୍ନୀ ରମା ଆକୁଳ ହୋଇ ବାଟକୁ ଅନାଇ ବସିଥିବ । ଦିଶିଯାଉଛି ତା'ର ଲୁହ ଛଳଛଳ ଆଖି ।

ଦିଶି ଯାଉଛି—ଦୂର ଗାଆଁର ଭାସିଲା ମଥାନ ଉପରେ ନବବଧୂଟିଏ; ବଞ୍ଚି ରହିବାକୁ ଭାସିଲା ଚାଳକୁ ଧରିଛି । ଏଦା ସରିସର । ବଢ଼ି ପାଣିର ତୋଡ଼ରେ ଭାସିଯାଉଛି । କାହାନ୍ତି ତା'ର ସ୍ୱାମୀ, ଶଶୁର, ଶାଶୁ ଓ ଦିଅର ନଣନ୍ଦମାନେ ?

ଗଛର ଡାଳରେ ଅଶ୍ରା ନେଇଛନ୍ତି କେତୋଟି ଲୋକ, ଶିଶୁ ବୁଢ଼ା । ସେଇ, ଭାସିଯାଉଛୁ ଗ୍ରେଟ ଗଛଟି । ପାଣି ଫୁଲୁଉଠୁଛି । ଗଛ ବୁଡ଼ିବ । କଅଣ କରିବେ ସେମାନେ ?

କାଠ ଖଣ୍ଡେ ଧରି ଉଦେଇଟୁବେଇ ହୋଇ ଭାସି ଯାଉଛନ୍ତି କାହାର ସ୍ନେହମୟୀ ଜନନୀ ।

ମାଟି ହାଣ୍ଡି ଟିରେ ଦେଢ଼ ବର୍ଷର ଶିଶୁ । ତରଙ୍ଗର ତାଳେ ତାଳେ ନାଚନାଚ ମରଣ ମୁହଁକୁ ଆଗେଇ ଯାଉଛି । ଭୟରେ ଚିତ୍କାର କରୁଛି ।

ମରିବ ସେ ?

ନାହିଁ, ନାହିଁ ।

ସୁକାନ୍ତ ତା'ର କର୍ତ୍ତବ୍ୟ କରିଛି । ଇଞ୍ଜିନିୟାରପଣ ହାରିଛି, ମଣିଷପଣିଆ ଜିତିଛି ।

ସେବକ ସୁକାନ୍ତ ବିଜୟ କେତନ ଧରି ଫେରିଆସିଛି ।

ଖବର କାଗଜ ପ୍ରଚାରକଲା, ଇଞ୍ଜିନିୟାର ଓ ଆଉ କେତେ କର୍ମୀ ଭାସିଗଲେ, ପତ୍ତା ମିଳୁନାହିଁ । ଖବର କାଗଜ ପୁଣି ଘୋଷଣା କଲା, ଇଞ୍ଜିନିୟାର ସୁକାନ୍ତ ଉଦ୍ଧାର କାର୍ଯ୍ୟରେ ମନପ୍ରାଣ ଢାଳି ଦେଇଛନ୍ତି । ଖାଦ୍ୟ, ବସ୍ତ୍ର, ଔଷଧ, ସ୍ୱେଚ୍ଛାସେବକ ଗ୍ରାମେ ଗ୍ରାମେ ଉପସ୍ଥିତ ହେଲେଣି ।

ମୁଁ ଫେରିଆସିଛି ରମା, ଗୋଟିଏ ଜୀବନ ଧରି ଫେରି ଆସିନାହିଁ, କେତେ ଜୀବନ ରକ୍ଷା କରିପାରିଛି । ସେମାନଙ୍କ ଭିତରେ ତମେ ମଧ୍ୟ ଥିଲ । କାନ୍ଦୁଛ କାହିଁକି ?

ସତେ, ମୋର ମନ ପ୍ରାଣ ଉଡ଼ିଯାଇଥିଲା । ଦେହଟା ଛଟପଟ ହେଉଥିଲା । ଖବର କାଗଜ ପ୍ରଚାର କଲା ତମେ ହଜିଛ, ତମେ ଭାସିଯାଇଛ । ବାଇଆଣୀପରି କଟକର ଯେତେ ଦେବଦେବୀ ଅଛନ୍ତି, ସମସ୍ତଙ୍କ ପାଖକୁ ଧାଇଁଲି । ଆଖିଲୁହ ଢ଼ାଳି ଗୁହାରି କଲି । ଖବର କାଜେ ପୁଣି ପ୍ରଚାରିଲା,

ତମେ ଉଦ୍ଧାର କାର୍ଯ୍ୟରେ ଲଗିଛ । ପିଣ୍ଡରେ ମୋର ପ୍ରାଣ ପଶିଲା । ଦେବଦେବୀ ପାଖରେ ମୋର ପ୍ରାର୍ଥନା ବ୍ୟର୍ଥ ହୋଇନାହିଁ । ଅନ୍ତର ପ୍ରାର୍ଥନା କଲି ।

ଅନ୍ତର ପ୍ରାର୍ଥନା କର ରମା, ମନରେ ଶକ୍ତି ଆସିବ । ସବୁ ଦେବ-ଦେବୀଙ୍କର ସ୍ୱରୂପ, ପ୍ରତାପ ଓ କରୁଣା ତମର ମନ-ମନ୍ଦିରରେ ଜାଗିବ । ଶାନ୍ତି ଓ ସାନ୍ତ୍ୱନା ଲଭିବ । ମୁଁ ପ୍ରାର୍ଥନା କରିଥିଲି, ମନରେ ଶକ୍ତି ସଞ୍ଚରିଥିଲା ।

ପାଣିର ପାରାବାରରେ ସହକର୍ମୀଙ୍କ ସଙ୍ଗରେ ବସି ନୌକା ଭସାଇ ଉଦ୍ଧାର କାର୍ଯ୍ୟରେ ଲଗିଥିଲି । ଯେଉଁମାନେ ଦୁଃଖ ଦୁର୍ଦ୍ଦଶା ଭୋଗିଲେ, ପ୍ରାଣ ହାରିଲେ, ସେମାନେ ମଧ୍ୟ ପ୍ରାର୍ଥନା କରିଥିଲେ । ପ୍ରକୃତି ଅଟ୍ଟହାସ୍ୟ କରିଥିଲା । ମୁଁ ମଧ୍ୟ ଅଟ୍ଟହାସ୍ୟ କରିଥିଲି ।

ମନ କହିଲା, ସତେ, ଏତେ ହସୁଛୁ ? ମୁଁ ଏ ଯୁଗର ଇଞ୍ଜିନିୟର । ଏଥରକ ତୁ ଜିତିଲୁ ଲୋ ଛଇଳୀ ଛଟକୀ ପ୍ରକୃତି, ତୁ ବଡ଼ ପାରଙ୍ଗମ, ଏକଥା ଆମେ ଜାଣୁ; କିନ୍ତୁ ତତେ ଆମେ ବାନ୍ଧିବୁ, ବୋଲ ମନାଇବୁ, ଆମ କାମରେ ଲଗାଇବୁ । ତତେ ଆମେ ସଜାଇବୁ, ସୁନ୍ଦର କରିବୁ ।

ବାଇଆ ହେଲୁ କି, କଅଣ ଏଣ୍ଟୁତେଣ୍ଟୁ ବକୁଛ ?

ସତେ ତ, ତମକୁ ମୁଁ ଗେଲ କରିନାହିଁ ।

ଗ୍ଲେପଗ୍ଲୁ, ରହ ମ, ଜାମା ଜୋତା ଆଗ ପାଲଟ ।

ବ୍ଲନ୍‌ଗୁଡ଼ାର ନାଳ ବନ୍ଧା ହୋଇଛି । ଦୁଇଟି ପର୍ବତଧାଡ଼ିର ଉପତ୍ୟକାରେ ପାଣି ଜମା ହୋଇଛି । ଦକ୍ଷିଣର ମଧୁଳ ଗୁଇ ମାଡ଼ି ଆସୁଛି । ଦୂରର ପାହାଡ଼ ଉପର ଗଛଗହଳି ଅନ୍ଧାରିଆ ଦିଶି ଆସିଲାଣି । ଆକାଶର ଗୃନ୍ଦୁଆ ଉପରେ ଭାସିଲା ବାଦଲ ଘାଟଲ ହେଲାଣି ।

ନୂଆ ନାଳର ବନ୍ଧ ଉପରେ ସୂର୍ଯ୍ୟୋଦୟ ସ୍ଵପ୍ନ ଦେଖୁଛି । ପଛେ ପଛେ ସହକର୍ମୀ-ମାନେ । ସହସ୍ର ଶ୍ରମିକଙ୍କର ହାତରେ ଗଢ଼; କରୁଣାର ଅମୃତ ଧାରା ପରି ଜଳ ନାଳରେ ନାଚି ନାଚି ଗ୍ଲାଉଛି । ତଳର ଚଷର ମାଳରେ ପାଣି ମାଡ଼ୁଥିବ । ଅନାବାଦୀ ଜଙ୍ଗଲଭୂଇଁ ପରିଷ୍କାର ହେଉଛି । ନୂଆ ଜମି ବାହାରୁଛି, ଅଧିକ ବାହାରିବ । ନୂଆ ଗ୍ରାମ ବସିବ । ପାହାଡ଼ ଉପରୁ ଓହ୍ଲାଇ ଆସିବେ କନ୍ଧ, ଶାଉରା ଓ ଶବରମାନେ, ନୂଆ ଗ୍ରାମରେ ରହିବେ । ଘରବାସ କରି ସୁଖରେ ବଞ୍ଚିବେ । ମଣିଷ ପରି ମଣିଷ ହେବେ ।

ହଁ, ଅବଶ୍ୟ ହେବେ ।

କାହିଁ ହେଲା ଏ କାମ, କେହି ଏ ସହସ୍ର କାମ ? ଟଙ୍କା ଖରଚ ହୋଇଛି । ଟଙ୍କାର ତ ଗୋଡ଼ ହାତ ନାହିଁ, ଟଙ୍କା କାମ କରେ ନାହିଁ, କାମ କରାଏ । କୁହନ୍ତି ଲୁହେ, ସତ୍ୟ, ବାହୁବ । ଟଙ୍କା ଛପାଯାଏ । ଯେଉଁ ହାତ ଅଳସ ହୋଇଥାନ୍ତା, ସେଇ ହାତ କାମରେ ଲାଗିଲା, କେତେ କାମ ହେଲା, କେତେ କାମ ହେବ ।

ଟଙ୍କା ବେଶି ହେବାରୁ ପଦାର୍ଥର ମୂଲ୍ୟ ବଢ଼ୁଛି, ସଞ୍ଚିତ ଧନର ମୂଲ୍ୟ କମୁଛି । କମୁ । ସଞ୍ଚିତ ଧନ ନଥିଲା ପରି ସମାନ । ଉପାସିଆ ଲୋକେ ଖାଇବାକୁ ପାଉଛନ୍ତି । ଫୁଙ୍ଗୁଳା ଦେହରେ ବସନ ଦେଖା ହେଉଛି । ଯେଉଁମାନଙ୍କର ବେତନର ସ୍ଥିର, ସେମାନଙ୍କର ଚଳନର ମାନ କମୁଛି । ସେତିକି ଅସୁବିଧା ।

ତଥାପି, ଅଳସ ହାତ କାମରେ ଲାଗୁଛି । ନୂଆ ନୂଆ ଲୋକଙ୍କ ପଦାର୍ଥ କାମ ମୁଣ୍ଡ ଟେକି ଠିଆ ହେଉଛି ।

ଗ୍ଲାସଗୁଡ଼ା ନାଳ ପୋଷା ମାନିଛି । ଉପରିସ୍ଥମାନେ ଆସି ଦେଖିବେ । ଖୁସି ହେବେ । ପ୍ରଶଂସା କରିବେ । ନିନ୍ଦା ବା ପ୍ରଶଂସାରୁ ମିଳିବ କଅଣ ? ମନ ପ୍ରାଣ ଓ ଲହୁଲୁହ ଢାଳି ସେ କାମ କରିଛି । କାମ କରାଇଛି । ପରିଶ୍ରମ ତା'ର

ସାର୍ଥକ ହୋଇଛି । ଆଶୀର୍ବାଦର ପ୍ରସ୍ରବଣ ଯେମିତି ମନ ଖୁସିରେ ନୂଆ ନାଳରେ ପାଣି ପ୍ରବାହିତ ହେଉଛି । ଏତିକି ସୁକାନ୍ତର ପୁରସ୍କାର, ତା'ର ଆନନ୍ଦ ।

ଆରଥର ଆସିଲାବେଳେ ସେ ନିଶ୍ଚୟ ରମାକୁ ସାଙ୍ଗରେ ଆଣିବ । ପିଲା ଦିହେଁ ଆସିବେ । ସମସ୍ତଙ୍କ ସାଥିରେ ଥରେ ସେ ବୁଲିବ । ରମାକୁ କହିବ, ବୁଝିଲ ତ ଏବେ, କାହିଁକି ସେଦିନ ମୁଁ ଅସ୍ଥିର ହୋଇପଡ଼ିଲି ? ତମ ଉପରେ ମୁଁ ବିରକ୍ତ ହୋଇ ନ ଥିଲି । କେଉଁଟା ଲୁଣିଆ, କେଉଁଟା ଅଲଣା ସେ କଥା ମୋ ଜିଭ ବୁଝିଥିଲା, ମନ ଯେମିତି ନଥିଲା ।

ମନ ସେଠାରେ ନଥିଲା ରମା, ମନ ଭ୍ରମୁଥିଲା ଏଇଠି, ଏଇ ଅରଣ୍ୟ-ଶିଖା ପାହାଡ଼ମାଳ ଉପରେ, ସନ୍ତସନ୍ତିଆ ଉପତ୍ୟକା ଓ ଅଧା ଗଚ୍ଛିଆ ଖୋଲମାନଙ୍କରେ, ସ୍ଫଟିକ୍‌ଗୁଡ଼ାର ଅମାନିଆଁ ଝରଣାର କୂଳରେ । ମନ କଥା କହୁଥିଲା, ଏଇଠି କାମ କରୁଥିବା ଶହ ଶହ ଶ୍ରମିକଙ୍କ ଢଙ୍ଗରେ । ମନର ଭୋକ ଦେହର ଭୋକକୁ ଗ୍ରାସ କରିଥିଲା । ଦାୟିତ୍ୱର ଧାରଣା ଉତ୍ତେଜନାର ଅଜ୍ଞାଣ୍ଡ ରଜ୍ଜୁରେ ମୋତେ ଟାଣୁଥିଲା ।

ଅଧ ଲଙ୍ଗଳୀ ଅଲଜୁକା ଅଯତ୍ନ ଗଢ଼ଣ ଘରଣୀ କାଉଡ଼ୁମ୍ବାରୁ ପତର ଠୁଙ୍ଗାରେ ଯେଉଁ ପେଜ୍ ଢାଳିଦେଲା, ଅମୃତ ପାରଣା କହି ସେତକ ଉଦରସ୍ଥ କଲି କିପରି ? ଦେହର ଭୋକ ମନର ଭୋକକୁ ଗ୍ରାସ କରିଥିଲା ?

ଭାବନା ଭିତରେ ରମା ହସୁଛି । ସେ ହସ ଯେତେ କି ଉପହାସ କରୁଛି । କହୁଛି, କାରଣ ମତେ ଅଜଣା ନାହିଁ ।

ନାଳର ପାଣି କଳ କଳ ହୋଇ ବହିଯାଉଛି, ହସୁଛି । ସେ କିସ୍ମିତ ହୋଇଛି । ଉଡ଼ିଯାଉଛି ତାଳକୁ ।

ସେ ଝରଣା କଥା କହୁଛି ଶୋ, ଦୁଇ ପାଖର ନୂଆ ବନ୍ଧରେ ଯେଉଁଠି ମିଳିବ ଫାଙ୍କ, ସେଇଠି ମୁଁ ପଶିବ, ଘଳଆ କରିବ, ବନ୍ଧ ଭାଙ୍ଗିବ, ମନଖୁସିରେ ସ୍ୱାଧୀନ ହୋଇ ମାଡ଼ ବୁଲିବ, ଅବିକଳ ତମରି ମନ ଓ ଦେହ ମନର ପ୍ରବାହ

ଏବଂ ତାର ଉତ୍ତେଜନା ପର । ତାକୁ ଯୁଗଯୁଗର କୃଷ୍ଟି ମାଟିବନ୍ଧ ଦେଇ ନିୟନ୍ତ୍ରଣ କରିଛୁ ।

ସନ୍ଧ୍ୟା ହୋଇ ଆସିଲା ଆଜ୍ଞା, ଆଉ କେତେଦୂର ଯିବା ? ବଣ ପାହାଡ଼ର ଦେଶ, କେତେବେଳେ କେଉଁଠି ଜନ୍ତୁଟାଏ ବାହାରି ପଡ଼ିବ, ଆକାଶରେ ମେଘ ଘୋଟି ଆସିଲାଣି, ଆସନ୍ତୁ ଫେରିଯିବା ।

ସାହସ କରି କାନ୍ତିବାବୁ ସୁବୁଦ୍ଧି ଏତକ କହିଲେ ।

ସୁକାନ୍ତ ନିଜ ଭିତରକୁ ଫେରିଆସିଲା । କହିଲା, ହଁ, ଏଥର ଫେରିବା । ବନ୍ଧର ଅନେକ ସ୍ଥାନରେ ମାଟି ଭଲ ହୋଇ ପିଟା ହୋଇ ନାହିଁ, ବନ୍ଧ ଉପର ସମତୁଲ ହୋଇ ନାହିଁ । ଏ ସବୁ ବାକିଆ କାମ ପ୍ରତି ଶୀଘ୍ର ନଜର ଦେବସୁବୁଦ୍ଧି ବାବୁ, କାଲିଠାରୁ ଏଇ ବନ୍ଧ କାମରେ ଅଧିକ ଲୋକ ଲଗାଅ ।

ଆଜ୍ଞା, ହଁ ।

ସମସ୍ତେ ଫେରିଲେ ।

ଅନିକେତ ପାଖରେ ସୁକାନ୍ତ କହିଲା, ମୁଲିଆମାନେ ସମସ୍ତେ ଗ୍ଭଲିଗଲେ ଯେ, ଫୁକାରଗୁଡ଼ିକରୁ ଆହୁରି ପଟାକବାଟ ଟେକି ଦିଅ, ନଦୀରେ ଅଧିକ ପାଣି ଛାଡ଼ିଦିଅ । ନାଲି ଫୁକାର ଓ ଖଲ୍ଲିଯାନାଲର ଫୁକାରମାନଙ୍କରେ ଦୁଇଟି କରି ଫୁଟିକିଆ କବାଟ-ପଟା ଲଗାଅ । ଅଧିକ ପାଣି ଛାଡ଼ିବ ନାହିଁ ।

ସୁବୁଦ୍ଧି କହିଲେ, କରାଇ ଦେବି ଆଜ୍ଞା, ଆଜି ଆମର ଗ୍ରାମରେ କର୍ମୀ-ମାନଙ୍କର ଭୋଜି ହେଉଛି । ନାଚ ହେବ । ମୁଲିଆମାନେ ଯିବେ ।

ସୁକାନ୍ତ ଉତ୍ତର ନ ଦେଇ ଆଗକୁ ଗ୍ଭଲିଲା । ସେ ଜାଣେ ସୁବୁଦ୍ଧି ତାକୁ ନିମନ୍ତ୍ରଣ କରୁଛନ୍ତି । ସୁବୁଦ୍ଧି ବେପାରୀ ଘରର ପିଲା । ବାପ ଅଜା ମଦ ବେପାର ଧରି ବହୁତ ଧନ ସମ୍ପତ୍ତି କରି ଯାଇଛନ୍ତି । ଅଶିକ୍ଷିତ ଆଦିବାସୀଙ୍କର ସୁବି ଧେନ୍ଦ୍ରର ସୁଯୋଗ ନେଇ ସେମାନେ ପାଞ୍ଚକୁ ପଚିଶ କରି ମଦ୍ୟପମାନଙ୍କର ଭୂସମ୍ପତ୍ତି ଟାଣି ନେଇ ନିଜର କରି ସାରିଛନ୍ତି । ସେଉଁମାନଙ୍କର ସେ ବଗୁ

ଭୂମି ଥିଲା, ସେମାନଙ୍କର ପୂର୍ବନାଥ ସୁବୁଦ୍ଧିଙ୍କର ଗୋଠ ହୋଇ ସେହି ସବୁ ଜମି ଚାଷ କରୁଛନ୍ତି । ଫସଲ ଯାଉଛି ସୁବୁଦ୍ଧିଙ୍କ ଅମାରକୁ । ଗୁଲନ୍‌ଗୁଡ଼ା ଗଆଁରର ସବୁ ଭଲ ଜମି ସୁବୁଦ୍ଧି ବଂଶର । ନାଲ ପାଣି ଆଗ ମାଡ଼ିବ ସେହି ସବୁ ଜମିରେ । ସୁବୁଦ୍ଧି ତ କାନ୍ତବନ୍ତି, ମନ ପ୍ରାଣ ଦେଇ କାମ କରେଇଛନ୍ତି, ତାଙ୍କର ଗୋଠମାନେ ମଧ୍ୟ କାମ କରିଛନ୍ତି ।

ସୁବୁଦ୍ଧିଙ୍କର ବୟସ ତିରିଶି ହେବ । ଗୋରା ତକ ତକ ବଳିଷ୍ଠ ଦେହ । ବଡ଼ ମଣିଷ । ସୁନ୍ଦର ରୂପ । ଶ୍ରେଷ୍ଠ ଶ୍ରେଷ୍ଠ ଜଣ । ଦଶମ ଶ୍ରେଣୀଯାଏ ପାଠ ପଢ଼ିଛନ୍ତି । ଇଂରେଜୀ, ଓଡ଼ିଆ, କନ୍ଧ. ପରଜା ଓ ସଉରା ଭାଷା ଜାଣନ୍ତି । ଭାଷାଜ୍ଞାନ ତାଙ୍କୁ ବଡ଼ଲୋକ କରିଛି । ଯେଉଁ ବାବୁରେ ଯେଉଁ ଅଧିକାରୀ ଗୁଲନ୍‌ଗୁଡ଼ାରେ ପଦଧୂଳି ପକାନ୍ତି, ସମସ୍ତଙ୍କର ସେ ତନ୍ଦୁ ନିଅନ୍ତି । ସମସ୍ତଙ୍କୁ ସେ ଆପ୍ୟାୟିତ କରନ୍ତି ।

ସୁକାନ୍ତକୁ ସେ ପୋଷାମଣାଇଁ ପାରନାହାନ୍ତି । ସୁକାନ୍ତ ଅଡ଼ୁଆ ଲୋକ । ଅଦର୍ଶ ପଛରେ ଗୋଡ଼ାଇ ଥାଏ । କଡ଼ା ହାକିମ । ନିଜେ ତ କାମରେ ହାତଦିଏ, ମୋହନକୁ କ'ଣ ଜାଣେ ନାହିଁ । ନାଟତାମସା ଦେଖିବାକୁ ଗଲେ ପାଞ୍ଚ ଦଶ ମିନଟ୍ ରହି ଚାଲିଆସେ ।

ସୁବୁଦ୍ଧି ନାଟ କରାଉଛନ୍ତି । ଛେଳି ମେଣ୍ଢା ହତ୍ୟା ହେବେ । ମଦର ସୁଅ ଛୁଟିବ । ନାଲ କାମ ଶେଷ ହୋଇଛି । କର୍ମୀମାନେ ଓ ଗ୍ରାମବାସୀମାନେ ଆନନ୍ଦ କରିବେ । ଦଳ ଦଳ ହୋଇ ଧାଙ୍ଗଡ଼ା ଧାଙ୍ଗଡ଼ୀ ନାଚ କରିବେ । ନିଜ ନିଜ ଭାଷାରେ ଗୀତ ବୋଲିବେ ।

ଏକା ପରିକା ସେ ସ୍ୱର, ଏକା ପରି ସେ ନାଟ । ଦେଖି ଦେଖି ଶୁଣି ଶୁଣି ଅଭ୍ୟାସ ହୋଇଗଲାଣି । ଭଲ ଲାଗେ ନାହିଁ । ତଥାପି ନାଚ ପାଖକୁ ଯିବାକୁ, ଠିଆ ହୋଇ ଦେଖିବାକୁ ଆଗ୍ରହ ହୁଏ । ଗୀତ ବୁଝିହୁଏ ନାହିଁ, ସମବେତ ସ୍ୱର ଓ ବାଦ୍ୟର ଉଠପଡ଼ ମୂର୍ଚ୍ଛନା ଭଲଲାଗେ ।

ବାହୁଡ଼ା ଦଶମୀ ସନ୍ଧ୍ୟା ।

ଆକାଶ ମେଘାଚ୍ଛନ୍ନ । ଜୟପୁର ଡାଣ୍ଡରେ ଲୋକଭିଡ଼ । ମୋଫସଲ ଅଞ୍ଚଳରୁ ପାହାଡ଼ମାଳ ସେପାଖରୁ, କୋରାପୁଟ ଘାଟି ପାହାଡ଼ମାଳ ଅଧକଢରୁ ସ୍ତ୍ରୀ ଓ ପୁରୁଷ ଶହ ଶହ ସଂଖ୍ୟାରେ ଆସିଛନ୍ତି । ଦଶରା, ଦେବାଲ, ବାଲଯାତ୍ରା ପର୍ବମାନଙ୍କରେ ଏହିପରି ଭିଡ଼ ହୁଏ ।

ଉଆଁ ଦର୍ଶନ ସାର ସୁକାନ୍ତ ବାଙ୍କାମଠ ମାଉସୀଘର ମନ୍ଦିରରୁ ଫେରୁଛି, ସଙ୍ଗରେ ଅଛି ରମା । ପିଲା ଦିଓଟିଙ୍କୁ ଘରେ ଛାଡ଼ି ଆସିଛନ୍ତି । ବିଜୁଳି ଆଲୁଅରେ ଜୟପୁର ଡାଣ୍ଡ ଉଜ୍ଜ୍ୱଳ ଦିଶୁଛି । ଠାଏ ଠାଏ ମୋଫସଲରୁ ଆସିଥିବା ଝିଅମାନେ ଅଣ୍ଟା ଧରାଧରି ହୋଇ ଗୀତ ବୋଲି ନାଚୁଛନ୍ତି । ବାଇଦ ବାଜୁଛି । ସେଇଠି ଲୋକ ଭିଡ଼ ।

ଦେଖ ରମା !

ରମା ଦେଖିଲା । କହିଲା, ଆସ ମ, ଲୋକ ଭିଡ଼, ଠେଲାପେଲା ହେଉଛନ୍ତି ।

ସୁକାନ୍ତ ଆଗେଇ ଚାଲିଲା, ପାଖେ ପାଖେ ରମା । ଆହୁରି ଠାଏ, ସେଇ ନାଚ । ସୁକାନ୍ତ ଅଟକିଲା । ଦେଖିଲା ।

ରମା କହିଲା, ଚାଲ ମ, କ'ଣ ଏତେ ଦେଖୁଛ, ସବୁ ତ ଏକା ପରକା, ପିଲାଏ ଖୋଜୁଥିବେ ।

ହଉ ଚାଲ । ନାଚ ଗୀତ ସିନା ଏକା ପରକା, ସ୍ଥାନ ଓ ଲୋକ ଭିନେ ଭିନେ ।

ତୁମେ ସ୍ଥାନ ଦେଖ, କି ଲୋକ ଦେଖ, କି ନାଚ ଦେଖ, ମତେ ଆଗ କହ ତ ?

ସୁକାନ୍ତ ଭାବିବାକୁ ଲାଗିଲା । ଏ ବିଷୟରେ କେବେ ସେ ମୁଣ୍ଡ ଖେଳାଇ ନାହିଁ । ଦେଖିବାକୁ ଆଗ୍ରହ ହୁଏ, ସେ ଟାଣି ହୋଇ ଯାଏ । ଦେଖେ, ଶୁଣେ, ଭୁଲେ ।

ମୁଁ ଏ ଦଶ୍ଯର ସମାବେଶ ଦେଖେ ।

ରମା ହସିଉଠିଲା । ଆଉ କିଛି ପଗ୍ଚରିଲା ନାହିଁ । ତା'ର ସେହି ଧୀର ଓ ଅଳପ ହସରୁ ସୁକାନ୍ତ ବୁଝିଲା, ଉତ୍ତର ଠିକ ତା ମନକୁ ପାଇଲା ନାହିଁ । ସତେ କି ତାର ହସ ସ୍ପଷ୍ଟ ଭାବରେ କହିଲା, ମୋ ପ୍ରଶ୍ନର ଉତ୍ତର ତମେ ଭଲକରି ଜାଣ କିନ୍ତୁ ମନ ଖୋଲି କହିବ ନାହିଁ । ତମେ ଗ୍ଥାନ, ଲୋକ କି ନାଚ ଦେଖ ନାହିଁ, ଗୀତ କି ବାଦ୍ୟ ଶୁଣ ନାହିଁ । ଆଉ ଆଉ ପୁରୁଷମାନଙ୍କ ପରି ତମେ ବି ଦେଖ ସୃଜନ ସ୍ରୋତର ପ୍ରବାହ, ଉଠାପଡ଼ା ଲହରୀମାଳ, ଶୁଣ ତା'ର କଳକଳ ଗ୍ଚଟିଣୀ ।

ସୁକାନ୍ତ ମୁହଁ ବୁଲାଇ ଗ୍ଚଲନ୍‌ଗୁଡ଼ାର କଳକଳ-ନାଦିନୀ ତରଙ୍ଗ-ମାଳିନୀ ଝରଣା ଆଡ଼କୁ ଗ୍ଚହିଁଲା । ଆଖି ଫେରାଇଲା ନୂଆ ନାଳରେ ପ୍ରବାହିତ ଜଳକୁ, ଦୁଇ କୂଳର ବନ୍ଧ ମଝିରେ ନୀରବ ଓ ନିୟନ୍ତ୍ରିତ ତରଳ ଗତି, ଦାମ୍ପତ୍ୟ ଜୀବନର ପ୍ରବାହ ପରି ।

ପ୍ରେମର ଉଚ୍ଛନ୍ନ ଉଚ୍ଛଳ ତରଙ୍ଗକୁ ବିବାହ ବନ୍ଧନ ନିୟନ୍ତ୍ରିତ କରେ, ଦୁଇ କୂଳର ମଝିରେ ଗ୍ଚଲେ ଅବାଧ କଳକଳ ଜୀବନ ସ୍ରୋତ ।

ସୁବୁଦ୍ଧିଙ୍କର ଅନୁରୋଧ ସେ ରକ୍ଷି ପାରି ନାହିଁ ।

ଲେଖାପଢ଼ା କାମର ଆଳରେ ସେ ଗ୍ଚଲନ୍‌ଗୁଡ଼ା ଗାମକୁ ଯାଇ ପାରିନାହିଁ । ଅନ୍ୟମାନଙ୍କର ଯିବାରେ ବାଧା ଦେଇନାହିଁ । ତ୍ରିଭିରୁ ପୁନା ସିଂ ଗ୍ଚଲିଯାଇଛି । ଆଜି ସେ ଅକଣ୍ଠ ସୁରା ପାନ କରିବ । ଯେତେ ବୁଝାସୁଝା କଲେ, କି ଧମକାଇଲେ ସେ ମାନେ ନାହିଁ । ସୁବିଧା ପାଇଲେ ଅଟକି ରହେନାହିଁ । ସୁରା ସାଗର ସନ୍ତରଣ କରେ ।

ସୁକାନ୍ତ ସୁବୁଦ୍ଧିଙ୍କୁ ସାବଧାନ କରିଦେଇଛି ।

ନିଶାନିବାରଣ ନୀତି ଏ ଜିଲ୍ଲାରେ କାର୍ଯକାରୀ ହେଲା । ମଦଭାଟି ଓ ମଦଦୋକାନସବୁ ଉଠାଇ ଦିଆହୋଇଛି । ଅବକାରୀ ଅୟ ବାର୍ଷିକ ଦଶ ବାର ଲକ୍ଷ ଟଙ୍କାର ମୋହ ସରକାର ଛାଡ଼ି ଦେଇଛନ୍ତି । ସମ୍ବିଧାନସମ୍ମତ ନିଶା-ନିବାରଣ ପାଇଁ ବଳିଷ୍ଠ ପଦକ୍ଷେପ, ସାଧୁ ଉଦ୍ୟମ ।

ଅରଣ୍ୟ ମଝି ଢୋଲ ଓ ଝରଣା ଝରେ, ପାହାଡ଼ମାଳ ତଳେ ଅବାଧରେ ମଦ ରନ୍ଧା ହେଉଛି । ଆବାଲବୃଦ୍ଧବନିତା ଆଶା ମେଣ୍ଟାଉଛନ୍ତି । ଆଦିବାସୀ କୁଟୁମ୍ବରେ ପିଲାଟିଏ ଜନ୍ମ, ନାମକରଣ, ଘେନାଘେନି, ବିବାହ, ମରଣ, ଶ୍ରାଦ୍ଧ ଓ ଅନ୍ୟାନ୍ୟ ସବୁ ପର୍ବ ପର୍ବାଣିର ପ୍ରଧାନ ଉପକରଣ ମଦ୍ୟ ! ନିଶାନିବାରଣ ଉଦ୍ୟମ ଆଦିବାସୀର ସାମାଜିକ ଜୀବନକୁ ଦୋହଲାଇ ଦେଇଛି, ଅଭ୍ୟାସକୁ ଓପାଡ଼ି ପାରିନାହିଁ ।

ଶିକ୍ଷା ପ୍ରସରିବ, ଆର୍ଥିକ ଅବସ୍ଥା ସୁଧୁରିବ, ସାମାଜିକ ପ୍ରଥା ଓ ଚଳନ ବଦଳିବ, ଅନ୍ଧବିଶ୍ୱାସ ଅପସରିବ, ଧର୍ମକର୍ମର ଧାରଣା ମାର୍ଜିତ ହେବ, ତେବେ ଯାଇଁ ସୁରା-ରାକ୍ଷସର କବଳରୁ ମରଣପଥରଯାତ୍ରୀ ଆଦିବାସୀ ରକ୍ଷା ପାଇବ । କେବେ ଆସିବ ସେ ସୁଦିନ, ସୁକାନ୍ତ ବୁଝିପାରେ ନାହିଁ ।

ସେ ଏତିକି ଜାଣେ ଯେ, ସେ ଇଞ୍ଜିନିୟାର, ଯହିଁ ଯିବ ସେଠାରେ ସେ ମନପ୍ରାଣ ଦେଇ କାମ କରିବ । ନାଲ ବାନ୍ଧ ଭୂମିରେ ପାଣି ମଡ଼ାଇ ଦେଶର ଉତ୍ପନ୍ନ ବଢ଼ାଇବ, ନୂଆ ନୂଆ କୋଠାବାଡ଼ି ତୋଳିବ, ରାସ୍ତା ପିଟାଇ ଯାତାୟାତର ସୁବିଧା କରିବ, ଜଳପ୍ରପାତରୁ ବିଜୁଳି କାଢ଼ି ତାର ଖଞ୍ଜି ସହର ମୋଫସଲକୁ ଶକ୍ତି ଯୋଗାଇବ । ସେ ଇଞ୍ଜିନିୟାର, ଦେଶର ଗଠକ, ଗଠନର ରକ୍ଷକ । ସେ ଅଗ୍ରଗାମୀ । ସେ ପୁରୋହିତ, ପୁରର ହିତ ସାଧକ । ସେ ଏତିକି ଜାଣେ, ଏତିକି ବୁଝେ । ଏହି ଉଦ୍ଦେଶ୍ୟରେ ସେ କର୍ମରେ ବ୍ରତୀ ହୁଏ । ବ୍ଲଲନ୍‌ଗୁଡ଼ା ନାଲର ପାଣି କାହା ଜମିରେ ମାଡ଼ିବ, କାହାର ଧନ ବଢ଼ାଇବ ସେ କଥା ସେ ଭାବିବ ନାହିଁ ।

ସୁକାନ୍ତ କାଗଜ ଉପରୁ ଦୃଷ୍ଟି ଟେକିଲା । ରିଷ୍ଟ-ୱାଚ୍‌କୁ ଚାହିଁଲା । ରାତି ନଅଟା । ଉଚ୍ଚ ଟେବୁଲ ଉପରେ ପେଟ୍ରୋମାକ୍ସ ଜଳୁଛି । ଖୋଲା ଦରଜା ବାଟେ ବାହାରର ଅନ୍ଧାରିଆ ଅରଣ୍ୟ ଭିତରୁ ଶହ ଶହ ବିଭିନ୍ନ ଜାତିର ପତଙ୍ଗ ଆସି ଆଲୁଅକୁ ପରିକ୍ରମା କରୁଛନ୍ତି । କେତେ ଆସି ଟେବୁଲ ଉପରେ ପଡ଼ୁଛନ୍ତି । କେତେ ବସିଛନ୍ତି ସଫେଦ୍ କାନ୍ଥ ଉପରେ । ତିନି ଚାରୋଟି ଝିଟିପିଟି

ଦୂରେଇ ଦୂରେଇ କାନ୍ଥରେ ଲଟକିରହିଛନ୍ତି । ସୁବିଧା ଉଣ୍ଡି ଧାଇଁଆସି ପତଙ୍ଗଟି-ମାନଙ୍କୁ ଧରି ଗିଳି ଦେଉଛନ୍ତି । ପୁଣି କିଛି ନ ଜାଣିଲା ପରି ଚୁପ୍ ହୋଇ ଟାଙ୍କ ରହୁଛନ୍ତି । ଦେଖୁଛନ୍ତି ପତଙ୍ଗପଲର ନାଚ । ତନ୍ମୟ-ଭାବ, ଦୃଷ୍ଟିରେ ସାବାସ୍ ସାବାସ୍ ସଙ୍କେତ ।

ବୃନ୍ଦାବନଗୁଡ଼ା ଆଡ଼ୁ ଧାଙ୍ଗଡ଼ୀମାନଙ୍କର ଲହରିଆ ଲମ୍ବି ଲା ସ୍ୱର ରାତିର ଶୀତୁଳିଆ ପବନରେ ଭାସିଆସୁଛି । ଧାଙ୍ଗଡ଼ାମାନଙ୍କର ବିଭିନ୍ନ ବାଇଦର ଶବଦ ମିଶିଛି ସେଥିରେ ।

ସେମାନେ ବି ପତଙ୍ଗ ପରି । ସୁରୁଙ୍ଗି ଓ କେତେ ବାବୁଭାୟା ଝିଟିପିଟି ପରି ଟାଙ୍କ ବସିଥିବେ, ତା'ଙ୍କୁ ଧରି ଗିଳିବାକୁ ମନ କରୁଥିବେ, ଓଠ ଚାଟୁଥିବେ ।

ବୁଢ଼ା ପିଅନ ଅଗାଧୁ ଯିବାକୁ ଛଟପଟ ହେଉଥିଲା । ଭଦ୍ରେସି କରି ସୁକାନ୍ତର ଅନୁମତି ସେ ମାଗିଲା ନାହିଁ । ଶୋଷାଇ କରିବ କିଏ ? ସେ ତା'ର କର୍ତ୍ତବ୍ୟ ବୁଝେ । କେତେଥର ଆସି ଅନାଇଁ ଗଲାଣି । ବାବୁ କାମରେ ମନ ଦେଇଛନ୍ତି । ଅବାଗିଆ ବାବୁ ବୋଲି ତା'ର ଡର ।

ଚଉକିଦାରର ଯୁବତୀ ଝିଅ ସଙ୍ଗେ ସେ କଥାଭାଷା ହେଉଛି । ଅଗାଧୁର ପାଟି ଶୁଭୁନାହିଁ । ଝିଅଟାର ଖିଲିଖିଲି ହସ ଶୁଭୁଛି । ଚଉକିଦାର ବାରଣ୍ଡାରେ ବସି ଢୁଲାଉଛି । ଡମ ଲୋକ । ଅଳପ ମଦ ପିଇଛି । ତା'ର ଘରଣୀ ସାନ ସାନ ପିଲାଙ୍କୁ ଧରି କୁଡ଼ିଆ ଭିତରେ ଶୋଇଛି ।

ସୁକାନ୍ତଙ୍କୁ ଜଣା, ସୁରୁଙ୍ଗି ବୁଙ୍ଗିର ଜାଲ ଖେଳାଇଛନ୍ତି ।

ସୁକାନ୍ତ ମନେ ମନେ ହସିଲା । ଉଠିଲା । ନଥିପତ୍ର ଓ ନକ୍‌ସା ବାନ୍ଧି ଟେବୁଲର ଗୋଟିଏ ପାଖରେ ରଖିଲା । ଆଉ କେତେ କାମ ବାକି ଅଛି । ସରିବାକୁ ବୋଧହୁଏ ଆଉ ଦୁଇଦିନ ଲାଗିବ । ଦୁଇଦିନ କଟିଗଲାଣି । ବର୍ଷା ଭଲ ସମ୍ଭାଳିଛି । ଏହାପରେ ଶୁଖିଲା ପାଗ ହେଲେ ସୁରୁଖୁରୁରେ ସବୁ କାମ ସରିବ । ଦେହ ନିଶ୍ଚିନ୍ତ ହୋଇ ଫେରିବ ।

ସୁକାନ୍ତ ଅଗାଧୁକୁ ଡାକିଲା । ତା' ପଛେ ପଛେ ଆସିଲା ଶୋଭବତୀ, ଚନ୍ଦ୍ରକଦାରର ଝିଅ । ଦୁଇ ବର୍ଷ ଶାଶୁଘରେ କଟିଲଣି । ମଦୁଆ ବର କଥା-କଥାରେ ମାଡ଼ ଦିଏ ବୋଲି ବାରମ୍ବାର ସେ ବାପଘରକୁ ପଳେଇ ଆସେ । ବାପ ବୁଝାସୁଝା କରି ପୁଣି ଜୋଇଁ ସଙ୍ଗରେ ପଠାଇଦିଏ । ଆଉଥରେ ସେ ଶୁଦ୍ଧାଏ କରି ସବୁକଥା ସୁକାନ୍ତ ଆଗରେ କହୁଥିଲା, ପରାମର୍ଶ ମାଗୁଥିଲା ।

ଉତ୍ତର ପାଇଲା, ବୁଦ୍ଧିଙ୍କର ମନ ନ ମିଳୁଛି ତ ତୋ ଝିଅକୁ ଆଉ କେଉଁଠି ଭଲ ପାତ୍ର ଦେଖି ହଠାଇ ଦିଅ, ଚମ କୁଳରେ ତ ଚଳେ । ବାହାର ଲୋକେ ଏଥିରେ କିଛି କରି ପାରିବେ ନାହିଁ ।

ଶୋଭବତୀ ବୋଧହୁଏ କଳିଆ କରି ପୁଣି ଆଜି ଚାଲି ଆସିଛି । କାଲି ତ ସେ ନଥିଲା ?

ଉଣେଇଶି କୋଡ଼ିଏ ବର୍ଷର କଳା ମିଚମିଚ ଅଳପ ମୋଟାଳିଆ ବାଙ୍ଗର ଝିଅଟି । ଧଳା ଶାଢ଼ୀଟିଏ ପିନ୍ଧିଛି । ଦେହରେ ନାଲି ଛିଟର ବ୍ଲାଉଜ୍ ମୋଟାଳିଆ ଅଙ୍ଗକୁ ଅଣ୍ଟାଳରେ ଗୁଡ଼ାଇ ଧରିଛି । ଗୋଲ ଓ ମାଉଁସିଆ କଳାକଳା ମୁହଁ ଜଡ଼ା ତେଲ ମାଲିସ ହୋଇ କୁନ୍ଦାପରି ଦିଶୁଛି । କଳା-ବାଳର ଖୋସାରେ ଗୁଡ଼ା ହୋଇଛି, ବଉଳ ଚୋଳା ଧଳା ଓ ମହକ ଫୁଲମାଳ ।

ଶୋଭବତୀ ଘରବାହାରେ ଠିଆ ହୋଇ ଭିତରକୁ କଣେଇଁ ଚାହୁଁଛି । ମୋଟା ମୋଟା ଓଠ ଦୁଇଟାଲରୁ ଧୋବଳ ନୀରବ ହସ ଖସି ପଡ଼ୁଛି ।

ଅଗାଧୁ କହିଲା, ଡେରି ହେଲାଣି ଆଜ୍ଞା, ଆଜି ସେତିକି କାମ କରି-ଥାଆନ୍ତୁ । ଭଗବାନ୍ ପରିଶ୍ରମ କଲେ, ଉପାୟ ରହିଲେ, ରାତି ଅଧ ହେଲା, ଆଉ କଅଣ ?

ଆଚ୍ଛା, ଏଥର ଖାତା ବାନ୍ଧ । ଏ ଅମୂଲ୍ୟ ପଦାକୁ ନେଇ ନାଲଟେନଟା ବାରଣ୍ଡାକୁ ଆଣି ରଖ । କେତେ ପୋକ ଦେଖୁଛ ତ ? ଘରଭିତର ଭଲ କରି ଓଲାଇଦିଅ । ଚନ୍ଦ୍ରକଦାର କୁଆଡ଼େ ଚଳି ?

ଡୁବେଇ ଡୁବେଇ କାନ୍ଥରେ ଲଟିଯାଉଛନ୍ତି । ସୁବିଧା ଦେଖି ଧାଇଁଆସି ଟିକଟିକି-ମାନଙ୍କୁ ଧରି ଗିଳି ଦେଉଛନ୍ତି । ପୁଣି କିଛି ନ ଜାଣିଲା ପରି ଚୁପ ହୋଇ ଚାହିଁ ରହୁଛନ୍ତି । ଦେଖୁଛନ୍ତି ପତଙ୍ଗପଲର ନାଚ । ତନ୍ମୟ-ଭାବ, ଦୃଷ୍ଟିରେ ସାବାସ୍ ସାବାସ୍ ସଙ୍କେତ ।

ସ୍ୱାଲାନ୍‌ଗୁଡ଼ା ଆଡ଼ୁ ଧାଙ୍ଗଡ଼ୀମାନଙ୍କର ଲହରିଆ ଲମ୍ବିଲା ସ୍ୱର ସାଥିରେ ଶୀତୁଆ ପବନରେ ଭାସିଆସୁଛି । ଧାଙ୍ଗଡ଼ାମାନଙ୍କର ବିଭିନ୍ନ ବାଇଦର ଶବଦ ମିଶିଛି ସେଥିରେ ।

ସେମାନେ ବି ପତଙ୍ଗ ପରି । ସୁରୁଚି ଓ କେତେ ବାବୁଭାୟା ଟିକିଟିକି ପରି ଚାହିଁ ବସିଥିବେ, ତା'କୁ କରି ଗିଳିବାକୁ ମନ କରୁଥିବେ, ଓଠ ଚାଟୁଥିବେ ।

ବୁଢ଼ା ପିଅନ ଅଗାଧୁ ଯିବାକୁ ଛଟପଟ ହେଉଥିଲା । ଭରସି କରି ସୁକାନ୍ତର ଅନୁମତି ସେ ମାଗିଲା ନାହିଁ । ଗୋସାଇ କରିବ କଏ ? ସେ ତା'ର କର୍ତ୍ତବ୍ୟ ବୁଝେ । କେତେଥର ଆସି ଅନାଇଁ ଗଲାଣି । ବାବୁ କାମରେ ମନ ଦେଇଛନ୍ତି । ଅବାଗିଆ ବାବୁ ବୋଲି ତା'ର ଡର ।

ଚଉକିଦାରର ଯୁବତୀ ଝିଅ ସଙ୍ଗେ ସେ କଥାଭାଷା ହେଉଛି । ଅଗାଧୁର ପାଟି ଶୁଭୁନାହିଁ । ଝିଅଟାର ଖିଲିଖିଲି ହସ ଶୁଭୁଛି । ଚଉକିଦାର ବାରଣ୍ଡାରେ ବସି ଢୁଲାଉଛି । ଦମ ନିଶା । ଅଳପ ମଦ ପିଇଛି । ତା'ର ଘରଣୀ ସାନ ସାନ ପିଲାଙ୍କୁ ଧରି କୁଡ଼ିଆ ଭିତରେ ଶୋଇଛି ।

ସୁକାନ୍ତକୁ ଜଣା, ସୁରୁଚି ବୁଦ୍ଧିର ଜାଲ ଖେଳାଇଛନ୍ତି ।

ସୁକାନ୍ତ ମନେ ମନେ ହସିଲା । ଉଠିଲା । ନଥିପତ୍ର ଓ ନକ୍‌ସା ବାନ୍ଧି ଟେବୁଲର ଗୋଟିଏ ପାଖରେ ରଖିଲା । ଆଉ କେତେ କାମ ବାକି ଅଛି । ସରିବାକୁ ବୋଧହୁଏ ଆଉ ଦୁଇଦିନ ଲାଗିବ । ଦୁଇଦିନ କଟିଗଲାଣି । ବର୍ଷା ଭଲ ସମ୍ଭାଳିଛି । ଏହିପରି ଶୁଖିଲା ପାଗ ହେଲେ ମୁରୁଖୁରୁରେ ସବୁ କାମ ସରିବ । ସେ ନିଶ୍ଚିନ୍ତ ହୋଇ ଫେରିବ ।

ସୁକାନ୍ତ ଅଗାଧୁକୁ ଡାକିଲା । ତା' ପଛେ ପଛେ ଆସିଲା ଶୋଭାବତୀ, ଚନ୍ଦ୍ରକଦାରର ଝିଅ । ଦୁଇ ବର୍ଷ ଶାଶୁଘରେ ଚଳିଲାଣି । ମଦୁଆ ବର କଥା-କଥାରେ ମାଡ଼ ଦିଏ ବୋଲି ବାରମ୍ବାର ସେ ବାପଘରକୁ ଚାଲି ଆସେ । ବାପ ବୁଝାସୁଝା କରି ପୁଣି ଜୋଇଁ ସଙ୍ଗରେ ପଠାଇଦିଏ । ଆରଥର ସେ ଗୁହାରି କରି ସବୁକଥା ସୁକାନ୍ତ ଆଗରେ କହୁଥିଲା, ପରାମର୍ଶ ମାଗୁଥିଲା ।

ଉତ୍ତର ପାଇଲା, ବୁଦ୍ଧିଙ୍କର ମନ ନ ମିଳୁଛି ତ ତୋ ଝିଅକୁ ଆଉ କେଉଁଠି ଭଲ ପାତ୍ର ଦେଖି ଉଠାଇ ଦିଅ, ତମ କୁଳରେ ତ ଚଳେ । ବାହାର ଲୋକେ ଏଥିରେ କିଛି କରି ପାରିବେ ନାହିଁ ।

ଶୋଭାବତୀ ବୋଧହୁଏ କଜିଆ କରି ପୁଣି ଆଜି ଚାଲି ଆସିଛି । କାଲି ତ ସେ ନଥିଲା ?

ଉଣେଇଶି କୋଡ଼ିଏ ବର୍ଷର କଳା ମିଚମିଚ ଅଲପ ମୋଟାଲିଆ ଡାଙ୍ଗର ଝିଅଟି । ଧଳା ଶାଢ଼ୀଟିଏ ପିନ୍ଧିଛି । ଦେହରେ ନାଲି ଛିଟର ବ୍ଲାଉଜ୍ ମୋଟାଲିଆ ଅଙ୍ଗକୁ ଅଣ୍ଟାକରି ଗୁଡ଼ାଇ ଧରିଛି । ଗୋଲ ଓ ମାଉଁସିଆ ଝଲଝଲା ମୁହଁ ଜଡ଼ା ତେଲ ମାଲିସ ହୋଇ କୁନ୍ଦଲିପରି ଦିଶୁଛି । କଳା-ବାଳର ଖୋସାରେ ଗୁଡ଼ା ହୋଇଛି, ବଣରୁ ତୋଳା ଧଳା ଓ ମହକ ଫୁଲମାଳ ।

ଶୋଭାବତୀ ଘରବାହାରେ ଠିଆ ହୋଇ ଭିତରକୁ କଣେଇଁ ଚାହୁଁଛି । ମୋଟା ମୋଟା ଦୁଇ ଗାଲରୁ ଧୋବଲ ନୀରବ ଲୁହ ଖସି ପଡ଼ୁଛି ।

ଅଗାଧୁ କହିଲା, ଡେରି ହେଲାଣି ଆଜ୍ଞା, ଆଜି ସେତିକି କାମ କରି-ଥାଆନ୍ତୁ । ଦିନସାରା ପରିଶ୍ରମ କଲେ, ଉପାସ ରହିଲେ, ରାତି ଅଧ ହେଲା, ଆଉ କଅଣ ?

ଅଚ୍ଛା, ଏଥର ଶୀଘ୍ର ବାଢ଼ । ଏ ଆଲୁଅ ପଦାକୁ ନେଇ ନଳଟେଣା ବାରଣ୍ଡାରୁ ଆଣି ରଖ । କେତେ ପୋକ ଦେଖୁଛ ତ ? ଘରଭିତର ଭଲ କରି ଓଳାଇଦିଅ । ଚନ୍ଦ୍ରକଦାର କୁଆଡ଼େ ଗଲା ?

କାନ୍ଥକୁ ଆଉଜି ଠେଙ୍ଗା ଧରି ଜଗି ବସିଥିଲା ଅଙ୍କା, ଆଜି ସେ ପେଟେ ପିଇ ଦେଇଛି । ବାରଣ୍ଡା ଉପରେ ଟଳି ପଡ଼ିଲାଣି । ଠେଙ୍ଗାକୁ ଜାବୁଡ଼ି ଧରିଛି । ସ୍ୱେରଟସ୍ୱର, କି ବଣଜନ୍ତୁ ଆସିଲେ ସେଇ ଠେଙ୍ଗାକୁ ଦେଖି ଡରି ପଳାଇବେ ।

ଅଗାଧୁ ହସିଲା । ସୂର୍ଯ୍ୟକାନ୍ତ ହସିଲେ । ବାରଣ୍ଡା ଉପରେ କବାଟକୁ ଆଉଜି ଠିଆ ହୋଇଥିବା ଶୋଭାବତୀ ହାତ ଟେକିଲା । ଅଳପ ଖଙ୍କିଲା ସ୍ୱରରେ ଭଡ଼ମୋଡ଼ ହେଲା । ଅଣ୍ଟା ପାଖରୁ ପଛ ଆଡ଼କୁ ଅଳପ ବଙ୍କେଇ, ଦୁଇପାଟି ଧୋବଦାନ୍ତ ଦେଖାଇ ହିଁ ହିଁ କରି ହସିଉଠିଲା ।

ସୂର୍ଯ୍ୟକାନ୍ତର ମନରେ ଭାବନା ଆସିଲା, ମଦୁଆ ଚଉକିଦାରଟାକୁ ବରଖାସ୍ତ କରି ଆଉ ଗୋଟିଏ ଭଲ ଚଉକିଦାର ନିଯୁକ୍ତ କରିବ । ବଙ୍ଗଳାପରେ ଦରକାରୀ ଟେବୁଲ, ଚଉକି, କୋଚ୍, ଡାଙ୍କ ଇତ୍ୟାଦି କେତେ ପଦାର୍ଥ ରଖାହୋଇଛି । ମଦୁଆଟାର ଦାୟିତ୍ୱରେ ଛାଡ଼ି ଓଭରସିଅର ବାବୁ ନିଶ୍ଚିନ୍ତ ରହିଛନ୍ତି କିପରି ?

ଓଭରସିଅର ଅମ୍ବିକାଚରଣ ପ୍ରୌଢ଼ । ପିଲାପିଲି ଧରି ସେ ସ୍ୱଭାବ-ଗୁଡ଼ାରେ ରହନ୍ତି । ସାତଟି ସନ୍ତାନ । ସବୁଗୁଡ଼ିକ ପୁଅ । ଲୋକେ ତାଙ୍କୁ ଭାଗ୍ୟବାନ୍ କହନ୍ତି । ବଡ ତିନି ପୁଅ ସମ୍ବଲପୁରରେ ପଢ଼ନ୍ତି, ଘରେ ବୁଢ଼ାବାପାଙ୍କ ପାଖରେ ରହନ୍ତି । ସେମାନଙ୍କ ତଳେ ଜନମିଲା ପୁଅ ଦୁଇଟି ମାମୁଘର ସୁନ୍ଦରଗଡ଼ରେ ରହି ପଢ଼ନ୍ତି । ସାନ ଦୁଇଟି ତାଙ୍କ ପାଖରେ । ସେ ଧର୍ମୀ ଘରର ପୁଅ । କାର୍ଯ୍ୟଦକ୍ଷ, ସଚ୍ଚୋଟ ଓ ସ୍ନେହୀ । ଭଗବଦ୍ ଗୀତା କଣ୍ଠସ୍ଥ କରିଛନ୍ତି । ସବୁବେଳେ ଅନୁଭୂତି ଶୁଣାଇବାକୁ ବ୍ୟଗ୍ର । ମନରେ ଦୟାଭାବ ଥାଏ । ତେଣୁ, ମଦୁଆ ଚଉକିଦାରଟାକୁ କାର୍ଯ୍ୟରୁ ଅନ୍ତର କରିବାକୁ ଚାହାନ୍ତି ନାହିଁ ।

ଦୋଷ ତା'ର ଆଇପାରେ ଅଙ୍କା, ଦୋଷ ତା'ର ପିଲା କୁଟୁମ୍ବଙ୍କର ନୁହେଁ । ସେମାନେ ଖାଇବାକୁ ନ ପାଇ ମରିଯିବେ । ଏ ଲୋକଟା ଚାକିରିରୁ ଗଲେ ଚୋରି କରିବ । ଆଉ, ମୁଁ ତାକୁ ବାରେଇ ଦେବି ।

ମହୁଆଟା ଉପରେ ନିର୍ଭର କରିବା ଉଚିତ କି ?

କେତେ ମହୁଆ ତ କେତେ ବଡ଼ବଡ଼ କାମର ଦାୟିତ୍ୱ ମୁଣ୍ଡରେ ବୋହି ଚାଲିଛନ୍ତି ଆଜି, କେତେ ପୁଣି ଉଡ଼ାଜାହାଜରେ ଉଡ଼ି ଲୋକଙ୍କର ଭାଗ୍ୟ ନିୟନ୍ତ୍ରଣ କରୁଛନ୍ତି, ଏଇଟା ତ ଘରର ଚଉକିଦାରଟା !

ଶୋଭାବତୀର ଦେହ, ଭଙ୍ଗୀ, ଚାହାଣି ଓ ହସ ବି କହୁଛି, ସେ ମୋ ବାପା, ସେ ରହୁ ।

ଶୋଭାବତୀ ନିଠେଇ ନିଠେଇ ଘର ସଫା କରିଛି, ବିଛଣା ଝାଡ଼ିଛି । ମନକୁ ମନ ଗୁଣୁଗୁଣୁ ହୋଇ ଗୀତ ବୋଲିଛି । ଘର ଭିତରେ ଫୁଲର ମହକ ଭରିଛି । ହସର ରଜତ ଲହଡ଼ି ଛୁଟାଇଛି । ଯୌବନ ଟଳଟଳ ଉଚ୍ଛଳ ଅଙ୍ଗର ଭଙ୍ଗିମା ଢାଳିଛି । ରହି ରହି ହୋଇ ପଦାକୁ ଯାଇ ଅପେକ୍ଷା କରିଛି ।

ଅଗାଧୁ ଭାତ, ଡାଲି, ଢ଼ଅଣ, ଖଟା, ଟେବୁଲ ଉପରେ ବାଢ଼ି ଦେଇଛି । ନୀରବରେ ସୁକାନ୍ତ ସବୁ ଉଦରସ୍ଥ କରିଛି । କେଉଁଟା ଅଲଣା, ଲୁଣିଆ, ଘୁଗୁଆ, ଦରସିଝା କି ଦରପୋଡ଼ା, ସେ ଜାଣିପାରିନାହିଁ । ଶୋଭାବତୀର ଉପସ୍ଥିତି, ମନ ଭିତରେ ତା'ର ଚଳନ ସବୁ ସୁଆଦ କରିଛି । ସେ ଶାନ୍ତିରେ ମୁଠିଏ ଖାଇଛି ।

ସୁକାନ୍ତ ପଚାରିଲା, ଏତେ ରାତିରେ ନାଟ ଦେଖିବାକୁ ଉତ୍ତମ ଚାଲିନଗୁଡ଼ା ଯିବାକୁ ମନ କରିଛ କି ଅଗାଧୁ ? ଅନ୍ଧାର ରାତି, ଜଙ୍ଗଲିଆ ବାଟ, ଯିବ ଯଦି ଲଣ୍ଠନ ନେଇଯାଅ, ନୋହିଲେ ମୋ'ର ଟର୍ଚ୍ଚଟା ନେଇଯାଅ । ଠେଙ୍ଗାଟିଏ ବି ହାତରେ ଧର । ଆଉ କାହାକୁ ସାଙ୍ଗରେ ନେଇଯିବ । ଫେରିଲା ବେଳକୁ ଅନେକ ସାଙ୍ଗ ମିଳିବେ ।

ସୁକାନ୍ତ ହାତ ଧୋଇବାକୁ ପଦାକୁ ଆସିଲା । ଶୋଭାବତୀର କଡ଼ ଦେଇ ବାରଣ୍ଡା ଧାରକୁ ଗଲା । କଣେଇଁ ଚାହିଁଲା । ବାରଣ୍ଡାରେ ପେଟ୍ରୋମାକ୍ସ [illegible] । କାନ୍ଥପାଖରେ ଚଉକିଦାର ଶୋଇଛି । ଠେଙ୍ଗାଟି ହାତରୁ ଖସି ପଡ଼ିଲାଣି ।

ଶୋଭବତୀ ପୁଣି ଘରଭିତରେ ପଶିଲଣି । ଟେବୁଲ ଉପରୁ ଅଁଠା ବାସନ ଉଠାଉଛି । କହୁଛି, ପାଖରେ ଆଲୁଅ ଓ ହାତରେ ଠେଙ୍ଗା ଥିଲେ ବଣଜନ୍ତୁ କଡକ ଅସନ୍ତି ନାହିଁ । ଧାଙ୍ଗଡ଼ୀନାଚ ଦେଖିବାକୁ ମନ ହେଉଛି ତ ଯାଉନ ଯେଉଁଏ ବୁଲି ଆସିବ ।

ତୁ ଯିବୁ କି ମୋ ସାଙ୍ଗରେ ?

ଯାଇଥିଲେ ଦନ୍ତୁରେ ଯାଇଥାଅନ୍ତି । ବାଘଭାଲୁଙ୍କୁ ମୋର ଡର ନାହିଁ ଯେ, ଡର ମୋର ସେଇ ମଦୁଆ ଗେରସ୍ତଙ୍କୁ । ନାଚ ଦେଖିବାକୁ ଆସିବ ତ । ମତେ ଦେଖିଲେ ଲଜଆ କରିବ, ହାତ ଧରି ଭିଡ଼ିବ, ଅଡ଼ିବସିଲେ ମାଡ଼ ଦେବ । ମୁଁ ଯିବ ନାହିଁ । ତମେ ଯାଅ ଅଗାଧୁବାବୁ, ଡର ନାହିଁ ।

ଶୋଭବତୀ ବାସନ ଆଣି ପଦାରେ ରଖିଲା । ଅଗାଧୁ ପଲଙ୍କ ଉପରେ ମଶାରି ପକାଇଲା । ସୁକାନ୍ତ ଘର ଭିତରକୁ ଆସିଲା । ମନ ପ୍ରଶ୍ନ ପଚାରିଲା, ଯିବ କି ? ଶୋଭବତୀର ସାନ୍ନିଧ ମନକୁ ଉସୁକେଇଲା, କହ ମ, ଯାଅ ଅଗାଧୁ, ଡରୁଛ କାହିଁକି ? ବାଘଭାଲୁ ଆଲୁଅ ଦେଖିଲେ ପାଖକୁ ଆସିବେ ନାହିଁ ।

ସୁକାନ୍ତର ତୁଣ୍ଡରୁ କଥା ବାହାରିଲା ନାହିଁ ।

ଅଗାଧୁ ଉତ୍ତର ଦେଲା, ନାଚ ଦେଖି ଦେଖି ବୁଢ଼ା ହେଲିଣି ଲୋ ଟୋକୀ, ଆଉ ଦେଖିବାକୁ ମୋର ମନ ନାହିଁ । ଫିଷ୍ଟ ହେବ ବୋଲି ସୁବୁଦ୍ଧି ଡାକୁଥିଲେ । ଆଗରୁ ଯାଇଥିଲେ ରନ୍ଧାବଢ଼ାରେ ସାହାଯ୍ୟ କରିଥାଆନ୍ତି । ସେ କାମ ସରିବଣି । ଯିବି ନାହିଁ ।

ଝିଅପିଲା ପରି ନଥିବ ମ, ଶୋଭବତୀ କହିଲା, କେତେ ବେଳୁ ହଣା ହୋଇଥିଲେ, ଟିକିଏ ଘୁଞ୍ଚିବ, ନାଚ ଦେଖିବ—

ମୋ ହାକିମଙ୍କଠୁ ମୁଁ ବଡ଼ ଲୁହେଁ । ଆଜି ବାଇଗଣ ଝୋଳ ତ ଆମର ଫିଷ୍ଟ । ବାଟରେ ଯଦି ବାଘ ଝାମ୍ପିଦିଏ, ସୁବୁଦ୍ଧି କି ଆଉ କେହି, ମୋର ଛଅ ପୁଅ, ଦୁଇ ଝିଅ, ଆଉ ଘେଙ୍ଗଣା ଘରଣୀ ତୁଣ୍ଡରେ ବାଲିଭୋଗଣି

ମଧ୍ୟ ଦେବାକୁ ଯିବେ ନାହିଁ । ମାଗିବାକୁ ଗଲେ ମାରଗୋଡ଼ାଇବେ । ଏ ମଲ୍ଲ-ଗଲ୍ପ ସଂସାରରେ କେହି କାହାର ନୁହେଁ ।

ସତ କହିଲ ଅଗାଧୁ !

ସୂର୍ଯ୍ୟକାନ୍ତର ଆଖି ଆଗରେ ଘର ବାହାରେ, ଦ୍ୱାରବନ୍ଧ ସେପାଖେ ଶୋଭାବତୀ ଠିଆହୋଇଛି । ପେଟ୍ରୋମାକ୍ସର ଉଜ୍ଜ୍ୱଳ ଆଲୁଅ ତା'ର ଝଜଲଜଲା ଚକ୍ ଚକ୍ ମୁହଁ ଓ ଦ'ପାଟି ମୁକ୍ତା ଧବଳ ଦାନ୍ତକୁ ଝଟକାଉଛି । ଆଖିର ତେଜ ଝଲସି ଉଠୁଛି । ଛୁଟପେଗ୍ର ସବଢଆ ବକ୍ଷଉପର ବସନ ଉଜ୍ଜ୍ୱଳ ଆଲୋକରେ ବଢ଼ିମା ପ୍ରକାଶୁଛି । ସଗର୍ବ ସମାବେଶ ।

ଦୁଧାଶଗ୍ରାମ ପାଖର ଦେଓମାଳ ପର୍ବତର ଯୁଗଲ ଶୃଙ୍ଗ ସତେ, କେବଳ କୋରାପୁଟ ଜିଲ୍ଲାର ନୁହେ, ସାରା ଉତ୍କଳର ଉଚ୍ଚତମ ଶୃଙ୍ଗ ଦୁଓଟି, ୫୫୦୦ ଫୁଟ ଉଚ୍ଚ ! ପୂର୍ବଘାଟ ପର୍ବତମାଳର ଉନ୍ନତ ଯୁଗ୍ମ ବକ୍ଷ । କୋରାପୁଟ ସହରର କେଉଁ ଉଚ୍ଚ ପାହାଡ଼ ଉପରେ ଠିଆହୋଇ ଉତ୍ତର-ପୂର୍ବ ଦିଗକୁ ଚାହିଁଲେ ଦୃଷ୍ଟିରେ ପଡ଼େ ।

ଦେଖ ରମା, କହ ତ କପରି ଦିଶୁଛି ?

ବଜାରପଛ ଉଚ୍ଚ ଲଣ୍ଡାପାହାଡ଼ ଉପରେ ସୂର୍ଯ୍ୟକାନ୍ତର ହାତ ଧରି ଠିଆ ହୋଇଛି ରମା । ଜ୍ୟୋତ୍ସ୍ନାର ଶେଷଭାଗ । ସଞ୍ଜର ଶୀତଳ ପାତଳ ଧବଳିମା ଧୀରେ ଧୀରେ ମଳିନ ହୋଇଆସୁଛି । ଦୁଧାଶ ପାହାଡ଼ର ଶୃଙ୍ଗ ଦୁଓଟିକୁ ବେଷ୍ଟନ କରିଛି ଈଷତ୍ ରଜତ ରଙ୍ଗର ପାତଳ ବଉଦଟିଏ । ପାହାଡ଼ମାଳ ଦୂରରୁ ଦିଶୁଛି ଚିତ୍ ହୋଇ ଶୋଇଥିବା ତରୁଣୀଟି ପରି, ମୁକୁଳା କେଶ, ଉନ୍ନତ ସ୍ତନ, ଗୋଡ଼ ଲମ୍ବିଛି ।

ସୁନ୍ଦର ଦିଶୁଛି ମ ସତେ, ଶୋଭାର ଭଣ୍ଡାର ଏ ସ୍ଥାନ, ଯୁଆଡ଼େ ଚାହିଁଲେ ଆଖି ଲାଗିରହେ ।

ଶୋଇଥିବା ନାରୀ ପରି ଦିଶୁନାହିଁ କି ?

ଅନୁମାନ କଲେ ସବୁ ପରି ଦିଶିବ, ଆକାଶ ଛାତିରେ ରଙ୍ଗରଙ୍ଗର କାୟା ବଦଳାଇ ଚାଲିଥିବା ମେଘମାଳ ପରି । ମଣିଷ, ବିଭିନ୍ନ ପଶୁ, ପର୍ବତମାଳ, ନଦୀ, ବାଲି ପନ୍ତାର, ରଥ, ମନ୍ଦିର, ସମୁଦ୍ର— ।

ସତେ ରମା !

ହଁ ମ, ମଣିଷ ମନର ଭାବନା ତା ଆଖିରେ ରୂପ ଗଢ଼େ, ଆକାରରେ ଭେଳିକି ଲଗାଏ । ଚାଲ, ଫେରିଯିବା, ଜୁନୁ ମୋର ଖୋଜୁଥିବ, ଅଝଟ ଲଗାଇଥିବ, କାନ୍ଦୁଥିବ କି କଅଣ ।

ଶୋଭାବତୀ ଅଇଁଠା ବାସନ ଧରି ଠିଆହୋଇଛି, ରହିରହି ହେଉଛି, ମୁହଁରେ ଅଉ ହସ ନାହିଁ ।

ସୁକାନ୍ତ ଦୃଷ୍ଟି ଫେରାଇଲେ । କୋଠରୀ ଭିତରେ ପଶି କବାଟ କିଲିଲେ । ଟେବୁଲ୍ ପାଖକୁ ଆସି ଥକ୍‌କା ହୋଇ ଠିଆହେଲେ । ଅନୁଭବ କଲେ, ଦେହ ଥରୁଛି, ମନରେ ତାରୁଣ୍ୟର ତରଙ୍ଗ ଛୁଟିଛି । ଅନୁଭବ କଲେ, ସତେ କି ଫୁଲର ମହକ ପ୍ରକୋଷ୍ଠକୁ ସୁବାସିତ କରୁଛି, ଯୌବନର ତରଙ୍ଗ ଛୁଟିଛି, ନୀରବ ହସରେ ଫେନ ସ୍ୱପ୍ନମାନ ।

ମନରେ ଉଚ୍ଚାଟ ଭାବ ।

ପାଖରେ ଶୋଭାବତୀ ନାହିଁ, ଅଛି ରମା—ଫର୍ ଫର୍ କେଶ, ସଜଳ ଆଖି, ମଉଳ ମୁହଁ, ଅଶାନ୍ତ ଓଠ ।

ସେ ଟେବୁଲ ଡ୍ରୟର ଟାଣିଲେ । ମନି-ବ୍ୟାଗ୍‌ଟି କାଢ଼ି ଖୋଲିଲେ, ନୋଟ୍-ଗୁଡ଼ିକ ଅଛି । ଚେକ୍‌ବୁକ ମଧ୍ୟ ଅଛି । ରମାର ଶ୍ରେଷ୍ଠ ଫଟୋଟି ନାହିଁ । ଭଲକରି ଖୋଜିଲେ । ନାହିଁ ତ । ଗଲା କୁଆଡ଼େ ? କେଉଁଠି ହଜିଲା ? ହଜିବ କିପରି ? କିଏ ଆଣି ନେଇଗଲା ? ଏତେ ସାହସ ହେବ କାହାର ?

ବୁଝିଲେ । ଅଭିମାନିନୀ ରମା ନିଜେ କାଢ଼ି ରଖିଛନ୍ତି । ମନକୁ ମନ କହି-ହୋଇଥିବେ, ରାଗିଲ ତ, ନଖାଇ ନପିଇ ଫୋପଡ଼ା କଚଡ଼ା କରି ଚାଲିଗଲ, ବେହିଆପଣ କରି ମୋ ଫଟୋଟା ସଙ୍ଗରେ ଘେନି ତମେ ବୁଲିବ କାହିଁକି ? ଜାଣି ନଜାଣିଲାପରି ଅନ୍ୟମାନଙ୍କୁ ଦେଖାଇବାର ସୁବିଧା ଦେବ, ପଚାରିଲେ କହିବ, ଏ ମୋର ସ୍ତ୍ରୀ । ସେତିକି ଆଉ ତମର ସୁଆଗ । ମୁଁ ରହିଲି, ମୋର ଫଟୋ ବି ରହିବ ।

ସୁକାନ୍ତ ବ୍ୟାଗ୍‌ଟି ଟେବୁଲ ଉପରେ ରଖିଲା । ମନକୁ ମନ ହସି କହିଲା ରମାର ସ୍ମୃତିକୁ, ଫଟୋଟା ସିନା ନେଲ, କିଏ ନେଇ ପାରିବ ମୋ ମନରୁ ?

ଆଖିକୁ ନିଦ ଆସୁନାହିଁ ।

ମନ ଚଞ୍ଚଳ ହୋଇଉଠିଛି । ଆଖି ବୁଜି ସେ ଶୋଇବାକୁ ଚେଷ୍ଟା କରୁଛି । ଅସଂଲଗ୍ନ ବାରଗଣ୍ଡାଳିଆ ଭାବନା କେତେ ଘଟଣାର କେତେ ଅଂଶ ରୂପାୟନ କରୁଛି ମନର ପୁରୁଣା ପରଦା ଉପରେ ।

ଚଉବିଶ ବର୍ଷର ସେ ଯୁବକ । କେତେ ଅଭିଜ୍ଞତା—ସୁଖ ଦୁଃଖ, ହସ କାନ୍ଦ, ଆଶା ଦୁରାଶା, ସାଫଲ୍ୟର ଉତ୍ତେଜନା ଓ ବିଫଳତାର ଗ୍ଲାନିଥିବା ନୈରାଶ୍ୟ, ଦେହ ଓ ମନରେ ଭେଦିଛି ।

ସେଇ ଦେହଟା ଅଛି । ବଢ଼ି ଉଠିଛି, ଗଢ଼ି ଉଠିଛି । ସମସ୍ତେ ତାକୁ ଆଉସି ଆଉସି ବଳିଷ୍ଠ କରିଛି ।

ହେଇ ମନଟା, କାହିଁ ତା'ର ପୂର୍ବ ରୂପ ? ଅଭିଜ୍ଞତାର ଅଜଣା ସ୍ପର୍ଶ ବୋଳିହୋଇ ସେ ଏକାଥରକେ ବଦଳିଯାଇଛି । ବଦଳୁଛି ନିତି । ଯଦି ତା'ର ଆକାର ପ୍ରକାର ରଙ୍ଗରସ ଥାଆନ୍ତା, ଯଦି ସେ ଦେହରୁ ବାହାରି, ନିଜରୂପ ଧରି, ସବୁ ଅଭିଜ୍ଞତାର ପୋଷାକ ପିନ୍ଧି, ଆଗରେ ଠିଆ ହୋଇ ପାରୁଥାଆନ୍ତା, ଅନ୍ୟ କାହା କଥା ପଛରେ କଥ, ନିଜେ ସୁକାନ୍ତର 'ମୁଁ' ଆଜିକା ମନକୁ କାଲି ହେଲେ ଠାବକରି ପାରନ୍ତା ନାହିଁ । କାହିଁ କାହିଁ ବୋଲି ହାଇଁପାଇଁ ହୋଇ ଦୁନିଆଁ ଭ୍ରମନ୍ତା । ସେ ନାହିଁ ସେ ନାହିଁ ବୋଲି ଭ୍ରମରେ ପଡ଼ନ୍ତା ।

ଚଉବିଶ ବର୍ଷର ଯୁବକ ସେ, ଛେଚାପିଟା ମଣିଷ । ତା'ର ଅତୀତ ସଙ୍ଗେ ଯେଉଁ ସ୍ଥାନକାଳପାତ୍ରମାନେ ଅତି ଘନିଷ୍ଠ ଭାବରେ ଜଡ଼ିତ ଥିଲେ, ମନ ଓ ଚଳନ ଉପରେ ବିବିଧ ପ୍ରଭାବ ପକାଇ ତାକୁ ବଦଳାଇଥିଲେ, ସେମାନେ ଅତୀତର ଅନ୍ଧାର ଭିତରେ, କାହିଁ କେତେ ଦୂରରେ ରହିଲେଣି । ସ୍ମୃତିର ଆଲୁଅରୁଡ଼ିକ ମିଟିମିଟି ହେଉଛନ୍ତି । କେତେ ଲିଭି ସାରିଲେଣି, ହଜି

ଯାଉଛନ୍ତି । କେତେ ଅସ୍ପଷ୍ଟ ହେଲେଣି, ଅସ୍ପଷ୍ଟ ହୋଇ ଆସିଲେଣି । ଆଉ କେତେ ଏବେ ବି ଉଜ୍ଜ୍ୱଳ ଦିଶୁଛନ୍ତି । ସେ ସବୁ ସମୟର ବ୍ୟବଧାନ ଉପରେ ନିର୍ଭର କରୁନାହିଁ । ସମ୍ପର୍କ ଓ ଜୀବନ ଏବଂ ମନ ଉପରେ ସେମାନଙ୍କର ପକାଇଲା ପ୍ରଭାବର ଦୃଢ଼ତା ଓ ଘନିଷ୍ଠତା ଉପରେ ନିର୍ଭର କରୁଛି ।

ଶୋଭାବତୀ ସୁନ୍ଦରୀ ନୁହେଁ । ସେ ବିବାହିତା । ଦୁଏକ ଅତ୍ୟାଧୁନିକା । ସେ ଦରିଦ୍ର । ରୂପବତୀ ନାରୀର ସ୍ୱାମୀ ସେ ସୁକାନ୍ତ, ଦୁଇଟି ସନ୍ତାନର ଜନକ, ତଥାପି ତାଆର ତାରୁଣ୍ୟ ଶୋଭାବତୀର ଅରପିଲା ଅଣ୍ଟା ଦେହକୁ ଟେକ ଦେଇ ଯାଉଁ ଟି ନେବାକୁ କାରୁଣ୍ୟ କରିଥିଲା । ଅପବିତ୍ର କାମନାକୁ ଶାସନ କରି କିଏ ଦେହ ତଳିଲା ଟଳିଲା କାମନାର ଫଣାକୁ ନୁଆଁଇ, ପୋଷା ମନାଇ, ମନର ପେଡ଼ିରେ ସୁଧାର ହୋଇ ଶୋଇବାକୁ ବାଧ୍ୟ କରିଥିଲା ?

ଅନୁଗତ ଅଗାଧୁ ପିଅନ, ସେ ଅଗରେ । ସ୍ନେହମୟୀ ରମାର ସ୍ମୃତି, ସେ ପଛରେ, କେତେ ଦୂରରେ । ସେମାନେ ଗୁହିଁ ରହିଛନ୍ତି ।

ସେମାନେ କୃଷ୍ଟିର ଜଗୁଆଳ, ସଭ୍ୟ ଉନ୍ନତ ସମାଜର କା । ସେମାନେ ଚେତାଇ ଦେବାକୁ, ବତାଇ ଦେବାକୁ, ଅନ୍ୟାୟ, ଅସତ ଓ ଅବିବେକୀ କର୍ମରୁ ପଛେଇ ଅଣିବାକୁ ସଦେଶ ସର୍ବଦା ଜାଗ୍ରତ ରହିଛନ୍ତି । ସେହି ଅଗାଧୁ-ମାନଙ୍କ ସତର୍କତା ପାଇଁ ସୁକାନ୍ତ ଚରିତ୍ରବାନ୍, ଆଦର୍ଶ ସାମାଜିକ ମଣିଷ ହୋଇପାରିଛି ।

ମୁଣ୍ଡଟେକ ବଡ଼ପଣିଆ ଦେଖାଇ ସୁକାନ୍ତ ଦୁନିଆ ଦାଣ୍ଡରେ ବଡ଼ ପଦକ୍ଷେପ କରି ଚାଲିପାରିଛି । କେତେ ଶୋଭାବତୀ କେବେ କେଉଁଠି ଜୀବନ-ପଥରେ ଉଭା ହୋଇଛନ୍ତି । କେହି କେହି ମନମନ୍ଦିର ଭିତରକୁ ଉଙ୍କି ମାରିଛନ୍ତି । ସୁକାନ୍ତର କାମନା ଓଟାରି ହୋଇଯାଇଛି । କେଉଁଠୁ କିଏ ନଜେ ନଜେ ସେ ଲେଉଟି ଆସିଛି । କେଉଁଠୁ ଟାଣି ହୋଇ ବାହୁଡ଼ିଛି । ଟାଣିଛି ମାତର ବଳିଷ୍ଠ ଧାରଣା । ଟାଣିଛି ରମା ପ୍ରତି ପ୍ରଗାଢ଼ ସ୍ନେହ ଓ କର୍ତ୍ତବ୍ୟର ଧାରଣା ।

ମନ ହିଁ ଜାଣେ ଦୁନିଆ ଜାଣେନା ।

ଯାହାକୁ ଘରକୁ ଘରଣୀ କରି ଆଣିଛି, ଯାହାର ପାଖରେ ନିଜକୁ ସେ ସମର୍ପି ଦେଇଛି—ତନୁ, ଜୀବନ, ମନ, ଧନ ଓ ହୃଦୟ, ସେ ବା ଜାଣେ କଅଣ ? ସେଇ ସେ ପ୍ରେମମୟୀ, ଭଲମନ୍ଦ ସୁଖଦୁଃଖର ସାଥୀ ରମା ।

ହାତ ଧରି ଯାହାକୁ ଆଣିଛି ଓ ମଣିଛି ଏଇ ମଣିଷଟିର ଦେହ, ଜୀବନ, ମନ, ଚଳନ, ସବୁ ତା'ର ହୋଇଛି । ସବୁ ସେ ସମର୍ପି ଦେଇଛି ।

ସେଇ ନାରୀଟିର ମଧ୍ୟ ଅତୀତ ଥିବ, ଶ୍ରେଷ୍ଠ ବଡ଼ କେତେ ଘଟଣାର ପ୍ରଭାବ ପଡ଼ିଥିବ ତାର ଦିନଦିନକର ଜୀବନ ଉପରେ । ମନ ତରଙ୍ଗାୟିତ ହୋଇଥିବ ।

ସବୁ ଘଟଣା ସୁକାନ୍ତର ଅଗୋଚର ।

ଆଖିକୁ ଜଳ ଜଳ ହୋଇ ଦିଶିଲା ପରି ମନେ ହେଉଛି ଯେଉଁ ବର୍ତ୍ତମାନ, କିଛିବ କି ଯାତଟି ବର୍ଷର ବିବାହିତ ନୂତନ ଜୀବନ ତାଆରି ଅଣେଷଣକର ଚିନ୍ତା ଓ ଚଳନ, ଯୋଡ଼ିହୋଇ ଏକାକାର ହୋଇଥିବା ସ୍ୱାର୍ଥର ବନ୍ଧନକୁ ପୁଣିପୁଣି ବେଷ୍ଟନ କରୁଥିଲେ ମଧ୍ୟ ପରିଭ୍ରମଣର ପରିସର ଭିନ୍ନ । ପାଖାପାଖି ଆପଣାର ହେଲା ଦିଓଟି ଦେହଭିତରେ ପାଖାପାଖି ପ୍ରବାହିତ ଦିଓଟି ମନ-ଝରଣାରେ ବିଭିନ୍ନ ଢେଉ ଉଠେ ଓ ପଡ଼େ, ଶବଦ କରେ, ଅଗୋଚରେ ଗୁଞ୍ଜିଲେ ।

ସୁକାନ୍ତ ଓ ରମାର ମୁଁ ଦିଓଟି ଯେତିକି ପ୍ରକାଶ କରିପାରେ, ଯେତିକି ସେହି ତରଙ୍ଗମାଳାକୁ ପ୍ରକାଶ କରିବାକୁ ଆଗ୍ରହୀ ହୁଏ, ସେତିକି ସେହି ମୁଁ ଦିଓଟି ଗ୍ରହଣ କରନ୍ତି, ପରସ୍ପରର ମନର ପ୍ରବାହକୁ ଚିହ୍ନିବାକୁ, ଜାଣିବାକୁ ଓ ନିଜର କରିବାକୁ ଚେଷ୍ଟା କରନ୍ତି । ସେହି ଚେଷ୍ଟା ଓ ପରସ୍ପର ପାଖରେ ନିଜକୁ ସମର୍ପି ଦେବାର ଆଗ୍ରହ, ଦିଓଟି ସହଯାତ୍ରୀଙ୍କର ଜୀବନପଥକୁ ସହଜ, ସୁନ୍ଦର ଓ ଉପଭୋଗ୍ୟ କରେ ।

କେତେ ସେ ପ୍ରକାଶ କରେ, କେତେ ସେ ରଖେ ଗୋପନ ?

ପରସ୍ପରକୁ ଚିହ୍ନିବା ଓ ଜାଣିବାର ଆଗ୍ରହ ପାଇଁ ଅତୀତକୁ ସେ ଧୀରେ ଧୀରେ ଖୋଲେ, ତରି ତରିକା । କି ପ୍ରଭାବ ସେ ପକାଉଛି ଦେଖିବାକୁ

ଅପେକ୍ଷା କରେ । ମନର ତଉକୂଳରେ ତାଆର ମୁଁ ଡାଉଳେ । ନିଜ ଜୀବନର କଷଟି ପଥରରେ, ଘଣ୍ଟିରେ କେତେ ଅତୀତ ଅଭିଜ୍ଞତାର ଗାର ପଡ଼ିଛି— ରଙ୍ଗରଙ୍ଗର, କେଉଁଟି ଉଜ୍ଜ୍ୱଳ, ଚକ୍‌ଚକ୍, କେଉଁଟି ନିଷ୍ପ୍ରଭ ଅସ୍ପଷ୍ଟ, ତା'ର ପାଖରେ ପ୍ରିୟତମ କି ପ୍ରିୟତମାର ଗତଜୀବନର ପ୍ରକାଶିତ ଘଟଣାର ଗାର ପକାଇ କଷୋଟି କରେ, ନିଜର କଣିବାକୁ ଚେଷ୍ଟା କରେ ।

ଛନ୍ଦାଛନ୍ଦ ଦୁଇଟି ଜୀବନ ଆଗେଇ ଚାଲେ । ତରଙ୍ଗାୟିତ ମନର ପ୍ରବାହ ଛୁଟେ ପାଖାପାଖି । କେବେ ମିଶି ଏକାକାର ହୁଏ; କେବେ ପୁଣି ଛାଡ଼ି ଯାଏ, ଦୁଇ ଦଗରେ ଧାଏଁ, ଓଲଟି ଆସି ମୁହାଁମୁହିଁ ହୁଏ, ସଂଘର୍ଷ, ରାଗଦ୍ୱେଷ, ଗରଜ ଉଠେ, ମିଶି ହୁଏ ଏକାକାର, ସତ୍ତ୍ୱା ହଜାଏ । ବହିଚାଲେ ଛନ୍ଦାଛନ୍ଦ ଦୁଇଟି ଜୀବନର ପ୍ରବାହ ଦୁଇକୂଳର ମଝିରେ ।

ସେହିପରି ରମା ଓ ସୁକାନ୍ତର ଛନ୍ଦାଛନ୍ଦ ଦୁଇଟି ଜୀବନ । ଦୁଇଟି ଅଲଗା ଦେହରେ ପାଖାପାଖି ପ୍ରବାହିତ ଦୁଇଟି ମନ । କେବେ ମିଶେ, କେବେ ଅଲଗା ହୁଏ, କେବେ ମୁହାଁମୁହିଁ ହୋଇ ଗୋଟିକୁ ଆରକ ନିଜ ଭିତରେ ସତ୍ତ୍ୱା ହଜାଇବାକୁ ଲହଡ଼ି ତୋଳେ । ଟିକିଏ ସଂଘାତ, ଅବା ପ୍ରତିଘାତ; ଟିକିଏ ଶବ୍ଦ । ସେ ଶବ୍ଦ ହୁଏ ସଙ୍ଗୀତ ଯେବେ ଦୁଇ ଆଢ଼ର ଦୁଇଟି ଲହଡ଼ି ମଥା ନୋଇଁ ପରସ୍ପରକୁ ଆଲିଙ୍ଗନ କରନ୍ତି, ମିଶି ଏକାକାର ହୁଅନ୍ତି ।

ରମା ମନେ ପଡ଼ୁଛି, ଶୋଭାବତୀ ମନେ ପକାଇ ଦେଇଛି ।

ରମା କାନ୍ଦୁଛି କି ? ପିଲା ଦୁଇଟି ଦୁଇପାଖେ ନିଘଡ଼ ନିଦରେ ଶୋଇ-ଥିବେ, ନିଶା ଗର୍ଜୁଥିବ । ରମା ଆଖି ଖୋଲି ଶୋଇ ଏଣ୍ତେଣ୍ତେ ହେଉଥିବ । ଲୋତକ ଧାର ଗଡ଼ି ପଡ଼ୁଥିବ ।

ତମେ ନିର୍ଦ୍ଦୟ, ତମେ ଅନୁଦାର, ତମେ ସୁଖର ସାଥୀ । ତମେ ମତେ ଭଲପାଅ ନାହିଁ । ଦେଖାଇ ହେଉଛ କାହିଁକି ? ମୋଅର ରୂପ ଯୌବନ ମଉଳି ଆସିଲାଣି । ନିଜର ଯେତକ ଅଛି ସେତକର ଯତ୍ନ ନେଇ ନିଜକୁ ସଜାଇ ପଶି ହୋଇ ତମ ଆଗରେ ଠିଆ ହୋଇ ପାରୁନାହିଁ । ତମେ ତ ସେତକ ଚାହଁ !

ତମର ଦୁଇଟି ସନ୍ତାନଙ୍କୁ ମୁଁ ସଯାରେ ଆଣିଛି, ରକ୍ତ ମାଂସ ଦେଇ ଗଢ଼ିଛି । ମରଣ ସଙ୍ଗେ ରଣ କରିଛି, ଜିତିଛି । ସେ ଦିଓଟିଙ୍କୁ ମୁଁ ମନପ୍ରାଣ ଦେଇ ଗଢ଼ୁଛି । ନିଜକୁ ଭୁଲିଛି । ଭୁଲଭ୍ରାନ୍ତ ଟିକିଏ ସହିଲ ନାହିଁ ? ମୋର ଅନୁଗତ୍ୟର କି ପୁରସ୍କାର ଦେଲ ? ମୋର ପତ୍ନୀତ୍ୱ, ମାତୃତ୍ୱ ଓ ନାରୀତ୍ୱକୁ ଅପମାନ ଦେଲ ?

କାହିଁକି ମୁଁ ବଞ୍ଚି ରହିବ ?

ଏ କି କଥା କହୁଛ ରମା ?

ମନର କଥା ଖୋଲି କହୁଛି । କପଟ କରୁନାହିଁ । ତମ ଘରେ ଯିଏ ବାସନ ମାଜୁଛି ତମର ଝିକରେଣୀ ପାଙ୍ଗା, ସେ ଦରିଦ୍ର, ନିରକ୍ଷର, ନିଃସହାୟ ହୋଇପାରେ, ତା'ର ରୂପ କି ଯୌବନ ନ ଥାଇପାରେ, ତାଆର ସ୍ୱାଧୀନତା ଅଛି । ତମେ ନାଲି ଆଖି ଦେଖାଇଲେ କି ପଦେ ଟାଣ କଥା କହିଲେ, ସେ ସହିବ ନାହିଁ । ଜବାବ୍ ଦେବ । ସେ ଚାଲିଯିବ ।

ମୁଁ ତମର ଚାକରାଣୀଠାରୁ ହୀନ । ସକାଳୁ ଉଠି ରାତି ଅଧଯାଏ କାମ କରେ । ତମର ଓ ତମ ପିଲାମାନଙ୍କର ସେବା କରେ । ତମ ପଦାର୍ଥଗୁଡ଼ିକ ସାଇତି ରଖେ, ସଜାଇ ରଖେ । ତମର ଧନର ବ୍ୟାଙ୍କ ବହି ଗହଣା ଗାଣ୍ଠି ଟଙ୍କା ପଇସା ଟ୍ରଙ୍କରେ ରଖି ତାଲା ପକାଏ । ଲୁଗା କାନରେ ଗୁଡ଼ି ଫେଣ୍ଟି କି ବାନ୍ଧି ଅଣ୍ଟାରେ ଖୋସେ । ବଦଳରେ ତମେ ମତେ ଦିଅ କଅଣ ? ତମର ତିରସ୍କାର, ଅପମାନ, ଅସ୍ନେହ ।

ଭୁଲ ହୁଅ ରମା, ଭୁଲ ହୁଅ କହୁଛି । ତମର ଅଭିମାନୀଆଁ କଥା ତୀକ୍ଷ୍ଣ ତୀର ପରି ମୋର ମନରେ ଭେଦୁଛି । ସହି ପାରୁ ନାହିଁ । ମୁଁ ମୋର ସର୍ବସ୍ୱ ତମର ପାଖରେ ସମର୍ପି ଦେଇଛି । ନିଜକୁ ମଧ୍ୟ । ତଥାପି, ତଥାପି ତମେ—

ରମା ଅଟ୍ଟହାସ୍ୟ କରୁଛି । ରମା ଉଠି ବସୁଛି । ସେହି ବଦ୍ରୁପର ହସ ଲାଗିରହିଛି ତାଆର ଲୋଲକଟର ଲପନରେ । ସେ ପୁଣି ଗମ୍ଭୀର ହେଉଛି । କଟମଟ କରି ଚାହୁଁଛି । ମୁଣ୍ଡ ହଲାଇ ଛଳାଇ କହୁଛି, ସତେ ? ସର୍ବସ୍ୱ ସମର୍ପି

ଦେଇଛ ? କପଟୀ, ମିଥ୍ୟାବାଦୀ । ତମେ ଲୁଚକାଳି ଖେଳୁଛ । ସବୁ ମୁଁ ଦେଖିଛି । ସବୁ ମୁଁ ଶୁଣିଛି । ଯାହାକୁ ତମେ ଘୃଣା କର ବୋଲି ବଢ଼ାଇ କର, ତାକୁ, ସେହି ଶୋଭାବତୀକୁ ତମେ ତମର ସମର୍ପିତ-ମନ ବଢ଼ାଇ ଦେଇଥିଲ । ଦେହଟା ବଢ଼ାଇ ଦେବାକୁ ରାଜି ହୋଇଥିଲ ।

ମୁଁ ତମର ଧର୍ମପତ୍ନୀ, ତମ ପିଲା ଦୁହିଁଙ୍କର ଜନନୀ, ତମକୁ ଅଟକାଇ ପାରିନାହିଁ । ଅଟକାଇଲି ଅଗାଧୂ, ତମ ସାମାଜିକ କର୍ତ୍ତବ୍ୟର ଠେଙ୍ଗା, ସମାଜର ପ୍ରତୀକ, ଆର୍ଯ୍ୟ ସଭ୍ୟତାର ବିଜୟ କେତନ, ସନାତନ ।

ସୁକାନ୍ତ ଉଠି ବସିଲା ।

ଅନ୍ଧାର କଥା କହୁଛୁ । ରମା ନାହିଁ । ସେ ନିଶ୍ଚିନ୍ତରେ ଶୋଇ ପଡ଼ିଥିବ । ଶ୍ରେଷ୍ଠ ଘଟଣାଟି ମନରୁ ପୋଛି ଦେଇ ପାରିବଣି । ସର୍ବସହଣୀ ସେ, ଧୈର୍ଯ୍ୟର ପାରାବାର ମୂର୍ତ୍ତିମତୀ, କ୍ଷମା । ମନର ଅଭିମାନ ଦୁଇଧାର ଲୁହରେ ସେ ତଳକୁ ଗଡ଼ାଇ ପକାଏ, ରାଗଦ୍ୱେଷର ଅନଳକୁ ନିର୍ବାପିତ କରେ ।

ବଡ଼ ଘରର ଅଲିଅଳି ଝିଅ, ସମସ୍ତଙ୍କର ଆଦର, ସ୍ନେହ ଶ୍ରଦ୍ଧା ପାଇ ସେ ବଢ଼ିଛି । ବଡ଼ ପଣିଆଁ ନାହିଁ, ଦେଖାଇ ହେବାର ଢଙ୍ଗ ନାହିଁ, ମନରେ ଅବିଶ୍ୱାସର ଘୁମ୍ବାପାତ ହୁଏ ନାହିଁ ।

ସୁକାନ୍ତ ପୁଣି ଶୋଇଲା । ଆଖିକୁ ନିଦ ଆସୁନାହିଁ । ଛଟପଟ ଲାଗୁଛି ।

ହସି ହସିକା ରମା ପଚାରୁଛି, କହମ, ମହର୍ଷି ପରାଶର କଅଣ କଲେ ? ତାଙ୍କ କଥା ଆରମ୍ଭ କରି ନିଜ ଜୀବନର ଗତ କଥାଗୁଡ଼ା କାହିଁକି କହୁଛ ? ପୁରୁଷର ଭାଗ୍ୟ ପତ୍ରର ତଳେ, ଆମ ଭାଗ୍ୟ ସିନା ପଥର ତଳେ । ଗତ ଜୀବନର ଦୁଃଖ କଷ୍ଟ ଭାବି ମନରେ ଅଶାନ୍ତି ଆଣ ନାହିଁ ।

କେବେ ସିନା ନଅବର୍ଷର ପିଲାଟିଏ ହୋଇ ପାଠ ଗୁଡ଼ି ପେଟ ପାଇଁ ଗାଈଗୋରୁ ଜଗିଥିଲି ଗୋଟିଏ ବର୍ଷ, ଏବେ ତମେ ବଡ଼ ହୋଇଛ, ଇଞ୍ଜିନିୟାର ହୋଇଛ, ପାଞ୍ଚଣ ଗୁଡ଼ି କଲମ ଧରିଛ । ଏଥିରେ ନୂଆ କିଛି ନାହିଁ । ଆମର ଦେଶରେ ଗାଈଜଗା ପିଲାଟିଏ ଥିଲା କପିଳା, ଭାଗ୍ୟ ବଦଳାଇକୁ

ଯବେ ପୁଣି ସେଇ ହେଲେ କଳିଙ୍ଗ ରାଜାର ମହାପ୍ରତାପୀ ଚୋଡ଼ଗଙ୍ଗ । ଗଙ୍ଗାଠୁ କାବେରୀ ନଦୀ ଯାଏ ତାଙ୍କର ବିଶାଳ ସାମ୍ରାଜ୍ୟ ବ୍ୟାପିଥିଲା ।

ପଛକଥାରୁ କଅଣ ମିଳିବ ? କହିବି ପରା ବେଦବ୍ୟାସଙ୍କ ଜନ୍ମକଥା ? ଦେଖ, ଦେଖ, ଦୁଇ କୂଳ ଭରି ଗୋଳିଆ ପାଣି କେଡ଼େ ବେଗରେ ଛୁଟିଛି । ବଡ଼ ବଡ଼ ଗଛବି ଭାସିଯାଉଛି । ନଈ ସେପାରି ନିଘଞ୍ଚ ଅରଣ୍ୟ କିପରି ଧୂଆଁଳିଆ ଦିଶୁଛି । ସତେ, ପରାଶର ବୃତ୍ତାନ୍ତ କ'ଣ କଳିମ ! ଏଇ ପରା ସେ ସ୍ଥଳ ବେଦବ୍ୟାସ ପୀଠ !

ରମା ହସି ହସି ନସ୍ୟାନ୍ତ ହେଲା । ସୁକାନ୍ତ ତା'ର ମୁହଁକୁ ତନ୍ମୟ ହୋଇ ଚାହିଁଲା । ବ୍ରହ୍ମପୁରରୁ ସେ ସୁନ୍ଦରଗଡ଼ ବଦଳି ହୋଇ ଆସିବାର ଛଅଟି ମାସ କଟିଥାଏ ।

ସୁନ୍ଦରଗଡ଼ ଜିଲ୍ଲା କେଡ଼େ ମନୋରମ ! ପ୍ରାକୃତିକ ଶୋଭାର ପଟାନ୍ତର ନାହିଁ । ଘନବନ ଶୋଭିତ ଗିରିମାଳ, କଳକଳ ଛଳଛଳ ଉଚ୍ଛଳ ଛୋଟ ବଡ଼ ନଦୀ ଓ ନାଳ, ଦିଗନ୍ତ ବିସ୍ତାରିତ କେଦାରମାଳ, ଶସ୍ୟଶ୍ୟାମଳ । ତହିଁରେ ପୁଣି ଖଣିଜ ସମ୍ପଦର ଆଳୟ ।

ଏ ଜିଲ୍ଲାକୁ ଆସି ରମା ସତେକି ବଦଳି ଯାଇଛି । ଫୂର୍ତ୍ତି ଓ ଆନନ୍ଦରେ ବେଳ କଟାଇବାକୁ ସେ ସବୁବେଳେ ଆଗ୍ରହୀ । କେଉଁ ଦୂର ମୋଫସଲର; କେଉଁ ରକ୍ଷଣଶୀଳ କୁଟୁମ୍ବର ଲଜ୍ୟାଶୀଳା ଅବଗୁଣ୍ଠନବତୀ କନ୍ୟା ଓ କୁଳବଧୂ, ଏକଥା ସେ ଭୁଲିଯାଇଛି । ସବୁ ସେ ଦେଖିବାକୁ ଚାହେଁ । ନିଜର ମନପ୍ରାଣକୁ ସବୁ ଶୋଭାରେ ମିଶାଇ ଦେଇ କବିତାମୟୀ ହେବାକୁ ମନକରେ ।

ସୁକାନ୍ତ ମନ ପୂରାଇ ହସହସ ହୋଇ ଅନାଇଁ ରହିଲା ଶ୍ୱେତ-ବସନା, ତା'ର ପ୍ରିୟତମା ରମାକୁ । ସେ ଆଜି ନୂଆ ମଣିଷଟିଏ ପରି ଦେଖାଯାଉଛି । ବେଦବ୍ୟାସ ପୀଠ ପାହାଡ଼ ଉପରେ ଗୋଟିଏ ପଥରକୁ ଆଉଜି ଠିଆ ହୋଇଛି । ନିମ୍ନର ପଥରତଳ ପ୍ରାକୃତିକ ଗୁହାରେ ବେଦବ୍ୟାସଙ୍କର ଆଶ୍ରମ ଥିଲା । ସେଇଠି ବସି ସେ ଅଷ୍ଟାଦଶ ପୁରାଣ ଲେଖିଥିଲେ ବୋଲି କିମ୍ବଦନ୍ତୀ ଅଛି ।

ଶଙ୍ଖନଦୀ ଓ କୋଇଲ୍ ନଦୀର ସଙ୍ଗମ ସ୍ଥଳ ! ଦୁଇ ନଦୀ ମିଶି ବ୍ରାହ୍ମଣୀ ନଦୀ ହୋଇ ବଙ୍ଗୋପସାଗରକୁ ବହିଯାଉଛି । କିମ୍ବଦନ୍ତୀ ଅଛି, ଏହି ନଦୀ ଦ୍ୱଓଟିର ସଙ୍ଗମସ୍ଥଳରେ କୈବର୍ତ୍ତନନ୍ଦନୀ, ଉଚ୍ଛଳଯୌବନା, ଭୁବନମୋହିନୀ ସତ୍ୟବତୀ ପିତାଙ୍କର ଅନୁପସ୍ଥିତ କାଳରେ ନୌକାଟିକୁ ଧରି ନଦୀର ଆର-ପାଖରେ ଅପେକ୍ଷା କରିଥିଲେ, ଉପସ୍ଥିତ ହେଲେ ବୃଦ୍ଧ ପରାଶର ମୁନି ।

ଘଟଣାଟି ରମା ଭଲ କରି ଜାଣେ । ଆଜି ଏହି ଅପରାହ୍ଣରେ ସୁକାନ୍ତର ମୁହଁରୁ ସେହି ଅତୀତ ସ୍ମୃତିର ପୁରାବର୍ତ୍ତିତ ବୃତ୍ତାନ୍ତ ସେ ଶୁଣିବାକୁ ଚାହେଁ ।

ଆକାଶରେ କଳାଧୂମ୍ରର ମେଘମାଳ, ତପନର ଲପନ ଦିଶୁନାହିଁ । ପବନସ୍ୱାସନ ନଥର ଗମ୍ଭୀର ଗଗନ । ପାହାଡ଼ ତଳରୁ ଆର କୂଳର ବନାନୀ ଯାଏ ବିସ୍ତୃତ ଆବିଳ ଜଳରାଶିର ସଘନ ପ୍ରବାହ, ତରଙ୍ଗାୟିତ ।

ଦିଶିଯାଉଛି ନଦୀ ମଧ୍ୟରେ ଶ୍ରେଷ୍ଠ ନୌକାଟିଏ । ଚଞ୍ଚଳ ଢେଉରେ ଦୋଳାୟମାନ । ପଛ ମଙ୍ଗ ଉପରେ ଉପବିଷ୍ଟ ଶୋଭାର ପସରା, ପୂର୍ଣ୍ଣଯୌବନା କୈବର୍ତ୍ତ-ନନ୍ଦନୀ ସତ୍ୟବତୀ । ଆହୁଲା ପକାଇ ସେ ନୌକା ଚଳାଉଛି, ଫିଟି-ପଡ଼ୁଛି କବରୀ । ଅର୍ଦ୍ଧ ଉଲଗ୍ନ ଦେହର ଆଲୋଡ଼ନ ସଙ୍ଗେ ଅଲୋଡ଼ିତ ଉନ୍ମୁକ୍ତ କବରୀ । କଜଳ କେଶରୁ ଝରିପଡ଼ୁଛି ବନମଲ୍ଲୀର ସୁବାସିତ ସୁମନ । ଚିକ୍କଣ ଚନ୍ଦ୍ରମା ଆନନରେ ସ୍ୱେଦବିନ୍ଦୁ ।

ଅଦୂରରେ ଆଗରେ ଉଭା ପିତାମହ ବୟସର ଜଟାଜୁଟଧାରୀ କାଶ-କୁସୁମଧବଳ ଶ୍ମଶ୍ରୁଧାରୀ ଋଷି ପରାଶର । ଉଜ୍ଜ୍ୱଳ ଆଖିରେ ପ୍ରଜ୍ୱଳିତ କାମାନଳ ।

କ୍ଳାନ୍ତ ବାଳିକାର ହାତ ଅଟକିଲା । ନଦୀ ମଧ୍ୟରେ ନୌକାଟି କେବଳ ବୁଲୁଛି । ଅଗ୍ରଗତି ନାହିଁ । ପାଣି ଭଉଁରୀରେ ପଡ଼ିଛି । ଫୁଲସ୍ତବକମୟ ପାଣି ଉପରେ ଅଟକିଲା ପରି ! ଅଳସ ଆଖିର ଦୃଷ୍ଟି ପଡ଼ିଲା ଋଷିଙ୍କ ମୁହଁରେ । ଆଖିରେ ତୃଷ୍ଣାର ଅନଳ ଜଳୁଛି । ପତଙ୍ଗଟିଏ ସେ, ଟାଣି ହୋଇଯାଉଛି ସତେକି ! ଥରଥର କମ୍ପିତ ଦେହ ଲତା, ଦରଦର ଝରୁଛି ସ୍ୱେଦ । ନୌକାଟି ବୁଡ଼ିବ କି ଓଲଟି ପଡ଼ିବ ?

ଋଷିଙ୍କ ମୁହଁରେ ହସ ।

ସତ୍ୟବତୀ ହେଲେ ଯୋଜନଗନ୍ଧା । ପ୍ରେମେଙ୍କ ଅନୁଜ ବ୍ୟାସ-ଦେବଙ୍କର ଜନନୀ ହେଲେ ସେ ବିଶ୍ୱବନ୍ଦିତା ।

ରମା ସବୁ ଜାଣେ, ସେ ସ୍ୱର୍ଗର କାହାଣୀ । ଗଙ୍ଗା ଓ ଶାନ୍ତନୁଙ୍କର ପୁତ୍ର ଭୀଷ୍ମଙ୍କ ପ୍ରତିଜ୍ଞା ମଧ୍ୟ ତାକୁ ଅଗୋଚର ନାହିଁ । ବୃଦ୍ଧ ପିତା ମହାରାଜ ଶାନ୍ତନୁଙ୍କର ସ୍ନେହ ବନ୍ଧନ ବ୍ୟାସଜନନୀ କୈବର୍ତ୍ତନନ୍ଦିନୀ ଯୋଜନଗନ୍ଧାଙ୍କ-ଠାରେ । ବିରକ୍ତିରେ ଗଙ୍ଗାଙ୍କୁ ରାଣୀ କରି ଧିକ୍କାର ଥିଲେ ବୋଲି ଭୀଷ୍ମଙ୍କୁ ଶାନ୍ତନୁଙ୍କ ପାଖରେ ପକାଇ ଗଙ୍ଗା ଚାଲିଯାଇଥିଲେ, ବହୁ ବର୍ଷ ତଳେ । ଯୁବକ ଭୀଷ୍ମ ଶପଥ କଲେ ସେ ଶାନ୍ତନୁଙ୍କ ଅନ୍ତେ ରାଜା ହେବେ ନାହିଁ, ସେ ବିବାହ କଲେ କାଳେ ତାଙ୍କର ପୁତ୍ର ହେଲେ ସିଂହାସନରେ ବସିବାକୁ ତା'ର ଲୋଭ ହେବ, ତେଣୁ ସେ ନିଜେ ମଧ୍ୟ ବିବାହ କରିବେ ନାହିଁ । ମାତା ସତ୍ୟବତୀଙ୍କର ସନ୍ତାନ ହେଲେ, ସେଇ ହେବ ରାଜା । ସତ୍ୟବତୀ ହେଲେ ଶାନ୍ତନୁଙ୍କର ରାଣୀ ।

ସେବକାଳର ବୁଢ଼ାଗୁଡ଼ାକ ଅତି ନିର୍ଲଜ୍ଜ ଓ ଅତି କାମୁକ ଥିଲେ ମ । ନାଇଁ, ସେବକାଳର ଲୋକଗୁଡ଼ାକ ସେମିତିକା ଥିଲେ ।

ରମାର ମୁହଁରେ ବିଦ୍ରୂପର ହସ ?

ସୁକାନ୍ତ ତାର ପାଖକୁ ଘୁଞ୍ଚିଗଲା । ହାତ ପାପୁଲି ମୁଠାଇ ଧରି ଅଳପ ଚିପି କହିଲା ସବୁ ତମେ ଜାଣିଛ, ମୋ ମୁହଁରୁ ଶୁଣିବାକୁ ପୁଣି ଚାହୁଁଛ କାହିଁକି? ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କର ଜନନୀ ହେଲେ ଶାନ୍ତନୁଙ୍କର ରାଣୀ ଦାଶକନ୍ୟା ସତ୍ୟବତୀ । ଅମ୍ବିକା ଓ ଅମ୍ବାଳିକାଙ୍କୁ ବୋହୂ କରି ଘରକୁ ଆଣିଥିଲେ । ପୁତ୍ର ଦୁଇଟିଙ୍କୁ ହରାଇଲାରୁ ସଲେଣି ପଡ଼ିଲା, ବଂଶ ରକ୍ଷା ହେବ କିପରି, ସେମାନଙ୍କର ଯେ ସନ୍ତାନ ନଥିଲେ ? ବୁଢ଼ୀ ସତ୍ୟବତୀ କି ବୁଝି ପାରିଲେ ।

ରମା ହାତ ଟାଣିନେଲା । ମୁହଁ ଗମ୍ଭୀର କରି କହିଲା, ସେ ସବୁ ଅତୀତ କଥା ମୁହଁକୁ ଆଣନା । ଧୃତରାଷ୍ଟ୍ର ଓ ପାଣ୍ଡୁ ଦୁଇ ବିଧବା ବଧୂଙ୍କ

ଗର୍ଭରୁ ଜନମିଲେ, ବ୍ୟାସଦେବ ହେଲେ ତାଙ୍କର ଜନକ । ମାତା ସତ୍ୟବତୀଙ୍କର ଆଦେଶ ସେ ପାଳନ କରିଥିଲେ, ତେଣୁ ତାଙ୍କର ପାପ କଟିଗଲା ! ଏଠାକୁ ହେଲା କୈଫିୟତ ? କାହାର ବଂଶ ରକ୍ଷା କରାଗଲା ମ, ଶାନ୍ତନୁଙ୍କର, କି ପରାଶରଙ୍କର ?

ସତ୍ୟବତୀଙ୍କର କନ୍ଦନ କାହିଁକି ?

ଖିଲ୍ ଖିଲ୍ ହସ କାନରେ ବାଜୁଛି ।

କାହାର ଏ ହସ ?

ରମା ଏପରି ନିର୍ଲଜ୍ଜ ହସ ହସେ ନାହିଁ ।

ଆରେ, ଶୋଭାବତୀ ଯେ, ସେ ପାଖରେ ଠିଆହୋଇଛି ।

ଶୋଭାବତୀ ନୁହେଁ, ସୁଭଦ୍ରା ।

ସୁନା ଖଡ଼ିକା ପରି ଝିଅ; ପାତଳ ମୁହଁ, ଧାର ନାକ, ଚଳ ଆଖି । ଚଉଦ ବରଷର ଝିଅ ଖଣ୍ଡିକ । ଆସିଛି କି ମୁହଁ ଚଟ କରିବାକୁ ? ସତୀ-ଅପାଙ୍କ ନଣନ୍ଦ, କାର୍ତ୍ତିକ ବାବୁଙ୍କର ମାମୁଝିଅ ଭଉଣୀ, ଦୁଷ୍ଟଙ୍କ ଶିରୋମଣି । ଦରିଦ୍ର ସୁକାନ୍ତକୁ ସେ ସ୍ନେହ କରେ ।

ହେ, ହେ—

ସେ ହଲାଇ ଉଠାଉଛି ।

ଉଁ— ।

ପରୀକ୍ଷା ପରା, ପଢ଼ୁ ପଢ଼ୁ ଶୋଇ ଘୁଙ୍ଗୁଡ଼ି ମାରୁଛ ? ବାଃ, ବଡ଼ ଦଶଟା ହେଲାଣି । ଖିଆବ ନାହିଁକି ? ତମ ଅପା ବୃହିଁ ବସିଛନ୍ତି ।

ସୁକାନ୍ତର ଘୁଇନିଦ ଭାଙ୍ଗିଗଲା ।

ଝଡ଼ ଧରି ସେ ପଦାକୁ ଆସିଲା । କେତେ ରାତି ହେଲାଣି କେଜାଣି ? ମନୁଷ୍ୟର ସ୍ୱରଶବ୍ଦ ନାହିଁ । ନିଶା ଗର୍ଜୁଛି । ଆକାଶରେ ବହଳ ମେଘ । ଶୀତୁଳିଆ ଧୀର ପବନ । ପାଖ ଓ ଦୂରର ପାହାଡ଼ ମାଳ ଓ ଗଛଗହଳ

ଅନ୍ଧାରଧାଡ଼ିରେ ମିଶି ଏକାକାର ହୋଇଛି । ମନରେ ଧକା ଆସୁଛି । ବୁଦବୁଦିଆ ଜଙ୍ଗଲ ଭିତରେ ମହାବଳ ବାଘ ଟାକି ବସିଥିବ, ତାକୁ ଦେଖାଇଲେ ଝାମ୍ପି ନେବ ।

ଛାତି ପଡ଼ିଲା ଉଠିଲା । ସଙ୍କେତ ମେଘୁଆ ପାଗ ହୋଇଛି । କେତେବେଳୁ ପେଟ୍ରୋମାକ୍ସ ଲିଭିଯାଇଲାଣି । ଦୁଇ ସେଲ୍‌ର ଟର୍ଚ୍ଚ ଆଲୁଅ ମୋଟେ ଉଜ୍ଜ୍ୱଳ ଦିଶୁନାହିଁ । ସୁନ୍ଦରଗୁଡ଼ା ଗ୍ରାମଅଡ଼୍ ଧାଙ୍ଗଡ଼ୀ ନାଚର ବାଇଦ କି ସ୍ୱର ଶୁଭୁ-ନାହିଁ । ସେମାନେ ଫେରି ଆସିବେଣି । ନୂଆ ନାଳର ଢେଙ୍କିଲା ପାଣିର ଅହରହ ଗଜ ଗଜ ଶବଦ କାନରେ ପଡ଼ୁଛି ।

ଟର୍ଚ୍ଚ ଅଲୁଅ ବାରଣ୍ଡା ଉଣ୍ଡିଲା । ଚଉକିଦାରର ଫେଟାଟି କାନ୍ଥରେ ଡେରି ହୋଇଛି, ସେ ନାହିଁ କି ଅଉ କେହି ନାହିଁ । ପାଖ ବୁଦବୁଦିଆ ଜଙ୍ଗଲ ଭିତରେ କଅଣ ଝମ୍ ଝସ୍ ହେଉଛି । ଚଉକିଦାର ଗଲା କୁଆଡ଼େ ?

ମନ ମାପ ଛୁଇଁଲା । ନା ନା, ଶୋଭାବତୀ ତାକୁ ତା'ର ଘରକୁ ନେଇ ଯାଇଥିବ । ସେ ନିଶ୍ଚିନ୍ତରେ ଶୋଇପଡ଼ିଥିବ ।

ଶୋଭାବତୀ ଏଇଠି ଠିଆହୋଇ ହସୁଥିଲା । ଶୋଭବତୀ ସେଇ ଗ୍ରେଟ କୁଡ଼ିଆରେ ଅଛି ।

ସୁଭଦ୍ରାର ଆତ୍ମା ଏଇ ବଙ୍ଗଳାର ଚଉପାଖେ ବୁଲୁଛି ?

ସେ ଆତ୍ମହତ୍ୟା କରିଥିଲା । ଅଧା ବୟସ୍କା । ତା'ର ଅମୋକ୍ଷ ଆତ୍ମା ସୁକାନ୍ତର ପଛେ ପଛେ ଗୋଡ଼ାଉଛି କି, ସେଇ ହେଉଛି ଖସ୍ ଖସ୍ ?

ଦେହ ମନ ଥର ଉଠିଲା ।

ସୁକାନ୍ତ ପଛେଇ ପଛେଇ କୋଠରୀ ଭିତରକୁ ଆସିଲା । କବାଟ କିଲିଲା । ସେ ଏବେ ନିଶ୍ଚିନ୍ତ । ଘର ଭିତରେ ଏକା ସେ ! ଶୋଭାବତୀ ପଶି ପାରିନାହିଁ, ମହାବଳ ଦୂରରେ ଅଛି, ସୁଭଦ୍ରାର ଅମୋକ୍ଷ ଆତ୍ମା ହତାଶ ହୋଇ ଫେରିଯିବଣି ତା'ର ନିଷ୍ଠୁର ସ୍ୱାମୀଙ୍କ ପାଖକୁ ।

ସୁଦର୍ଶନ ଅନୁତାପ କରିଥିଲା । ମଦଖିଆ ଗୁଣ୍ଡା, କୃପଣ ପରିତ୍ୟାଗ କରି ସେ ଅଧ୍ୟାପକ ହୋଇ କେତେ ବର୍ଷ ବୁଲିଲା । ନୂଆ ସଂସାର କଲଣି, ଭଲ ମଣିଷ ହେଲଣି । ସୁଭଦ୍ରାର ସ୍ମୃତିକୁ ସେ ମନରୁ ପୋଛି ଦେଇଥିବ, ଗୋଟିଏ ଦୁଃସ୍ୱପ୍ନ ପରି ତାକୁ ଭୁଲିଯାଇଥିବ ।

ସୁକାନ୍ତ ଶୋଇବାକୁ ଚେଷ୍ଟାକଲା ।

ସୁଭଦ୍ରା ଆଗରେ ଠିଆହେଲଣି ।

ନବବଧୂ ବେଶ ! ସୁନା ଗହଣାରେ ଦେହ ମୁଣ୍ଡ ପୂର୍ଣ୍ଣ ହୋଇଛି । ଆଖିରେ ଲୋତକ, କପାଳର କ୍ଷତରୁ ରକ୍ତ ଝରି ପଡ଼ୁଛି ।

ଦେଖ ସୁକାନ୍ତ ଭାଇ, ସେ ମୋତେ ପ୍ରହାର କରୁଛି । ସେ ମଦ୍ୟପ, ଦୁଷ୍ଚରିତ୍ର । ଧନୀର ସନ୍ତାନ ବୋଲି ବାପା ମୋତେ ତା ହାତରେ ଛାଡ଼ିଦେଲେ । ତମକୁ ମୁଁ ଭଲପାଇଥିଲି । ତମେ ମୋତେ ସ୍ନେହ କରିଥିଲ । ତମେ ମନା କଲ କାହିଁକି ? ଏତେ ଅତ୍ୟାଚାର ମୁଁ ସହିପାରୁନାହିଁ । ଜୀବନ ହାରିବି ।

କାହାକୁ ଭଲ ପାଇବାର, କି ସ୍ନେହ କରିବାର ଅଧିକାର ମୋର ନାହିଁ ସୁଭଦ୍ରା, ମୁଁ ଗରିବ ମୂଲିଆ ଘରର ପୁଅ । ଅନ୍ୟର ସହାନୁଭୂତି ଓ ମୋର ଉଦ୍ୟମ, ଏହି ଦୁଇଟି ମୋର ଗୋଡ଼, ଆଗେଇ ଯିବାର ସମ୍ବଳ, ଅଧ୍ୟାପନା ସୁକାନ୍ତ ବାନ୍ଧି ହେବାକୁ ଚାହେଁ ନାହିଁ । ତମର କୃପଣ ପିତା ମୋତେ ପଢ଼ାଇବାକୁ ସାହାଯ୍ୟ ଦେବାପାଇଁ ନାହିଁ କରିଦେଲେ । ବିଦ୍ୟା ଉପରେ ତାଙ୍କର ବିଶ୍ୱାସ ନାହିଁ । ସେ ଚାହିଁଥିଲେ ତାଙ୍କର ଦାନଦିଆ କେଇମାଣ ନାଲକୂଲିଆ ଜମିକୁ ମୁଁ ଗୃହଜାମାତା ରୂପରେ ରହିବି । ତାଙ୍କରି ଶିକ୍ଷାରେ, ତାଙ୍କରିପରି କୁଟନୀତି ପ୍ରୟୋଗ କରି, ଚକ୍ରାନ୍ତ କରି, ଅନ୍ୟର ଧନ ଆଣି ମୁଁ ଧନୀ ହେବି । ମୁଁ ତାଙ୍କର ପ୍ରସ୍ତାବରେ ରାଜି ହେଲିନାହିଁ ।

କାହିଁକି ରାଜି ନ ହେଲ, ସେକଥା ତମେ ତମର ସଙ୍ଗୀଅପାଙ୍କୁ ଜଣାଇଲ ନାହିଁ ? ସେ ମୋର ମନର କଥା ଜାଣିଥିଲେ । ଘରକୁ ଫେରିଆସିବା ପୂର୍ବରୁ ମୁଁ ତାଙ୍କୁ କହିଥିଲି ତମେ ମତେ ସ୍ନେହ କର । ମୋର ପତ୍ରର ଉତ୍ତର ଦିନା

ଦେଲ ନାହିଁ, ସେଉଁ କବିତାଟି ଲେଖି ଦେଇଥିଲ, ସେଇଟି ମୁଁ ସାଇତ ରଖିଛି । ମୋର ମନ ତମକୁ ଯେତେ ପତ୍ର ଲେଖେ, ତମର ସେଇ କବିତାଟି ପଢ଼ିଲେ ମୁଁ ମୋର ସବୁ ପତ୍ରର ଉତ୍ତର ପାଏ । ସତେକି ତମେ ଆସି ମୋ ଆଗରେ ଠିଆ ହୁଅ ।

ଉ ଆଜି ଅତି ସୁନ୍ଦର ଦିଶୁଛୁ ସୁଭଦ୍ରା, ତତେ ଗେଲ କରିବାକୁ ମୋର ମନ ହେଉଛି । ଦେଖ୍, ବଳିମାଳ ଆରପାଖେ, ଦୂର ଗଛଗହଳି ଧାଡ଼ିର ଠିକ ଉପରେ, ଅସ୍ତଗାମୀ ନାଲି ଟହଟହ ସୂର୍ଯ୍ୟ କେଡ଼େ ସୁନ୍ଦର ଦିଶୁଛନ୍ତି । ଏ ପାଖକୁ ଅନା, ସୁନାଥାଳି ପରି କେଡ଼େ ବଡ଼, କେଡ଼େ ଶୋଭିକାର ଚନ୍ଦ୍ରମା, ପୂରୁବ ଦିଗ୍‌ବଳୟର ଗଛଗହଳି ଉପରକୁ ଉଠିଆସିଲେଣି । ଆଜି କୁଆଁର ପୂନେଇଁ ନୁହେଁ, ଆଜି ଚତୁର୍ଦ୍ଦଶୀ ।

ଭାରି ସାହସିଆ ତମେ ସୂର୍ଯ୍ୟକାନ୍ତ, ଛାଡ଼ିଦିଅ ମୋର ହାତ, କିଏ ଆଉ ଆସିବେ । ମୁହୂର୍ତ୍ତେ ମତେ ସେ ଆଖିଛଡ଼ା କରନ୍ତୁ ନାହିଁ । ଆସୁଥିବେ ମ, ଗେଲ କଲେ କଅଣ ତମ ସ୍ନେହ ଅଧିକ ବୋଲି ଜଣାପଡ଼ିବ ? ସେଇଟା ଅଲଜ୍ଜିକ, ଅନୀତି କଥା । ତମେ ମୋର ବାପାଭାଇ ନୁହଁ । ଗେଲ କରିବ କେଉଁ ଅଧିକାରରେ ?

ଠିକ କହିଲୁ ଲୋ ସୁଭଦ୍ରା, ମୋର ସେ ଅଧିକାର ନାହିଁ, ସେ ଅଧିକାର ଆସିବ ନାହିଁ । ଏଠାକୁ ଉ ଆସିଛୁ ସ୍ନେହରେ, ସମ୍ମାନରେ । ଦୁଇ ଦିନର କୁଣିଆ । ମୂଲିଆ ଘରେ ପୁଅ ମୁଁ, ଭଗୋଇଙ୍କର ଦୟା ହେଲାରୁ ଗାଈଜଗା ଛାଡ଼ି ପାଠ ପଢ଼ିବାକୁ ଅନନ୍ତପୁର ଆସିଥିଲି । ପର ଅନ୍ନରେ ପ୍ରତିପାଳିତ ହୋଇ କେତେ ବର୍ଷ କଟିଗଲାଣି । ଏଠାରେ ରହଣିର ଏଇ ମୋର ଶେଷ ବର୍ଷ । ବଡ଼ ଘରର ଅଲଅଳି ଝିଅ ଉ, ମୂଲିଆ ଘରର ନିଉଛଣା ପୁଅ ମୁଁ ।

ହାତ ଛାଡ଼ି ସୂର୍ଯ୍ୟକାନ୍ତ ଅଟକିଲେ । ଅନୁତାପରେ ଥରି ଉଠିଥିଲା ମନ । ପିତାମାତାହରା ଅନାଥ ପିଲାଟା ସେ, ବଞ୍ଚି ରହି ଦୁନିଆଁ ଦାଣ୍ଡରେ ବାଟ

ଚାଲିବାକୁ ସେ ଉଦ୍ୟମ କରୁଛି । ଆକାଶର ଚନ୍ଦ୍ରମାକୁ ଦେଖି ଆନନ୍ଦିତ ହେବାର ଅଧିକାର ସମସ୍ତଙ୍କର ଅଛି, ପାଇବାକୁ ମନ କରିବା ଓ ହାତ ବଢ଼ାଇବା କେବଳ ଶିଶୁ, ପାଗଳ ଓ ନିର୍ବୋଧଙ୍କୁ ସାଜେ ।

ସେ ଶିଶୁ ନୁହେ କି ପାଗଳ ନୁହେ । ସେ ନିର୍ବୋଧ ହେବାକୁ ଚାହେ ନାହିଁ । ସେ ଦୂରେଇ ଯିବ , କର୍ତ୍ତବ୍ୟ ପଥରେ ଆଗେଇବ । ରୂପଯୌବନର ମୋହ ଓ ଉତ୍ତେଜନା ସଙ୍ଗେ ଖେଳିବାକୁ ଆଉ କେବେ ସାହସ କରିବ ନାହିଁ ।

ସୁଭଦ୍ରା ପଛରୁ ଆସି ହାତ ଧରିଲା !

ସୁକାନ୍ତ ଫେରିଚାହିଁଲା ।

ସୁଭଦ୍ରାର ସୁନ୍ଦର ମୁହଁଟି କେଉଁ ଅଜଣା ଦୁଃଖରେ ଗମ୍ଭୀର ହୋଇଛି । କଜ୍ଜ୍ୱଳପୂରିତ କଇଁଫୁଲର ପାଖୁଡ଼ାପରି ଲୋଚନ ଦିଓଟିରେ ଲୋତକ ଟଳଟଳ ହେଉଛି । ଗୋଲାପୀ ଓଠପାଖୁଡ଼ା ଦିଓଟି ଥରଉଠୁଛି ।

ମନ କଷ୍ଟ କଲ କି ସୁକାନ୍ତ ? ଯିଏ ଯାହାକୁ ଭଲ ପାଏ, ସିଏ ତା' ସଙ୍ଗରେ ଟିକିଏ ଖେଳିବ ଲଗାଏ । ଅଳପ ଚିଡ଼େଇବାକୁ ମନକରେ । ମୋ ହାତ ମୁଁ ଟାଣିନେଇ ନଥିଲି, ତମେ ଛାଡ଼ିଦେଲ ।

ମନ ହେଉଥିଲା ଗେଲ କରିବାକୁ । ସଖୀଅପା ପଛରୁ ଆସୁଛନ୍ତି । ମନରେ ତାଙ୍କର କେତେବେଳରୁ ସନ୍ଦେହ , କି କୌତୂହଳ, କି ଆଗୁଁ ହୋଇବ ସାବଧାନର ଧାରଣା ଜାଗିଛି । ଆମେ ଦହେଁ ଚାରିଦିନିଆ କୁଣିଆଁ । ଅଧିକ ଘନିଷ୍ଠତା ଭଲ ନୁହେଁ ।

ପାଠୁଆ ପିଲାଙ୍କର ପାଠରେ ମନଦେବା ଭଲରେ ଭଲ, ତୁ ମଣିଷ ହୋଇ ବାଟ ଚାଲିଲେ ବଡ଼ଘରର ଅଲଅଲ ଝିଅ, ସୁବର୍ଣ୍ଣ ପ୍ରତିମାକୁ ତୋ ହାତରେ ଦେବାକୁ ତା' ବାପା ବଳେ କହିବେ ।

ସଖୀଅପା ଆକଟ କରୁଛି ।

ସୁଭଦ୍ରା ତାକୁ କବୁ କରିଥିଲା !

ଦୂରରେ ଆସି ବୃତ୍ତି ପାଇ କଲେଜରେ ପଢ଼ିବାବେଳେ ସୁଭଦ୍ରାର ପିତା ସମ୍ବନ୍ଧ ଆଣିଲେ; କିନ୍ତୁ ପାଠପଢ଼ାପାଇଁ ସାହାଯ୍ୟ ଦେବାକୁ ନାସ୍ତି କରିଦେଲେ ।

ଗୋଟିଏ ପାଖରେ ସୁଭଦ୍ରା ଓ ତା' ସଙ୍ଗେ ଦଶମାଣ ନାଲକୁଳିଆ ଧାନଜମି, ଆଉ ଗୋଟିଏ ପାଖରେ ବିଦ୍ୟା, ସୁକାନ୍ତ ଦୁଇଟିକୁ ତଉଲି ଦେଖିଲା । ସେ ଭଲ ଛାତ୍ର, ବୃତ୍ତି ପାଉଛି, ଦୁଃଖେକଷ୍ଟେ ଚଳିଯାଉଛି । ଆଗେଇ ଚାଲିବାର ଆଗ୍ରହ ମନରେ ଜନ୍ମିଛି ।

ସମ୍ପାଅପାଙ୍କର ଅନୁରୋଧ ଓ କାର୍ତ୍ତିକ ଭାଇଙ୍କର ଆଦେଶକୁ ସେ ରକ୍ଷାକରି ପାରିଲା ନାହିଁ ।

କବିତାର ଝରଣା ଶୁଖିଲା । ସୁଭଦ୍ରା ଧରିଲା ଅନ୍ୟର ହାତ ।

କାର୍ତ୍ତିକ ବିରକ୍ତ ହେଲେ । ଯେଉଁ ସାହାଯ୍ୟ ଦେଉଥିଲେ, ସେତକ ବନ୍ଦ କରିଦେଲେ । ସମ୍ପାଅପା ଅନର୍ଥକ ଗଞ୍ଜଣା ସହିଲେ ।

କଲିକତାରୁ ଫେରି ଅବନ୍ଧରେ କେବଳ ଯେମିତି କଣ୍ଟକରେ ଧନୀ ହେବାକୁ ବ୍ୟାକୁଳ । ବାହା ହୋଇ ସଂସାର କଲେଣି । ଭଗବାନ ଜନ୍ମ ହେଲଣି । ସାହାଯ୍ୟ ଦେବାକୁ ଭାଇ ମନା କରିଦେଲେ । ଭାଉଜଙ୍କର କୁ-ଶିକ୍ଷାରେ ପଡ଼ି ପଚ ଲେଖିଲେ, ତୋ ଭାଗ ସମ୍ପତ୍ତି ତୋ ଭାଉଜ ନାମରେ ରେଜିଷ୍ଟ୍ରୀ କରିଦେଲେ ଧାରଉଧାର କରି ସେ କେଉଁଠୁ ଟଙ୍କା ଆଣି ଦେଇ-ପାରିବେ ବୋଲି କହୁଛନ୍ତି ।

ତାହାହିଁ ହେଲା ।

ସେଥିପାଇଁ କଟକ ଛାଡ଼ି ନରେନ୍ଦ୍ରପୁର ଯିବାକୁ ପଡ଼ିନାହିଁ । ରେଜିଷ୍ଟ୍ରେସନ୍ ହେଲା କଟକରେ । ପାଞ୍ଚଶ ଟଙ୍କା ପାଇ ଭାଇଙ୍କର ପଦଧୂଳି ଓ ଆଶୀର୍ବାଦ ନେଇ ସେ ହଷ୍ଟେଲକୁ ଫେରିଆସିଲା । ଟଙ୍କାତକ ପୋଷ୍ଟ ଅଫିସରେ ରଖି ନରେନ୍ଦ୍ର-ପୁରକୁ ସେ ଦୂରରୁ ଜୁହାର କରିଥିଲା ।

ଆଖିରୁ ଝରିଥିଲା ଲୁହଧାର । ଦୁନିଆରେ ସେ ଏକାକୀ ହୋଇଛି, ନିଃସହାୟ ହୋଇଛି, ନିଜ ଶିଙ୍ଗରେ ହିଁ ସେ ମାଟି ଖୋଳିବ, ନିଜ ଗୋଡ଼ରେ ଠିଆହେବ । ସ୍ୱାର୍ଥପର ଦୁନିଆଁରେ ସମସ୍ତେ ପଛରୁ ଗୋଡ଼ ଓଟାରିବେ, ହାତଧରି କେହି ଆଗେଇ ନେବେ ନାହିଁ ।

ମନଦେଇ ରମା ସବୁ ଶୁଣିଲା, ଦୀର୍ଘଶ୍ୱାସ ଛାଡ଼ିଲା, ଉତ୍ତର ଦେଲା ନାହିଁ ।

ମୁହଁରେ ହସ ଲାଗିରହିଛି । ଦୃଷ୍ଟି ଧୀରେ ଧୀରେ ବୁଲିଯାଉଛି ସୂର୍ଯ୍ୟଆଡ଼କୁ । ସୂର୍ଯ୍ୟ ଇବ୍‌ନଦୀର ଆର ପାଖରେ ଲମ୍ବିଯାଇଥିବା ଅରଣ୍ୟର ଶେଷ ପାହାଡ଼ଧାଡ଼ିର ନଈଁଲା ଉପତ୍ୟକାର ମଥାଉପରେ ହେଲେଣି । ଏଥର ସେ ଅସ୍ତମିତ ହେବେ । ପାହାଡ଼ର ପଛପାଖେ ମୁହଁଛପା ଦେବେ । ଶେଷ ବୈଶାଖର ଉତ୍ତପ୍ତ ଗୋଧୂଳିବେଳ ଶୀତଳ ହେବ, ଗରମ ପବନ ବନ୍ଦ ହେବ ।

ସୁନ୍ଦରଗଡ଼ ସହର କଡ଼ର ପାହାଡ଼କାନ୍ଥି ଉପରେ କ୍ଳାନ୍ତ ହୋଇ ବସିଛନ୍ତି ସେ ଦୁହେଁ ବର ଓ ବଧୂଟି, ସହରର ଶୋଭା ଦେଖୁଛନ୍ତି । ଇବ୍‌ନଦୀ କୂଳରୁ ଜଳ ଅଫିସ୍ ଯାଏ ପ୍ରାୟ ଏକ ମାଇଲ ଲମ୍ବିଯାଇଛି ସେଇ ପାହାଡ଼କାନ୍ଥି । ଉଚ୍ଚତା ତିନିଶ ଫୁଟ ହୋଇପାରେ, ଅଧ ମାଇଲ ହେବ ପ୍ରସ୍ଥ । ଲୋକେ କହନ୍ତି, ଏ ପାହାଡ଼ରେ ସୁନା ଅଛି ।

କଷ୍ଟ ହେଲେ ମଧ୍ୟ କେଡ଼େ ଆଗ୍ରହରେ ନଦୀକୂଳ ନାସିବାଟେ ରମା ସେଇ ପାହାଡ଼ ଉପରକୁ ଉଠିଛି । ମଝି ପାହାଡ଼ର ବୁଦବୁଦିକା ଗଛତଳ ଚଟାଣ ଉପରେ ଛାଇତଳେ ସୁକାନ୍ତ ପାଖରେ ବସିଛି । ସାରା ସହର ଦେଖାଯାଉଛି ଚକ ଅଙ୍କାହେଲା ପରି । କେତେ ଧନର ଅଂଶ ତା'ର ଆଜି ମେଣ୍ଟିଛି । ସତେ କି ସେ ଆଜି ଗଡ଼ ଜିଣିଛି । ଦେହରୁ ଫିଟିପଡ଼ୁଛି ଗମ୍ ଗମ୍ ଝାଳ ।

ଆଜି ପଣ୍ଡିତ ଜୀ କେମା ? ପିଲାମାନଙ୍କର ପାହାଡ଼ଚଢ଼ା ଦେଖି ଈର୍ଷା କରିଥିଲି । ସାହସ କରି ଉଠିଥିଲି ତ, ଓହ୍ଲାଇଲା ପରେ ବହୁଦିନକାଳ ବିଛଣାରେ ପଡ଼ିରହିବି, ଗୋଡ଼ ଦରଜ ହେବ ।

ପରେ କଅଣ ହେବ ସେ କଥା ମୁଁ ଏବେ ବିଚାରୁନାହିଁ । ଦେଖୁଛି, ନାମ ସାର୍ଥକକାରୀ ଏଇ ସୁନ୍ଦରଗଡ଼ ସହର, ଭୁଲିପାରିବି ନାହିଁ ଜୀବନରେ ।

ତୁମେ ଏଥର କବିତା ଲେଖ ।

ଲେଖି ଜାଣେ ନାହିଁ, ପଢ଼ିବାକୁ ମୁଁ ଭଲପାଏ ।

ମନ କିନକିନ ହେଲା, କହିଦେବି କି, ମୁଁ ଦିନେ କବିତା ଲେଖୁଥିଲି; ଯିଏ ମତେ କବି ହେବାକୁ ପ୍ରେରଣା ଦେଇଥିଲା, ସେଇ ସୁଭଦ୍ରା ଆଜି ଏ ପୁରରେ ନାହିଁ । ସେଇ ମୋର ପ୍ରେରଣାକୁ ସାଙ୍ଗରେ ନେଇଗଲା । ବାସ୍ତବ ଦୁନିଆଁ ସଙ୍ଗେ ଲଢ଼ି ମଣିଷ ହେବାକୁ ସେ ଦୁନିଆଁର ଆରପାରିରୁ ନିର୍ଦ୍ଦେଶ ଦେଇଛି । ସବୁ କବିତା ଟିକିଟିକି କରି ଛିଣ୍ଡାଇ ଜାଳିଦେଇଛି । ସେଗୁଡ଼ିକ ମଧ୍ୟ ଅଶରୀରୀ ସୁଭଦ୍ରା ପାଖକୁ ଚାଲିଯାଇଛି । ତାଆରି ଅଦମାଷ୍ଟ ପ୍ରେତାତ୍ମା ସେଗୁଡ଼ିକ ପଢ଼ି ନ ପାରିଲେ ମଧ୍ୟ ଅନୁଭବ କରିବ, ନିଶୀଥର ନିବିଡ଼ ଅନ୍ଧକାରକୁ ଚଞ୍ଚଳ ଓ ମୁଖର କରିବ ।

କହିବି କି, ତମେ ମୋର ଜୀବନର ଦୁଃଖସୁଖର ସାଥୀ । ରାଗଦ୍ୱେଷ ମାନାଭିମାନ ସହିଛ, ମାନେ ନମାନେ ତମର ଧାରଣାରେ ଯାହା ଭଲ ବା ମନ୍ଦ ନିଃସଙ୍କୋଚରେ ନିର୍ଭୟରେ କହିଛ । ତମେ ମୋର ଦେଖାପରିଖା ଧ୍ରୁବତାରା । ସୁଭଦ୍ରା ଦିନେ ଅଦେଖା ଆଲୁଅ ହୋଇ ମୋତେ ବାଟ ଦେଖାଇଥିଲା । ବନ୍ଧୁବାନ୍ଧବ ଓ ଆତ୍ମୀୟସ୍ୱଜନ ମୋତେ ପାସୋରି ଦେଲେ । କେବେ କାହା ପାଖରେ ମୋର ପ୍ରଶଂସା କରୁଥିଲେ ମଧ୍ୟ ଈର୍ଷାରେ ଜଳି ଯାଉଥିଲେ । ମୋତେ ଅପଦାର୍ଥ ଓ ଅକୃତଜ୍ଞ ବୋଲି ସମାଲୋଚନା କରୁଥିଲେ ।

ବିଶ୍ୱାସ କରିବ କି, ସୁଭଦ୍ରା ମୋ ମନରେ ଆଗେଇ ଯିବାର ଦୃଢ଼ ସଙ୍କଳ୍ପର ବୀଜ ବପନ କରିଥିଲା । ଗୃହ ଜୀବନରେ ଯେଉଁମାନେ ମୋର ସହ-

ପାଠୀ ଥିଲେ, ସେମାନେ ମୋର ମିତବ୍ୟୟିତାକୁ ଶ୍ରେଷ୍ଠଲେଖା ବୋଲି ଉପହାସ କରୁଥିଲେ । ଅଭାବ ପାଇଁ ମୋର ଅପରିଷ୍କାର ବେଶକୁ ଦେଖି ନାକ ଟେକୁ-ଥିଲେ । ହେଲେ ସେ ଏଇ ମୂଲ୍ୟ-ଯୁଅ ଛିଣ୍ଡା ମଇଳା କଣଥ ପିନ୍ଧି, ପାଖରେ ପାଞ୍ଚଣ ରଖି ପର ପିଣ୍ଡାରେ ପିଆଜ ଲଗାଇ ବାସିପଖାଳକୁ ଅମୃତ ପରି ଖାଇପାରୁଥିଲି, ସେ କଥା ସେମାନେ ଜାଣନ୍ତି ନାହିଁ ।

ସେହି ଦୁଃଖମୟ ଜୀବନ ପଥରେ ଦୃଢ଼ ପଦକ୍ଷେପରେ ମୁଁ ଯେତେବେଳେ ଆଗେଇ ଯାଉଥିଲି, କେତେ ହସିଲାମୁହଁ, ଛଳଛଳ ଯୌବନ, ଅଭି ଗୃହୀଣୀର ସମ୍ମୁଖୀନ ହୋଇଥିଲି । ମୋର ଦରିଦ୍ର ଅସନା ଭେକ ଦେଖି ମଧ୍ୟ ଯେଉଁମାନେ ଲୋଭିଲା ଆଖିରେ କଣେଇ ଚାହିଁଥିଲେ, ସେମାନଙ୍କୁ ତମେ ନିର୍ବୋଧ ଆଖ୍ୟା ଦେଇପାର; କିନ୍ତୁ ସେମାନେ ମୋ ମନରେ ପୁରୁଷପଣର ଅହମିକା ଜଗାଇ-ଥିଲେ । ମୋର ରୂପ, ଯୌବନ, ସ୍ୱାସ୍ଥ୍ୟ ଓ ଅନୁରାଗ ଜନ୍ମାଇବାର ଆଉ କଅଣ ଅଜଣା ଉପକରଣ ଅବଶ୍ୟ ଥିଲା ।

କିନ୍ତୁ ମୁଁ ଚାଣି ହୋଇଥିଲି । ଦୋହରା ଦୃଷ୍ଟି ସେମାନଙ୍କର ରୂପ-ଯୌବନ ଓ ଆକର୍ଷଣୀରେ ସୁଭଦ୍ରାର ସ୍ମୃତିକୁ ଲେପି ଦେଇଥିଲା । ସେମାନଙ୍କ ଆଖିରେ ଓ ଓଠରେ ସୁଭଦ୍ରା ହସିଥିଲା ଓ କାନ୍ଦିଥିଲା, ଶେଷ ପରିଣାମ ମନେ-ପକାଇ ଦେଇଥିଲା, ମୁଣ୍ଡ ନୋଇଁଥିଲା, ଛାତି ଥରାଇଥିଲା । ଦ୍ୱିତୀୟଥର କଣେଇଁ ଚାହିଁବାକୁ ସାହସ କରିନଥିଲି ।

ତମ ସାଙ୍ଗରେ ପ୍ରଥମ ସାକ୍ଷାତ୍ ଦିନ ଛପିଛପି ସେ ଆସିଥିଲା ମୋ ସାଥିରେ ହସିହସିକା । ତମ ପାଖରେ ମୋତେ ସେ ସମର୍ପି ଦେଇଥିଲା । ତମ ସଙ୍ଗେ ସେ ବିଲୀନ ହୋଇ ଏକାକାର ହେଲା । ଯେଉଁମାନଙ୍କର ଅଳପ ସ୍ନେହ, ମୋର ନୟନକୁ ଏକାଧିକ ଥର ଓଟାରିଥିଲା, ସେମାନଙ୍କର ଧାରଣା ମଧ୍ୟ ତମରି ଭିତରେ ଲୀନ ହୋଇଥିଲା ରମା, ତମ ଧାରଣାରେ ତମେ ଏକ ହୋଇପାର; କିନ୍ତୁ ମୋ ଧାରଣାରେ ତମେ ମୋର ସବୁ ଆକର୍ଷଣୀର ସମଷ୍ଟି ।

ଶୋଭାବତୀ ତମରି ଭିତରେ ବଳୟି ଉଠିବ ।

ମନକର୍ଣ୍ଣ ଦେଇ ମୋ ଅତୀତ ଜୀବନର ଗାଥା ତମେ ଶୁଣିଛ । ସବୁ ମଣିଛ ସତ୍ୟ । ଯାହା କହୁଛି, ମୁଁ ସତ୍ୟ ହିଁ କହୁଛି । ଯାହା କହୁନାହିଁ, ସେତକ ମୋର ନିଜର ହୋଇ ରହୁଛି ।

ସୁଚନ୍ଦ୍ର କୁ ତମେ ଜାଣନାହିଁ; ଆଉ ଯେଉଁମାନେ ତମର ଭିତରେ ଛପି ଯାଇଛନ୍ତି, ସେମାନଙ୍କୁ ମଧ୍ୟ ଜାଣନାହିଁ । ଶୋଭାବତୀକୁ ବି ଜାଣିବନାହିଁ । ସେମାନେ ଭ୍ରମର ଅନୁଗତ୍ୟ ଓ ନିଷ୍ପାର ପ୍ରହରୀ !

ରମାର ନିଦ ଭାଙ୍ଗିଲା । ବାରଙ୍ଗୁଜଳିଆ ସପନ ଅପସରିଲା । ଶେଷ ଦୃଶ୍ୟର ପରିବେଷ୍ଟନ ତଥାପି ରହିରହି ହେଉଛି । କ୍ଳାନ୍ତ ଆଖିପତା ଖୋଲି ହେଉନାହିଁ । ଅରଣ୍ୟଘେରା ଗିରିମାଳର ପାଦଦେଶରେ ପ୍ରବାହିତ ତଟିନୀର ମନୋରମ ଦୃଶ୍ୟ ମନଗହନରେ ଲୁଚିରହିଛି । ଜଳପ୍ରପାତର ଘନଘନ ଶବ୍ଦ କାନରେ ବାଜିଯାଉଛି ।

ଗଭୀର ସଙ୍କୀର୍ଣ୍ଣ ଗିରିଦରିରେ ପ୍ରବଳ ବେଗରେ ତଟିନୀର ପ୍ରବାହ ପ୍ରସରି ଯାଇଛି, ଛପିଯାଇଛି ପର୍ବତମାଳର କେଉଁ କନ୍ଦରେ । ହଜିଯାଇଛି କି ? ମୁଗ୍ଧ ନେତ୍ର ଖୋଜି ପାଉନାହିଁ । ଉପରର ପଥରଶେଯ୍ୟାରୁ ତରବର ହୋଇ ଗିରିମାଳନନ୍ଦିନୀ ଯେଉଁଠି ଯାତତାଳ ଗଭୀର କନ୍ଦରକୁ ଡେଇଁପଡ଼ୁଛି, ସେଇଠି ଖଇଫୁଟା ପାଣିର ଆବର୍ତ୍ତନରୁ ଉଠୁଛି ଜଳକଣାର କୁହେଳି ।

ଜୟପୁର ପାଖ କୋଲାବ ନଦୀର ଜଳପ୍ରପାତ ବାଘରା, ଅବା ମାଛକୁଣ୍ଡନଦୀର ଡୁଡୁମା ପ୍ରପାତ ?

ପ୍ରପାତ ଉପରକୁ ଅଧେ ଦୂରଯାଏ ଲମ୍ବିଯାଇଛି ଅକର୍ମଶିଳା । ଉଠାଣିଆ । ମନା ନ ମାନି ଖଦଡ଼ା ପଥର ଉପର ଅଣଓସାରିଆ ବାଟରେ ଜଳପ୍ରପାତ ଦେଖିବାକୁ ଉଠିଯାଉଛନ୍ତି ସୁକାନ୍ତ, ହାତ ଧରି ପଛେ ପଛେ ଯାଉଛି କୁନୁ । ଝରଣାକୂଳର ଚଟାପଥର ଉପରେ ଆକୁଳ ଆଖିରେ ଅନାଇ ରହିଛି ମୋ । ମନ ଦହଦହ, ଛାତି ଥରଥର । ଇସ୍ ପାଖରେ ନାହିଁ, ଫସାରକୁ ସେ କେତେବେଳଯାଏ ଆସିନାହିଁ ।

ଚାହିଁରହିଛି ରମା, ଆଗେଇଯାଉଛି ସୁକାନ୍ତ । କେତେ ନିର୍ଭୀକ ପିଲାଟା କିନ୍ତୁ, ବାପର ହାତ ଛାଡ଼ି ଟଳିଟଳି ଚାଲିଛି । ଯାତଡାଳ ତଳେ ପାଣି ଗଳୁଛି, ନାଚୁଛି, ହସୁଛି, ଧୂଆଁ ଛାଡ଼ୁଛି । ମଧ୍ୟାହ୍ନ ତପନର ମୁହଁ ଢାଙ୍କିଛି ବହଳ ଧବଳ ଅଳସ ଜଳଦ ।

କେତେ ଦୃଶ୍ୟ ସେ ଦେଖିଛି, କେତେ ସ୍ଥାନରେ ସାତବର୍ଷର ବିବାହିତ ଜୀବନକାଳରେ, ସବୁ ମିଶାମିଶି ହୋଇଛି ଭାବନାରେ ।

ପାଖେପାଖେ ସୁକାନ୍ତ । ସେ ପାଖରେ ଥିଲେ ମନରେ ଭୟଭ୍ରାନ୍ତ ପଶେ ନାହିଁ । ସେ ନିର୍ଭୀକ, କର୍ମନିଷ୍ଠ, ସଚ୍ଚୋଟ ଇଞ୍ଜିନିୟାର !

ସେ ଦରିଦ୍ର ଘରେ ଜନ୍ମ ହୋଇଥିଲେ, ଦୁଃଖକଷ୍ଟ, ଅପମାନ ସହିଥିଲେ । ପେଟରେ ଓଦାକନା ଦେଇ ଛିଣ୍ଡା ମଇଳା ପିନ୍ଧି ପାଠ ପଢ଼ିଥିଲେ ।

ଶୁଣିଲେ କଥା ଗଳ୍ପ ପରି ଲାଗେ । ଅନୁମାନ କରିଯାଇପାରେ, ଅନୁଭବ କରି ହୁଏ ନାହିଁ । ଅନୁଭବୀ ଉପରେ ଗତଜୀବନର ଘଟଣାମାନ ପ୍ରଭାବ ପକାଇଥିବ; କିନ୍ତୁ ସେ ସବୁ ବହୁଦିନ ଜୀବନ୍ତ ହୋଇ ରହେ ନାହିଁ । ପ୍ରକାଶ କରିବାକୁ ଆଗ୍ରହ ହୁଏ, ଖୁସିଲାଗେ, ଆତ୍ମଗୌରବ ମିଳେ ।

ସୁକାନ୍ତ କହେ, ରମା ମନଦେଇ ଶୁଣେ ।

ରମା ନିଜେ ନିଜକୁ ଉତ୍ତର ଦିଏ ।

ମୁଁ ଇଞ୍ଜିନିୟାରଙ୍କ ହାତଧରି ଘର କରିବାକୁ ଆସିଛି । ମୋ ସ୍ୱାମୀ ମୋର ସର୍ବସ୍ୱ । ସେ ମୋର ଦେବତା । ମୁଁ ତାଙ୍କୁ ସୁଖୀ କରିବାକୁ ଜୀବନ ପଣ କରିବି । କାଲି ସେ କଅଣ ଥିଲେ, ତା ସଙ୍ଗେ ମୋର ସମ୍ପର୍କ ନାହିଁ । ଆଜି ସେ ଯାହା, ମୁଁ ତାଙ୍କୁ ସେଇଆ କରି ପାଇଛି । ସେ ବାଟ କଢ଼ାଇବେ, ଭଲରେ ଓ ମନ୍ଦରେ, ମୁଁ ଅନୁଗମନ କରିବି । ତାଙ୍କରି ପ୍ରେମର କଣିକାକୁ ତାଙ୍କର ରୂପର ଛାଞ୍ଚରେ ନିଜ ଭିତରେ ଗଢ଼ିବି ।

ଶୋଇଲା ପିଲାର ଟିକି କୁଳୁକୁଳିଆ ମୁହଁକୁ ସେ ତନ୍ମୟ ହୋଇ ଅନାଇ ରହିଛନ୍ତି । ତଳେ ଠିଆହୋଇ, ପଲଙ୍କ ଉପରେ ଦୁଇ ହାତ ଭରା ଦେଇ ସେ

ନଇଁ ପଡ଼ୁଛନ୍ତି । ଢାକାମାପର ଛୁଆ କୁନୁ, ସଫେଦ ଧଳା ଗୋଲ୍‌ଥା ମୁହଁ, ପୂରିଲା ପୂରିଲା କଅଁଳିଆ ଗାଲ, ଗୋଲାପୀ କୁନକୁନ ଓଠ ଦିଓଟିରେ ସେ ମନେ ମନେ କ୍ଷୀର ଶୋଷୁଛି, ଓଠପତା ହଲୁଛି, ଗାଲ ଦିଓଟି ଚହଲୁଛି । ଚକଣିଆ ଟିକି ଲମ୍ବନାକର ପୁଡ଼ା ଦିଓଟି ଥରୁଛି । କପାଳରେ ଲମ୍ବିଲମ୍ବି କଜଳଗାର । କଳା ମିଚମିଚ ଘଞ୍ଚ କେଶ ତା'ର ମୁଣ୍ଡରେ ତେଲ୍ ଜୁବୁଜୁବୁ ।

ସୁକାନ୍ତ ଚାହିଁ ରହିଛି, ପଛରେ ହସ ହସ ରମା ।

ଢେଙ୍କାନାଳରେ ରହଣି, ବର୍ଷଟିଏ ପୂରିବାକୁ ବସିଲା ।

ସରକାରୀ ଚାକିରି ଆଜି ଏଠି କାଲି ସେଠି, ହାଣ୍ଡିରେ କଳା ପଡ଼ୁନାହିଁ । ପୁଣି କେଉଁଠିକି ବଦଳି ହେବାର ଖବର ଆସିଲାଣି । ଅବାଗିଆ ଝୁଙ୍କିଆ ଲୋକ, କଥା ମାନିବେ ନାହିଁ ।

ଟିକି ପିଲାକୁ ନେଇ ପୁଣି କେଉଁଣେ ଯିବା ?

ଯେଉଁଠିକୁ ସେମାନେ ପଠାଇବେ ।

ବଡ଼ ହାକିମ୍‌ଙ୍କ ଏମ୍. ଏଲ୍. ଏ. ଙ୍କ ମନ୍ତ୍ରୀ କାହାକୁ ଅରେ ଆମର ଅସୁବିଧା କଥା କୁହ । ଆଉ ଛ' ମାସ କଟୁ, ପିଲା ଟିକିଏ ଟାଣ ହୋଇଯାଉ, ତେଣିକି ଯହିଁ ପଠାଇବେ ତହିଁ ଯିବା ।

ଏଠାକୁ ବଦଳି ହୋଇ ଆସିବାକୁ ସେମାନଙ୍କ ଆଗରେ କିଏ ଯାଇ କରପତ୍ର ଯୋଡ଼ି ଅନୁରୋଧ କରିଥିବ । ସେତକ କରିବାର ଦକ୍ଷତା ମୋର ନାହିଁ ରମା, ସେପରି ଦକ୍ଷତା ଅର୍ଜନ କରିବାକୁ ମୁଁ କେବେ ଚେଷ୍ଟା କରି ନାହିଁ । ଏବଥାଏ ଆବଶ୍ୟକ ମନେକରୁନାହିଁ । ଭବିଷ୍ୟତ୍‌ରେ ଦେଖାଯିବ । ଟିକି ପିଲାକୁ ଅତି ସାବଧାନରେ ଆମେ ନେଇପାରିବା ।

କପିଳାସ ଯିବାକୁ ସକାଳୁ ସଜ ହୋଇଛନ୍ତି । ଶିବରାତ୍ରିକୁ କେତେ ଦୂର ଓ ପାଖ ସ୍ଥାନମାନଙ୍କରୁ ଆସି ପର୍ବତ ଉପରେ ସହସ୍ର ସହସ୍ର ଆବାଳବୃଦ୍ଧବନିତା ରୁଣ୍ଡ ହେବେ । ମନରେ କେତେ କେତେ କାମନା ଧରି ଆସିଥିବେ । ଉଜାଗର ରହିବେ ସାରାରାତି ।

ସେତ ଦେହରେ ନାନା ସ୍ଥାନରେ ଅନେକ ଜଳୁଥିବ । ଅନ୍ଧାର ରାତିରେ ଦୂରରୁ ଦିଶିବ ସହସ୍ର ସହସ୍ର ନକ୍ଷତ୍ରର ମିଳନ ସ୍ଥଳ ପରି । ସେ ଯାଉଛନ୍ତି ଯାତ୍ରା, ବାଟ, ଅଷ୍ଟାଦ୍ରୀ ଓ ସ୍ଥାଦ୍ରୀ ଚହଣି ଘରର କାର୍ଯ୍ୟ ପରିଦର୍ଶନ କରିବେ, ମହାଦେବଙ୍କୁ ବି ଦର୍ଶନ କରିବେ ।

ଗତବର୍ଷ ତ ଦେଖିଆସିଛ ରମା, ଏବର୍ଷ ଟିକିପିଲାକୁ ସାଙ୍ଗରେ ନେଇ କପିଳାସ ଯିବାକୁ ପୁଣି ମନ କରୁଛ କି ?

ମନ ହେଲେ ବି ତମେ ମତେ ସଙ୍ଗରେ ନେବନାହିଁ, ମୁଁ ଜାଣେ ଯେ, ମନ ରକ୍ଷା କରିବାକୁ ପଡେ ପସ୍ତରଦେଲ ।

ଅଭିମାନ କରୁଛ ? ଧବଳେଶ୍ୱରର ଶିବଲିଙ୍ଗ ଦେଖିଛ, ପୁରୀର ଲୋକନାଥ, ଭୁବନେଶ୍ୱର,—

ଭିଡ଼ ହୋଇଛି ମନ୍ଦିର ବେଢ଼ାରେ । ମହାଦୀପ ରାତି ଅଧରେ ଉଠିବ । ଏପାଖ ସେପାଖ ହୋଇ ବୁଢ଼ୀଙ୍କର ଗୋଡ଼ ଥକିଗଲାଣି ।

ଚାଲ, ଫେରିଯିବା ବସାକୁ ।

ଏଇଥିପାଇଁ ଜଗର ଲଗାଇ କଟକରୁ ମୋତେ ଭୁବନେଶ୍ୱର ଟାଣି ଆଣିଲ ? ତମର ମନର କଥା ମୁଁ ଜାଣିଛି ଯେ, କୋଳରେ ପୁଅଟିଏ ଧରିବାକୁ ଉତ୍କଣ୍ଠ ହେଲଣି । ମାନସିକ କରି ଆସିଛ ରମା, ଉପବାସ କରିଛ, ମହାଦୀପ ନ ଦେଖିଲେ ତମ ମନକାମନା ପୂର୍ଣ୍ଣ ହେବନାହିଁ, କି ମୋ କୁନୁ ତମ କୋଳକୁ ଆସିବ ନାହିଁ ।

ତମେ ଟେଙ୍କ ହେଲଣି, ମୋ ମନ ଜାଣିଲ କିପରି ମ ? ବୁଝିଲ ଯେ, ନିଜ ମନକଥା କହୁ ହେଉଛି ।

ପଛରୁ କିଏ ହସିଉଠିଲା ।

ରମା ମୁହଁ ଫେରାଇଲେ । କେତୋଟି ଝିଅ ହାତ ଧରାଧରି ହୋଇ ତାଙ୍କରି କଡ଼ଦେଇ ଆଗେଇ ଗଲେ, କଣେଇ ଚାହିଁଲେ । ସେମାନେ ଓଡ଼ିଆ ଘରର ଝିଅପରି ଦିଶୁନାହାନ୍ତି, ତମର କଥା ଶୁଣିନାହାନ୍ତି, ଶୁଣିଥିଲେ ବି ବୁଝିପାରି ନ ଥିବେ ।

ସୁକାନ୍ତ ରମାର ହାତ ଧରନ୍ତି । କହିଲେ, ଆସ, ପାର୍ବତୀଙ୍କ ମନ୍ଦିରକୁ ଯିବା, ଠାକୁରାଣୀଙ୍କର ଦର୍ଶନ କରି ଆସିବା ।

ଗୁଡରେ ଚମକ ଲାଗିଲା । ପାର୍ବତୀଙ୍କ ମନ୍ଦିର, ଦେଖାପରଶା ହେବ ? ଗୋଡ଼ ଚଳୁନାହିଁ, କିନ୍ତୁ ମନାକରି ପାରିବ ନାହିଁ ।

ମନ୍ଦିର ଭିତରେ ଭିଡ଼ । ଆଖି ବୁଲିଯାଉଛି । ସାମନାରେ କେତେ ପୁରୁଷ ଉଭାହୋଇ ଦର୍ଶନ କରୁଛନ୍ତି । କାହାନ୍ତି ସେ ହାକିମ ହଳଧର, ଯାହାଙ୍କୁ ଦେଖାଇବାକୁ ଗ୍ରାମରୁ ତାକୁ ଆଣିଛନ୍ତି ? ଲୋକଙ୍କ ମଝିରେ ଠିଆ ହୋଇ ଦର୍ଶନ କରୁଛନ୍ତି ସୁକାନ୍ତ, ଆଖି ଲାଗି ରହିଛି ଠାକୁରାଣୀଙ୍କ ଉପରେ, ଦୁଇହାତ ଯୋଡ଼ିଛନ୍ତି ।

ନାରୀମାନଙ୍କ ସଙ୍ଗେ ରମା ତଳେ ମୁଣ୍ଡ ଲଗାଇଲା । ପ୍ରାର୍ଥନା କଲା, ମାଆ ଗୋ ପାର୍ବତୀ ଠାକୁରାଣୀ, ଜଗତଜନନୀ, ତାଙ୍କୁ ଦୀର୍ଘାୟୁ କର, ଯଶସ୍ୱୀ କର, ତାଙ୍କର ସେବାରେ ନିରତ ମୋର ମନପ୍ରାଣ ଯେପରି ମୁଁ ସମର୍ପି ଦେବ ସେଇ ବୁଦ୍ଧି ମତେ ଦିଅ । ମାଆ ଗୋ, ତାଙ୍କର ଆନନ୍ଦ ପାଇଁ ମାଗିବି ଗୋଟିଏ ଖେଳନା, ତାଙ୍କର ମନର ପ୍ରତିମା କୁନୁ, ମୋ କୋଳରେ ଦିଅ—

ରମା, ରମା !

ପଛରୁ କିଏ ଡାକୁଛି, ଶେହ୍ଲାଳିଆ ଡାକ । କାହା ପାଟିପରି ଶୁଭୁଛି ? ରମାର ପାଖେ ପାଖେ ଚାଲିଛି ସୁକାନ୍ତ, ତାଙ୍କ ହାତ ଧରି କୁନୁ ଧୀରେ ଧୀରେ ପାହାଚ ଉଠୁଛି । ଟିକିଝିଅ ଇଗ୍ରି ରମାର ଗୁଡରେ ଲାଗିଛି । ଲମ୍ବ ପଣତ ସେ ବେଢ଼ାଇ ଦେଇଛି ଦେହରେ । ଇଗ୍ରି ଜକ୍ରଜକ୍ର କରି ଅନାଉଁଛି । ପାଦତଳକୁ ଲମ୍ବି ଆସିଥିବା ଶାଢ଼ୀ ଗୋଡ଼ରେ ଛନ୍ଦ ହେଉଛି । ଶୀଘ୍ର ଯାଇପାରୁନାହିଁ । କେତେ ପାହାଚ ଉଠି ସାରଲିଣି ।

ଗୁପ୍ତେଶ୍ୱର ମହାଦେବଙ୍କର ଅସ୍ଥାନ ପର୍ବତ ଉପର ଗୁମ୍ଫାଭିତରେ ବୋଲି ସେ ଶୁଣିଛି । ଅତି ବିଖ୍ୟାତ, ପ୍ରତ୍ୟକ୍ଷ ଦେବତା । ଦର୍ଶନ କରିବାକୁ ଉଚ୍ଛନ୍ନ ହୋଇ ସେ ଜୟପୁରରୁ ଆସିଛି ପ୍ରାୟ ଚାଳିଶ ମାଇଲ ଦୂର । ସୁକାନ୍ତ ମନା କରିଥିଲେ ।

ଅସାଧ୍ୟ ବାଟ । ବୈପାରିଗୁଡ଼ା ଯାଏ ଚଉଦ ମାଇଲ୍ ବାଟ । ଅସୁବିଧା ହେବ ନାହିଁ, ସେଇଠୁ ରାମଗିରି ରାସ୍ତାରେ କୋଲାବ ନଦୀକୂଳ ଗୁପ୍ତେଶ୍ୱର ମହାଦେବଙ୍କ ପାହାଡ଼-ଅସ୍ଥାନ ଯାଏଁ ରାସ୍ତା ଅତି ଖରାପ । ଘୋର ଅରଣ୍ୟ । ପାହାଡ଼ମାଳ ମଝିରେ ଉଠପଡ଼ ପଥୁରିଆ ବାଟ । ଅସଂଖ୍ୟ ଛୋଟବଡ଼ ନାଳ । ପିଲା ଦିଓଟିଙ୍କୁ ଖୋଲା ଜିପ୍‌ରେ ନେବା ନିରାପଦ ନୁହେଁ । ରହିବାକୁ ଅସୁବିଧା । ଶିବରାତ୍ରିର ଭିଡ଼ । ଏ ବର୍ଷ ନ ଗଲେ ଭଲ ହୁଅନ୍ତା । ରମା, ଯଦି ଆଗ୍ରହ ହେଉଛି, ଚାଲ ପାପଡ଼ାହାଣ୍ଡି ଯିବା । ସେ ସ୍ଥାନଟି ବି ଜୟପୁରରୁ ଘେଡିକ ବାଟ । ଭଲ ରାସ୍ତା । ସେଠାକାର ଶିବରାତ୍ରି ମଧ୍ୟ ଅତି ବିଖ୍ୟାତ ।

ଆଉ ତେବେ, ଏଇ ଜୟପୁରରେ ସବୁ ମହାଦେବଙ୍କୁ ନମସ୍କାର ଜଣାଇବ । ଦେବତା ଜଣେ । ତାଙ୍କଠାରେ ମଣିଷର ବିଶ୍ୱାସ ସହସ୍ର ଥାନରେ ମନ୍ଦିର ତୋଳିଛି, ଲିଙ୍ଗ ସ୍ଥାପିଛି, ସମସ୍ତେ ଏ କଥା ଜାଣନ୍ତି ।

କଥାକଟାକେ ତମର ଅଭିମାନ ରମା ? ପ୍ରସ୍ତୁତ ହୁଅ, ଯିବା । ମନର ଓରମାନ ମେଣ୍ଟିଯିବ ।

ପଥରଦେହ ଉପରେ କୋଲାବନଦୀର ଜଳ ଛୋଟ ଛୋଟ ଅସଂଖ୍ୟ ଧାର ହୋଇ ପ୍ରବାହିତ ହେଉଛି । ମହାଦେବଙ୍କ ଅସ୍ଥାନ ପାହାଡ଼ ଉପର ଗୁହା ଭିତରେ । ତଳକୁ ତଳ ପାହାଡ଼ର ତଳଯାଏ କେତେ ଗୁହା ଆପେ ଆପେ ସୃଷ୍ଟି ହୋଇଛି । ଦିନରେ ବି ବିଲ୍‌ବିଲ୍ ଅନ୍ଧାର । କେତେ ଯାତ୍ରୀ ଦୀପ ଜାଳିଛନ୍ତି । କେତେ ଟର୍ଚ୍ଚ ଆଲୁଅ ଲୁଚିଯାଉଛି । କାହାର ଅଳଅଳ ସାତ ବରଷର ଫ୍ରକପିନ୍ଧା ଝିଅଟି ଭାଇ-ଭଉଣୀଙ୍କର ଆଗେ ଆଗେ, ଅନ୍ଧାରଗୁହା ଭିତରେ ଏପାଖ ସେପାଖ ଧାଉଁଛି । ବଡ଼ଭାଇ ଅନିକି ଡାକୁଛି; ରମା, ରମା— ।

ସୁକାନ୍ତ ରମାର ହାତ ଧରିଲା । ଗୁଡ଼ ଗୁଡ଼ କହିଲା, ଦେଖ, ତମର ଟିକି ଅବତାର ! ପିଲାଦିନେ ତମେ ବି ଚଗଲି ହୋଇଥିବ ।

ରମା ତା'ର ଉତ୍ତର ଦେଲା ଆସି ଜୟପୁରରେ, କାହାକୁ ତମେ ଭଲପାଅ ନା, ରମା ନାମଟିକୁ ନା ମତେ ? ମୋ ନାମ ଯଦି ଚୋମଟ ହୋଇଥାଆନ୍ତା ?

ସୁକାନ୍ତ ଗେଲ୍ କରି କହିଲା, ମୋ ନାମ ଯଦି ହୋଇଥାଆନ୍ତା ହଳଧର ?

ସୁକାନ୍ତର ଦେହରେ ହାତ ବୋଳାଇ ଦେଇ ଦୁନି ରମା କହିଲା, ମୋ ନାମ ହୋଇଥାଆନ୍ତା ଜୟଶ୍ରୀ ।

ବଳବଳ ଅନ୍ଧାର ଦେହରେ ଦୁଇଟି ଦେହ ପରସ୍ପର ସ୍ପର୍ଶ ଅନୁଭବ କରୁଛି । ଦିଶୁନାହିଁ ତ ଦେହ, ହଜିଯାଉଛି ନାମ । ପାଖାପାଖି ହୋଇ ବହିଯାଉଛି ଦୁଇଟି ଯୋଡ଼ିଲ ଜୀବନ । ଛନ୍ଦାଛନ୍ଦି ହୋଇଛି ପରସ୍ପର ପାଖେ ସମର୍ପି ଦେଲା ଦୁଇଟି କାମନା ।

ରମା ଆଖି ଖୋଲିଲା । ଆଖିର ପତା ଗୋଦର ଲାଗୁଛି । ଠିକ ହେଉନାହିଁ । ବାମ ଆଖିଟି ଅଳପ ଖୋଲୁଛି । ଝରକା ପରଦାର ଫାଙ୍କବାଟେ ଦିଶିଯାଉଛି ପରଦାର ଆଲୁଅ । ଖସୁ ଟାଣ ହୋଇ ଆସୁଛି । କେତେବେଳ ହେଲାଣି କେଜାଣି । ଆରଘରୁ ଟେବୁଲ୍ ଘଣ୍ଟାର ଟିକ୍ ଟିକ୍ ଶବଦ ଶୁଭୁଛି । ଆଉ କାହାର ସ୍ୱର ଶୁଭୁନାହିଁ ।

ଦେହ ଅବଶ ଲାଗୁଛି । ବାମ ବାହୁ ଠିକ ହେଉନାହିଁ । ସୁଧ ପାହାନ୍ତ ଡାକ୍ତରବାବୁ ଆସି ହାତରେ ଇଞ୍ଜେକ୍ସନ ଦେଲେ । ବେଣ୍ଡିଆ ବ୍ରଣରେ ଔଷଧ ଲଗାଇ ପଟି ପକାଇଲେ । ସେ କେତେବେଳଯାଏ ରହିଲେ ରମାକୁ ଜଣାନାହିଁ ।

ପାଖରେ ବସି ଶୋମତୀ ଦେହ ଅଣ୍ଡିସୁଥିଲେ । ଜୟଶ୍ରୀ ପିଲା ଦୁଇଟିଙ୍କୁ ନେଇଗଲେ ତାଙ୍କ ଘରକୁ । ହଳଧର ପାଖକୁ ଆସି ସାନ୍ତ୍ୱନା ଦେଉଥିଲେ, ପିଲାଙ୍କ ପରି କାନ୍ଦୁଛ କାହିଁକି ? ଧୈର୍ଯ୍ୟ ଧର । ସାମାନ୍ୟ ବ୍ରଣଟିଏ, ଡାକ୍ତରବାବୁ ଇଞ୍ଜେକ୍ସନ ଦେଲେ ଭଲ ହୋଇଯିବ ।

ଇଞ୍ଜେକ୍ସନ୍ ଦେଲାବେଳେ ସେ କଟମଟ କରି ବାହୁଟିକୁ ଧରି ଆଙ୍କେଇ କରି କହିଥିଲେ, ହଲାଅ ନାହିଁ ।

କେତେବେଳେ ସେମାନେ ଗଲେ, ରମାକୁ ଜଣାନାହିଁ । ମନେ ପଡ଼ୁଛି । ପଲଙ୍କ ଉପରେ ସେ ଶୋଇଛି । ପିଲା ଦୁଇଟି ପାଖରେ ନାହାନ୍ତି ।

ଏବେ ମଧ୍ୟ ଭୁଗୁଭୁଗୁ ହୋଇ ପୋଡ଼ୁଛି । ମୁଣ୍ଡ ଟେକି ହେଉନାହିଁ, କେଡ଼େ ଓଜନଆଁ ଲାଗୁଛି ।

ରମା ଧୀରେ ଧୀରେ ଉଠି ବସିଲା । ମୁଣ୍ଡ ଝାଙ୍କି ଦେଉଛି । ଦେହ ଥରୁଛି । କ୍ଷୀଣ କଣ୍ଠରେ ଡାକିଲା, ରଙ୍ଗିଆ, ରଙ୍ଗିଅ—

ମଝିଘରୁ ଉତ୍ତର ଆସିଲା, ନିଦ ଭାଙ୍ଗିଗଲା କି ଭଉଣୀ ?

ଜୟଶ୍ରୀ ପାଖକୁ ଆସିଲେ, ମଶାରି ଟେକିଲେ, ଧପ ଧପ ମୁହଁ । ଫରୁଫରୁ କେଶ । ଦେହରେ ହାତ ମାରିଲେ । ଅଳପ ତାତିଛି । ପାଖରେ ବସିଲେ । ମୁଣ୍ଡ ଆଉଁସିଲେ । କଅଁଳେଇ ପଚାରିଲେ; କିପରି ଭଲ ଲାଗୁଛି ? ଶୋଇ ପଡ଼ିଲ ତ, ଔଷଧ ମୋଟେ ପାନେ ଖାଇଛ । ନଟବର ବାବୁ କହିଗଲେ, ନିଦ ଭାଙ୍ଗିଲେ ଔଷଧ ଦେବ, ନିଦ ଭଙ୍ଗାଇବ ନାହିଁ । ଏବେ ତ ଉଠିଲଣି ।

ମୁଣ୍ଡ ଓଜନଆ ଲାଗୁଛି, ଝାଙ୍କି ଦେଉଛି ଭଉଣୀ—

ଜୟଶ୍ରୀ କହିଲେ, ବ୍ୟସ୍ତ ହୁଅନା । ସାମାନ୍ୟ ଜ୍ୱରଟିଏ, ନଶ ବାଜି ଘଣ୍ଟିଆ ହେଲା । ତେଲ ଲାଗି ବସିରସି ଗଲା । ଡାକ୍ତରଙ୍କୁ ଖବର ନ ଦେଇ ନିଜେ ଡାକ୍ତରି କଲା, ଏଣୁତେଣୁ ଲଗାଇଲା । ଯେ ଯାହାହେଉ, ଡାକ୍ତରବାବୁ କହିଗଲେ; ଭୟର କାରଣ ନାହିଁ । ସେ ଏବେ ଆସିବେ ଯେ । ସକାଳଯାଏ ଗୋମତୀ ତମପାଖରେ ଜଗି ବସିଥିଲେ । ମୋତେ ଉଠାଇ ତମପାଖକୁ ଆସିବାକୁ କହିଲେ । ତାଙ୍କର ପିଲାଗୁଡ଼ିକ ଉଠି କାନ୍ଦ କାନ୍ଦ ହେବେ ବୋଲି ସେ ଚାଲିଗଲେ । ପୁଣି ଆସିବେ । ମୋ ହାତ ଧରି ଧୀରେ ଧୀରେ ପଦାକୁ ଯିବ ?

ରମା ଉତ୍ତର ଦେଲାନାହିଁ । ଦୃଷ୍ଟି ପିଲାଦୁହିଁଙ୍କୁ ଖୋଜୁଛି । ସେମାନଙ୍କର ପାଟି ଶୁଭୁନାହିଁ, ଖେଳ ଦିଶୁନାହିଁ ।

ଜୟଶ୍ରୀ ରମାର ଗୋଟିଏ ହାତ ଉଠାଇ ଧୀରେ ଧୀରେ ଆଉଁସିଲେ । ତାତି ଭରତି ହୋଇଛି । କଅଁଳେଇ କହିଲେ, କୃନୁ ଓ ଇରାଙ୍କୁ ଖୋଜୁଛ ?

ସେମାନଙ୍କ ପାଇଁ ଚିନ୍ତା କରନାହିଁ । କୁନୁ ଜେଜେଙ୍କ କୋଳରେ ଓ ଇରା ମୋ କୋଳରେ ଛୁଟ୍ କରି ଶୋଇପଡ଼ିଲେ । କେତେବେଳୁ ଉଠିଲେଣି । ତାଙ୍କ ପାଖରେ ଖେଳୁଛନ୍ତି । ସେ ହରି ଛୁଅରଙ୍କୁ ଣା ମ, ନିଜ ହାତରେ ପିଲା ଦୁଓଟିଙ୍କର ଯତ୍ନ ନେଇ, ନିଜେ ପିଲା ହୋଇ ତାଙ୍କ ସାଥିରେ ଖେଳୁଛନ୍ତି । ତମ ପାଖ ଛୁଡ଼ି ପିଲାଙ୍କୁ ଦେଖିଆସିବାକୁ ଗଲେ ତଡ଼ି ପକାଉଛନ୍ତି । କହୁଛନ୍ତି, କାହିଁକି ଆସିଲ ? ପିଲାଙ୍କୁ କଅଣ ମୁଁ ଖେଳାଇ ରଖି ପାରିବି ନାହିଁ ? ସୁକାନ୍ତ ବାବୁ ନାହାନ୍ତି, ରମାଦେବୀଙ୍କର ସେବାଯତ୍ନ ତମେ କରିବ ।

ରମାର ଦୁଇଆଖିରୁ ଲୁହଧାର ଝରିପଡ଼ିଲା । ସେ ନନ୍ଦଶ୍ରୀଙ୍କର ହାତ ଧରି କହିଲା, ତାଙ୍କ ପାଖକୁ ଖବର ଦିଅ । ସେ ରଗିକରି ଯାଇଛନ୍ତି, ଶୀଘ୍ର ଫେରି ଆସିବେ ।

ବଣ ପାହାଡ଼ ଭିତରେ କେଉଁଠି ସେ କାମକାର୍ଯ୍ୟରେ ବ୍ୟସ୍ତ ରହିଥିବେ ଭଉଣୀ, ଖବର ପାଇଲେ ଛନଅଁ ହେବେ, ଅସ୍ତବ୍ୟସ୍ତ ହୋଇ ଧାଇଁଆସିବେ । ରୋଗବଇରାଗ ଖବର ପ୍ରିୟଜନମାନେ ଶୁଣିଲେ ତିଳକୁ ତାଳ ମଣନ୍ତି । ଘର କରି ଚଳିଲେ ରୋଗଶୋକ ଯୋଗବିୟୋଗ ଘଡ଼ିଘଡ଼ିକେ ଉଠେ ଓ ପଡ଼େ । ସୁକାନ୍ତବାବୁଙ୍କ କୋପ ଯେ ପାଣିଫୋଟକା । ତମକୁ ସେ ପ୍ରାଣରୁ ଅଧିକ ସୁଖ ପାଆନ୍ତି, ଏହା ତ ମୋତେ ଅଜଣା ନାହିଁ । ଫେରିଆସିବାକୁ ସେ ନିଜେ ଛଟପଟ ହେଉଥିବେ । ବ୍ୟସ୍ତ ହୁଅନା, ମୁଁ ଡାକ୍ତରଙ୍କୁ ଡକାଇ ପଠାଉଛି । ଡାକ୍ତର ନଟବରବାବୁ ଯେ ସିଦ୍ଧହସ୍ତ ।

ରମା କହିଲା, କେଡ଼େ ଭୟଙ୍କର ଅସାର ସପନ ଦେଖିଲି ।

ଜୟଶ୍ରୀ କହିଲେ, ସମସ୍ତେ ସେମିତି ଦେଖନ୍ତି ରମା । ଯିଏ ଯାହାକୁ ଯେତିକି ଭଲପାଏ, ପାଖଛଡ଼ା ହେଲେ, ମନରେ ଦୁଃଖ, ଅଭିମାନ ରହିଯାଇଥିଲେ, ଡର ଭେଦଥିଲେ, ସେହି ପ୍ରିୟଜନଙ୍କ ନାମରେ ବେଳେବେଳେ ମଣିଷ ମନ୍ଦ ସପନ ଦେଖେ । ସପନକୁ ମନେପକାଇ ଦକଦକ ହେବା ଉଚିତ ନୁହେଁ । ସେଗୁଡ଼ା ମନର ଭ୍ରମ, ସେଗୁଡ଼ାକ ମିଛ । ଆସ, ମୋର ହାତଧରି ଆସ ।

ଘରେ ରଙ୍ଗିଆ ଓ ପାଙ୍ଗଶା ଅଛନ୍ତି, କାମ କରୁଛନ୍ତି, ହରି ସିଅନ ଦାଣ୍ଡରେ ଜଗିବସିଛି, ତଥାପି ଜୟଶ୍ରୀ ରମାର ସବୁ ଯତ୍ନ ନେଉଛନ୍ତି ।

ରମାର ଜର ବଢ଼ିଛି ।

ଡାକ୍ତର ଆସି ଦେଖିଗଲେ । କହିଗଲେ ସେ ବିଛଣାରେ ପଡ଼ିରହନ୍ତୁ, ଦୁଇଘଣ୍ଟା ପରେ ଆସି ସେ ଇଞ୍ଜେକ୍‌ସନ୍ ଦେଇଯିବେ, ଭୟର କାରଣ ନାହିଁ ।

ଗୋମତୀ ଆସିଲେ । ଜୟଶ୍ରୀଙ୍କୁ ପିଲାମାନଙ୍କର ଯତ୍ନ ନେବାକୁ କହିଗଲେ ନିଜେ ରମା ପାଖରେ ବସି ରହିଲେ ।

ଖବର ପାଇ ଇନ୍ଦିରା ଆସିଲେ, ରମାର ଦେହ ଅାଉଁସି ସେ ଫେରିଗଲେ । ତାଙ୍କର ପିଲାଗୁଡ଼ାକ ପାଟିତୁଣ୍ଡ କରିବେ, ରୋଗୀର ନିଦ୍ରାରେ ବାଧା ଅାସିବ, ସେଥିପାଇଁ ସେ ରହିପାରିଲେ ନାହିଁ ।

ରମା ଅଚିତ୍ କି ପଡ଼ିରହିଛି । ଦେହ ଥରୁଛି, ହୃଦର ସ୍ପନ୍ଦନ ବଢ଼ିଛି, ଅଣନିଶ୍ୱାସୀ ଲାଗୁଛି, ମୁଣ୍ଡ ଭୁମୁଛି । ବେଳେବେଳେ ସେ ଆଖି ଖୋଲୁଛି । କାହାକୁ ଯେପରି ଖୋଜୁଛି, ପୁଣି ଆଖି ବୁଜୁଛି ।

ଜୟଶ୍ରୀ ଫେରିଆସି ମୁଣ୍ଡରେ ପାଣିପଟି ଦେଉଛନ୍ତି । ନଟବରବାବୁ ଓ ହଲଧରବାବୁ ଆସିଲେ । ଡାକ୍ତର ନଟବର ରମାକୁ ଭଲକରି ପରୀକ୍ଷା କଲେ, ଇଞ୍ଜେକ୍‌ସନ୍ ଦେଲେ । ଔଷଧର ପ୍ରେସ୍‌କ୍ରିପ୍‌ସନ୍ ଲେଖି ଗୋମତୀଙ୍କୁ କହିଲେ, ମୁଁ ଡାକ୍ତରଖାନାକୁ ଯାଉଛି, ହରି ସିଅନକୁ ପଠାଇଦେବ, ସେ ଔଷଧ ଆଣିବ, ପାଣିପଟି ଦେଉଥାଅ, ଜର କମିଗଲେ ବନ୍ଦ କରିବ । ଥର୍ମୋମିଟର ରଖିଥାଅ । ୧୦୩ ଡିଗ୍ରୀ ଅଛି, ୧୦୧କୁ କମିଆସିଲେ ଆଉ ପାଣିପଟି ଦେବନାହିଁ ।

ଗୋମତୀ କହିଲେ ମୁଁ ତମର ଏଇ ଥର୍ମୋମିଟରରେ ଉତ୍ତାପ ଦେଖିପାରିବି ନାହିଁ । ମତେ ବି ଘରକୁ ଯିବାକୁ ପଡ଼ିବ । ପିଲାଗୁଡ଼ା ଉତ୍ପାତ କରିବେ । ଜୟଶ୍ରୀ ତ ଅଛନ୍ତି, ସେ ମୋ ଆସିବାଯାଏ ଜଗିରହିବେ ।

ଜୟଶ୍ରୀ କହିଲେ, ରମାଦେବୀଙ୍କ ପାଖେ ପାଖେ ମୁଁ ଥିବି ଯେ—

ହଳଧରବାବୁ କହିଲେ ଚିନ୍ତା ନାହିଁ, ମୁଁ ଉପ୍ସ ଦେଖିଦେବ ଡାକ୍ତର-ବାବୁ, ଆପଣ ଓ ଗୋମତୀଦେବୀ ମୋ ଗାଡ଼ିରେ ଯାଉନ୍ତୁ, ଡ୍ରାଇଭର ଗାଡ଼ି ପାଖରେ ଅଛୁ, ମୁଁ ଟିକଏ ଡେରିକରି କୋର୍ଟକୁ ଯିବି । ପିଲ ଦୁଓଟିଙ୍କୁ ରଙ୍ଗିଆ ଆମ ଘରେ ଖେଳାଉଛୁ ।

ହଳଧରବାବୁ ଡାକ୍ତରଙ୍କ ସଙ୍ଗେ ପଦାକୁ ଅସିଲେ । ପଗ୍ଚରିଲେ, ମୁହଁ ଦେଖୁଦେଲ ଅଧିକ ଫୁଲିଉଠିଛି । ଅବସ୍ଥା କଅଣ ଦେଖିଲେ ? ସୁକାନ୍ତବାବୁଙ୍କ ପାଖକୁ ଲୋକ ପଠାଇବା ?

ଚେଷ୍ଟା କରିବା ଆମର କର୍ତ୍ତବ୍ୟ । ଭଲ ମନ୍ଦ କଅଣ ହେବ ସେକଥା କେହି କହିପାରିବେ ନାହିଁ । ସୁକାନ୍ତବାବୁଙ୍କୁ ଖବର ପଠାଇବା ଉଚିତ । ରକ୍ତରେ ବିଷ ଚଢ଼ିଛି । ଆପଣଙ୍କୁ ଅଗୋଚର ନଥିବ ଯେ ରକ୍ତ ବିଷାକ୍ତ ହେଲେ ମାରାତ୍ମକ ହୋଇଉଠେ । ଜୀବନମରଣ ଧସ୍ତାପସ୍ତା ହୁଅନ୍ତି । ରମାଦେବୀଙ୍କର ଅବସ୍ଥା ସେତେ ଭୟପ୍ରଦ ନୁହେଁ, କିନ୍ତୁ ଅତି ସାବଧାନ ହେବା ଲୋଡ଼ା ।

ରାତି ଅଧ ।

ବାହାରେ କଟିକଟି ଅନ୍ଧାର । ସୁକାନ୍ତର ଶୋଇବା ଘରେ ନେଳିଆ ବିଜୁଳି ଆଲୁଅ ଜଳୁଛି । ପଲଙ୍କ ଉପରେ ଚିତ୍ହୋଇ ରମା ଶୋଇଛି । ମଶାରି ଟଙ୍ଗା ହୋଇଛି ।

ମଝିଘରେ ଟେବୁଲ ପାଖରେ ଗୋଟିଏ ଆରାମ ଚଉକିରେ ବସିଛନ୍ତି ହଳଧରବାବୁ । ହାତରେ ସଚିତ୍ର ଗୀତଗୋବିନ୍ଦ ବହି । ବିଜୁଳି ଆଲୁଅ ଉଜ୍ଜ୍ୱଳ ଜଳୁଛି । ଟେବୁଲ ଉପରେ ଔଷଧ ବୋତଲ, ମଝିକବାଟ ଆଉଜା, ଦରମଇଲା ନେଳୀ ପରଦା ଝୁଲୁହୋଇଛି । ଖଞ୍ଜାପାଟରେ କବାଟ ନିକଟରେ ବସି ହରି ଢୁଲାଉଛି । ଦାଣ୍ଡଘରେ ଶୋଇଛି ରଙ୍ଗିଆ ।

ସେମାନେ ସତର୍କ ରହିଛନ୍ତି । ହଳଧର ଆଦେଶ ଦେଲେ ଡାକ୍ତର ନଟବର ବାବୁଙ୍କୁ ଖବର ଦିଅଯିବ । ଡାକ୍ତର ଓ ଗୋମତୀ ପାଖରେ ଥିଲେ, ରାତି ନଅଟାରେ ନିଜ ଘରକୁ ଫେରିଗଲେ ।

ଜୟପୁରରେ ଅନେକ ଡାକ୍ତର ଅଛନ୍ତି । ସ୍ତ୍ରୀମାନଙ୍କ ହସ୍ପିଟାଲ୍‌ର ଦାୟିତ୍ୱରେ ଜଣେ ଡାକ୍ତରାଣୀ ମଧ୍ୟ ଅଛନ୍ତି; କିନ୍ତୁ କୌଣସି ଘରୋଇ କାମ ପାଇଁ ସେ ଛୁଟିନେଇ ଭୁବନେଶ୍ୱର ଯାଇଛନ୍ତି । ଶୁଣାଯାଉଛି, ସେ ତାଙ୍କର ବିବାହସମ୍ବନ୍ଧ ପକ୍‌କା କରିବାକୁ ଯାଇଛନ୍ତି ।

ଡାକ୍ତର ନଟବରଙ୍କ ଉପରେ ଦୁଇଟି ହସ୍ପିଟାଲର ଦାୟିତ୍ୱ । ସିଦ୍ଧହସ୍ତ ବୋଲି ସମସ୍ତଙ୍କର ଡାକରା ପଡ଼େ । ରାତିରେ ନିଶ୍ଚିନ୍ତରେ ଶୋଇବାକୁ ବେଳ ମିଳେନାହିଁ । ସେ ଆଗ ତାଙ୍କର କର୍ତ୍ତବ୍ୟ କଥା ବୁଝନ୍ତି । ଆଉ କେଉଁଠୁ ଡାକରା ଆସିବଣି, ତେଣୁ ସେ ରହିପାରିଲେ ନାହିଁ ।

କହିଗଲେ, ନିଦ ଔଷଧ ଦେଇଛୁ, ରମାଦେବୀ ଶୋଇ ପଡ଼ିବେ । ଜୟଶ୍ରୀଦେବୀ ପିଲାଦିଓଟିଙ୍କୁ ସମ୍ଭାଳି ନେଉନ୍ତୁ । ସେମାନେ ଗୋଳମାଳ କଲେ ରୋଗୀର ନିଦ ଭାଙ୍ଗିବ । ଭୟର କାରଣ ନ ଥିଲେ ବି ସୁକାନ୍ତବାବୁଙ୍କର ଆସିବା ପ୍ରୟୋଜନ । ହରି ଓ ରଙ୍ଗିଆ ପାଳିକରି ଚେଇଁ ରହନ୍ତୁ । ଆବଶ୍ୟକ ହେଲେ ମୋତେ ଖବର ଦେବେ । ନିଦ ନ ଭାଙ୍ଗିଲେ ଆଉ ତାଙ୍କୁ ଔଷଧ ଦେବା ଲୋଡ଼ା ହେବନାହିଁ । ନିଦ ଭାଙ୍ଗିଲେ ସେଇ ମିକ୍‌ଚରରୁ ଆଉ ପାନେ ଦେବେ । ଇଞ୍ଜେକ୍‌ସନ୍ ଦିଆ ହୋଇଛି । ଆଶାକରେ, ସେ ଭଲ ହୋଇଯିବେ ।

ଜୟଶ୍ରୀ ରମା ପାଖରେ ଥିଲେ ।

ବକ୍ସିରପଡ଼ା ହଳଧର ନିଜ ଘରେ କୁନୁ ଓ ଇରାଙ୍କୁ ଜଗି ରହିଥିଲେ । ଆରାମଚଉକିରେ ବସି ଖବରକାଗଜ ଓଲଟାଉଥିଲେ । ଅଟିବୃଜ ହୋଇଗଲା । ଦାଣ୍ଡ କବାଟ ମୁକୁଳା । ବାରଣ୍ଡାରେ ଚାକର ଜଗିବସିଛି, ତଥାପି ମନରେ ଧକ । ଦାଣ୍ଡଘର ଆଲମାରିରେ କେଶ୍ ରେକର୍ଡ଼୍ ଗୁଡ଼ିଏ ରଖା ହୋଇଛି, ପଢ଼ିବାକୁ ବେଳ ମିଳାନାହିଁ । କେତେଗୁଡ଼ିଏ କେଶ୍‌ରେ ରାୟ ଲେଖିବାକୁ ଥିଲା । କଚେରିରେ ମନ ସ୍ଥିର କରି, ନଥିପତ୍ର ତନଖି କରି ସିଦ୍ଧାନ୍ତରେ ଉପନୀତ ହେବା ସମ୍ଭବ ନୁହେଁ । ସେଥିପାଇଁ କେତୋଟି କେଶ୍‌ର ନଥି ଘରକୁ ଅଣାଇଥିଲେ ।

ଇବ ମା ମା ହୋଇ କାନ୍ଦ ଉଠିଲା ।

ହଳଧରଙ୍କର ଗ୍ଭଇନ୍ଦ ଭାଙ୍ଗିଗଲା । ସେ ପଲଙ୍କ ପାଖକୁ ଗଲେ । ଫିରି ଟିପି ଆଲୁଅ ଜାଳିଲେ । ମଶାରି ଟେକ ମୁହଁ ଗଳାଇ ଦେଖିଲେ, କୁନ୍ତୁ ଘୁଙ୍ଗୁଡ଼ି ମାରୁଛୁ, ଇବ ପଲଙ୍କ ଉପରେ ବସି ହୋଧରି କାନ୍ଦୁଛୁ । ତାକୁ ପଲଙ୍କରୁ ଆଣି ଗ୍ଭତରେ ଘାକ ଧରଲେ । ବୁଝାଇବାକୁ ଚେଷ୍ଟାକଲେ, ସେ ତା'ର ମାଅପାଖକୁ ଯିବ ବୋଲି ଜିଦ୍ଧ ଧରଛୁ ।

ହଳଧର ତାକୁ ନେଇ ପଦାକୁ ଆସିଲେ ।

ଇବର ପାଟି ଶୁଣି ଜୟଶ୍ରୀ ତରବର ହୋଇ ସୁକାନ୍ତର ଘରୁ ବାହାରି ରାସ୍ତା ପାରହୋଇ ହଳଧରଙ୍କ ପାଖକୁ ଆସିଲେ । ଇବକୁ କୋଳକୁ ନେଇ କହଲେ, ତମେ ଯାଅ ରମା ପାଖକୁ, ସେ କଷ୍ଟିନ୍ତରେ ଶୋଇଛୁ, ନିଦ ଭାଙ୍ଗିଲେ ଔଷଧ ଦେବ, ନୋହଲେ ନାହିଁ । ମୁଁ ଇବକୁ ବୁଝାଇ ଶୋଇ ପକାଇବ । ମୁଁ ଗଲେ ତମେ ଆସିବ । ଗୋଡ଼େ ଗୋଡ଼େ ମୁଁ ଯାଉଛୁ ।

ଆଖି ମାଡ଼ ମାଡ଼ ପଡ଼ୁଛୁ, ହଳଧର ସୁକାନ୍ତର ଘରକୁ ଆସିଲେ ।

ରୋଗୀ ପାଖରେ ଜଗିରହବା ଆଜ ତାଙ୍କର ପ୍ରଥମ ନୁହେ, କନ୍ତୁ ପରଘରେ ଅନ୍ୟର ଘରଣୀର ରୋଗଶଯ୍ୟା ପାଖରେ ଅନଦ୍ରା ହୋଇ ଜଗି ରହବା ଆଜ ପ୍ରଥମ ।

ଇବ ଚୁପ ହେଲଣି, ଜୟଶ୍ରୀ ଫେରଲେ ନାହିଁ, ଝିଅକୁ ଶୁଆଉଣୁ କଦେ ଶୋଇପଡ଼ଲେ ? ହୋଇଥିବ । ସକାଳୁ ଉଠି ସେ ଏପାଖ ସେପାଖ ହୋଇ କ୍ଳାନ୍ତ ହୋଇପଡ଼ିଥିଲେ ତ ।

ସୁକାନ୍ତର ଘରେ ଉନ୍ନିଦ୍ର ହୋଇ ବସି ହଳଧର କେତେ କଅଣ ଭାବୁଥିଲେ, ଅତୀତକୁ ଅଣ୍ଡାଳୁଥିଲେ, ବର୍ତ୍ତମାନ ସଙ୍ଗେ ତାକୁ ତଉଲୁଥିଲେ ।

ଜୟଶ୍ରୀ ନୂଆ ମଣିଷ ହୋଇଛନ୍ତି । ଆଜ ବେଶଭୂଷା ପ୍ରତି ଅଉ ତାଙ୍କର ନଘାନଜର ନାହିଁ । ସେଥିକି ରମାର ଆଲୁଥାଳ ପାଇଁ ସେ କେତେ ସମାଲୋଚନା କରନ୍ତି, ନାକଟେକ ପଛରେ ଛିଙ୍ଗୁ କରି ତାଙ୍କ ଆଗରେ

କହନ୍ତି, ତାଆର ସେବା କରିବାକୁ, ତାଆର ପିଲା ଦୁଓଟିଙ୍କର ଯତ୍ନ ନେବାକୁ ସେ ନିଜକୁ ଭୁଲିଛନ୍ତି ।

ରମା ସତେ ଭଲ ହେବ ?

ଜୟଶ୍ରୀଙ୍କ ଆଖିରେ ଲୁହ ଛଳଛଳ । ପଚାରିଲେ ରୁନରୁନ, କହ ମ, ଡାକ୍ତର କଣ ତମକୁ କହିଲେ । ମୋ କାନରେ ତ ବାଜିଗଲା, ମୁହଁରେ ବିଷବ୍ରଣ, ଅତି ମାରାତ୍ମକ, ବେଳେବେଳେ ବୁଝି ହୁଏନାହିଁ ।

ହଳଧର କହିଲେ, ସତ ଯେ, ଡାକ୍ତରଙ୍କର ବାକି କଥାତକ ତମେ ଶୁଣିପାରିନାହଁ । ସେ କହିଲେ, ରମାଦେବୀଙ୍କର ଅବସ୍ଥା ମୋଟେ ସାଙ୍ଘାତିକ ନୁହେଁ, ସେ ନିଶ୍ଚୟ ଭଲ ହୋଇଯିବେ । ତଥାପି—

ତଥାପି ?

ଜୟଶ୍ରୀଙ୍କର ଆଖିରୁ ଲୁହ ଝରିଆସିଲା । ସେ କହିଲେ, ଭଗବାନ୍ ନ କରନ୍ତୁ ଯଦି କଅଣ ଅମଙ୍ଗଳ ହୋଇଯାଏ, ସୁକାନ୍ତଙ୍କର କିଛି ଭାସିଯିବ ନାହିଁ । ବଡ଼ ହାକିମ, ବୟସ ଅଛି, ଲୋକେ ବଲେ ତାଙ୍କୁ କୋଳେଇ କରିବାକୁ ଧାଉଁଡ଼ି ଦେବେ । ସବୁ ସରିଯିବ ଏଇ ପିଲା ଦୁଓଟିଙ୍କର । ଯିଏ ନୂଆ ଆସିବ, ସେ ଯେତେ ଯାହା କଲେ ବି ଟିକିଏ କେଉଁଠି କମ୍ତା, କିନ୍ତୁ ରହିଯିବ । ଠାକୁରେ ରମାକୁ ଭଲ କରିଦିଅନ୍ତୁ ।

ହଳଧର କହିଲେ, ତମେ ଚିନ୍ତା କର ନାହିଁ, ରମା ନିଶ୍ଚୟ ଭଲହେବେ । ଡାକ୍ତର ନଟବରଙ୍କର ଯେଉଁଠି ହାତ ଲଗିଛି, ସେ ରୋଗୀ ଝାଡ଼ିଝୁଡ଼ି ହୋଇ ବସିଛି । ତେବେ, ଡାକ୍ତର ଭଗବାନ ନୁହନ୍ତି । ସେ ଚେଷ୍ଟା କରିବେ, ଔଷଧ ଦେବେ, ତେଣିକି ଭାଗ୍ୟରେ ଯାହା ଥିବ ହେବ ।

ଜୟଶ୍ରୀ କହିଲେ, ରମା କେବଳ ସୁକାନ୍ତବାବୁଙ୍କୁ ଖୋଜୁଛି, ଯେତେ ସେ ମୁହଁ ଟାଣକରି କହୁ, କି ଲୁଚାଇବାକୁ ଚେଷ୍ଟାକରୁ ପଛେ । ଅତି ସରଳ ଝିଅଟି, ଛଳକପଟ ଜାଣେ ନାହିଁ, ତା ମନର କଥା ତା ତୁଣ୍ଡରୁ ଖସିପଡ଼େ ।

ସୁକାନ୍ତବାବୁ ବାହାହେବା ଆଗରୁ ତାକୁ ଦେଖି ନଥିଲେ, କି ପସନ୍ଦ କରି ନ ଥିଲେ । ଗୋଟିଏ ଝୁଙ୍କରେ ସେ ବାହାହେଲେ ସେଇ ମୋହଫନ୍ଦିଆ ଝିଅକୁ, ପରେ ଆଉ ତାଙ୍କ ମନକୁ ରମା ପାଇଲା ନାହିଁ । ଛୋଟ ଛୋଟ କଥାରେ ସୁକାନ୍ତବାବୁ ତା ଉପରେ ଅନର୍ଥକ ବିରକ୍ତ ହୁଅନ୍ତି । ସେ ଦେଖିଏ ଓଲଟି ଜବାବ ନଦେଇ ସବୁ ସହେ, କାନ୍ଦେ । ସେ ତା ମନକୁ ଲୁହ ପୋଛେ, ପଛକଥା ପଛକୁ ପକାଇ ପୁଣି ଘରକରଣାରେ ଲାଗେ । ସେ ହସେ ହିଁ, କିନ୍ତୁ ତା ହସ ମନରୁ ବାହାରେ ନାହିଁ, ଓଠରୁ ବାହାରେ ।

ତମେ ଭୁଲ୍ ବୁଝିଛ, ଜୟଶ୍ରୀ, ତା ହୋଇଥିଲେ ରମା ସୁକାନ୍ତବାବୁଙ୍କୁ ଏତେ ଖୋଜନ୍ତେ ନାହିଁ । ବଢ଼ ପାହିଲେ ଡ୍ରାଇଭର ହାତରେ ପତ୍ର ଦେଇ ଆମ ଗାଡ଼ି ପଠାଇଦେବା, ସୁକାନ୍ତ ବାବୁ ସେଥିରେ ଆସନ୍ତୁ କି ତାଙ୍କ ଜିପ୍‌ରେ ଆସନ୍ତୁ, ତାଙ୍କ ଘରକରଣା କଥା ସେ ବୁଝିବେ । ବନ୍ଧୁ ହିସାବରେ ଆମର ଯେତିକି କର୍ତ୍ତବ୍ୟ, ଆମେ ସେତିକି କରିବା । ତାଙ୍କର ଦାମ୍ପତ୍ୟଜୀବନର ଚଳନ ସମ୍ବନ୍ଧରେ ଆମର ଅନୁସନ୍ଧାନ କରିବା କି ଭଲମନ୍ଦ ମତ ପ୍ରକାଶ କରିବା ଉଚିତ ନୁହେଁ ।

ଜୟଶ୍ରୀଙ୍କୁ ହଲଧରଙ୍କର ମନ୍ତବ୍ୟ ଚିମୁଟିଲପରି ଲାଗିଥିବ । ସେ ମୁହଁ ଆମ୍ବିଲା କଲେ, ପୁଣି ହସିଦେଇ କହିଲେ, ସତକଥା, କାହାରି ସଙ୍ଗେ କାହାର ସମ୍ପର୍କ ନାହିଁ, ପରସ୍ପରର ଚଳନ ଓ ପରସ୍ପର ସମ୍ପର୍କ ସମ୍ବନ୍ଧରେ ଆଲୋଚନା କରିବା ଅନ୍ୟାୟ । ଏହା ଜଣାକଥା; କିନ୍ତୁ ଯାହା ଆଖିରେ ପଡ଼େ, କାନରେ ପଶେ, ମନରେ ଭେଦେ, ସେଥିରୁ ମୁକ୍ତ ଭିତରେ ଟିକିମିକି ହୋଇ ଫୁଟେ, ତୁଣ୍ଡବାଟେ ଉଛୁଳିପଡ଼େ । ଚାକିରିଆ ଜୀବନ ବିଚିତ୍ର । କେତେ ସ୍ଥାନକୁ ବଦଳି ହୁଏ । ଅଜଣା ଅଶୁଣା ଲୋକେ ଏକାଠି ହୁଅନ୍ତି, ଘନିଷ୍ଠତା ବଢ଼େ । ହଠାତ୍ ଦିନେ ବଦଳି ଆଦେଶ ଆସେ । ଘନିଷ୍ଠ ସମ୍ବନ୍ଧ ଛିଣ୍ଡିଯାଏ । ପରଜୀବନରେ ଅନ୍ତର ଥରେ ଏକାଠି ହେବା କେବଳ ଆକସ୍ମିକ ଘଟଣା ।

ସତ କହିଲ ଜୟଶ୍ରୀ, ସମସ୍ତେ ବିଦେଶୀ । ଯେତେଦିନ ଗୋଟିଏ ସ୍ଥାନରେ, ପୁଣି ପଡ଼ୋଶୀ ହୋଇ, ପାଖାପାଖି ରହିବାକୁ ପଡ଼େ, ପରସ୍ପର

ପ୍ରତି ସହାନୁଭୂତି ଦେଖାଇବାକୁ ହେବ । ସୁଖଦୁଃଖ ସମସ୍ତଙ୍କର ଅଛି । ଆକସ୍ମିକ ଆପଦ ବିପଦକୁ କେହି ଆଡ଼େଇ ଦେଇ ପାରିବେ ନାହିଁ । ସୁକାନ୍ତବାବୁ ଦୂରରେ ଅଛନ୍ତି । ସେ ଫେରିବାଯାଏ ତାଙ୍କର ସ୍ତ୍ରୀ ଓ ପିଲାମାନଙ୍କ ପ୍ରତି ତମର ସାମାଜିକ କର୍ତ୍ତବ୍ୟ ରହିଛି । ତମର ସେବାପରାୟଣତା ଦେଖି ମୁଁ ମୁଗ୍ଧ ହୋଇଛି । ତମର ନୂଆ ରୂପ ଦେଖି ମୁଁ ନିଜକୁ ଭାଗ୍ୟବାନ୍ ମଣୁଛି । ମୁଁ ଭାବୁଛି, ମୋ ଜୟଶ୍ରୀ କେବଳ ପତ୍ନୀ ନୁହନ୍ତି, ସେ ସେବିକା, ସେ ମାତା, ସେ କର୍ତ୍ତବ୍ୟପରାୟଣା ନାରୀ । ମୋର ମନରେ ଗୋପନ କଥା ଆସିବାର କଥା ।

ହଳଧର ନଇଁପଡ଼ି ଜୟଶ୍ରୀଙ୍କର ଗଣ୍ଡେ ଚୁମ୍ବନ କଲେ । ପତ୍ନୀଙ୍କର କାନ୍ଧ ଉପରେ ମୁଣ୍ଡ ରଖି ଶୋଇପଡ଼ିଥିବା ଟିକି ଝିଅ ଇରାର ମୁହଁରେ ମଧ୍ୟ ଚୋକ ଦେବାକୁ ଭୁଲିଲେ ନାହିଁ ।

ଜୟଶ୍ରୀ ଲଜ୍ଜିତ ହେଲେ । ସୁକାନ୍ତର ଘର ଆଗ ଅଧାଅନ୍ଧାରିଆ ଖୋଲା ପଡ଼ିଆରେ ହଳଧରଙ୍କ ପାଦ ପଛେଇ ଯାଇ କହିଲେ, କେଡ଼େ ଅଲଜୁକ ମ, ଗ୍ରାହକମାନେ ଚାହିଁଛନ୍ତି, ସ୍ଥାନ ଓ ସମୟ ଭୁଲିଯାଉଛ ? ତମେ ମନ୍ଦିରରେ ବସି ରମାକୁ ଜଗିଥା, ମୁଁ ଇରାକୁ ଶୁଆଇ ଦେଇ ଆସିଲେ ତମେ ଯାଇ ଶୋଇବ । ଅନ୍ୟଥା ହେଲେ ତମର ମୁଣ୍ଡ ବିନ୍ଧେ ବୋଲି କହ ।

ଜୟଶ୍ରୀ ଏତେବେଳଯାଏ ଫେରିଲେ ନାହିଁ । ଅପେକ୍ଷା କରି ଅଳସ ସମୟ କଟାଇବାକୁ ହଳଧରବାବୁ ଗୀତଗୋବିନ୍ଦର ପତ୍ର ଓଲଟାଇ ଚାଲି ଦେଖୁଛନ୍ତି । ମନୋରମ ମଧୁର ପଦ୍ୟାବଳୀରେ ଆଖି ଖେଳିଯାଉଛି । ପଞ୍ଚ-ଶବ୍ଦର ଝଙ୍କୃତ ଅଦ୍ଭୁତ ଦ୍ୟୋତକର କୋମଳ କାକଳି ଭଳି ଲଳିତ ପଦ୍ୟାବଳୀର ଆବରଣ ତଳୁ କଲ୍ଲୋଳିତ ଅଶ୍ଳୀଳରସ ଭକ୍ତିରଞ୍ଜିତ ହୋଇ ପ୍ରବାହିତ ହେଉଛି । ଚିରସୁନ୍ଦର କବିଙ୍କର ଭାବକୁ ଦକ୍ଷତାର ସହିତ ଫୁଟାଇ ପାରିଛନ୍ତି । ସୁକାନ୍ତବାବୁ ତାଙ୍କର ପ୍ରେମମୟୀ ପତ୍ନୀଙ୍କୁ ବହି ଖଣ୍ଡିକ ଉପହାର ଦେଇଛନ୍ତି । ସ୍ୱାକ୍ଷରଲଗା ତାରିଖରୁ ଜଣାଯାଉଛି ଯେ ମାତବର୍ଷ ତଳର ଉପହାର ସେ ପୁସ୍ତକ ଖଣ୍ଡିକ ।

ହଲଧର ମନକୁ ମନ ହସିଲେ । ବହିଖଣ୍ଡି ଟେବୁଲ ଉପରେ ରଖି-ଦେଲେ । ଦୁଇହାତ ଟେକି ଅଳସ ଭାଙ୍ଗିଲେ । ନିଦ ଆକ୍ରାନ୍ତ କଲଣି । ଜୟଶ୍ରୀ ଫେରିଲେ ନାହିଁ । ଶୋଇ ପଡ଼ିଲେ ? ଭୁଲ୍ ଟା ହେଲେ ମଧ୍ୟ ଅନ୍ୟ ଘରର ଯୁବତୀ ପତ୍ନୀଙ୍କ ପାଖରେ ଉଜାଗର ହୋଇ ଅପେକ୍ଷା କରିବା ବିବେକୀପଣ ନୁହେଁ । ଜୟଶ୍ରୀଙ୍କର ଆସିବା ଉଚିତ ।

ଘରୁ ବାହାରି ହଲଧର ହରି ପିଅନକୁ ହଲାଇଲେ । ସେ ଚମକି ଉଠିଲା ।

ହଲଧର କହିଲେ, ତମେ ଜାଗ୍ରତ ରୁହ, ମୁଁ ଯାଇ ଜୟଶ୍ରୀଙ୍କୁ ଡାକି ଦେଉଛି ।

ହଲଧର ମୁହଁରେ ହସ ବିକଶିଲା ।

ନୀଳ ବିଜୁଳି ଆଲୁଅରେ, ପାତଳ ସଫେଦ ଶିଲକ ମଶାରି ତଳେ, ନିଦ୍ରିତ ମନୋରମାର ଆନନଟି ସୁନ୍ଦର ଦିଶୁଛି । ସେ ଚିତ୍ ହୋଇ ଶୋଇପଡ଼ିଛନ୍ତି । କେଶବାସ ଫିଟିଛି । ଓଠରେ ଲାଗିରହିଛି ସ୍ମିତ । ନିଶ୍ୱାସର ବେଗ ପ୍ରଖର ହୋଇଛି । ଧୀରେ ଧୀରେ ବୁଲୁଥିବା ବିଜୁଳି ପଙ୍ଖାର ଅଳପ ଶବ୍ଦକୁ ନିଶ୍ୱାସ ପ୍ରଶ୍ୱାସର ଶବ୍ଦ ପରାଜିତ କରୁଛି । ଛାତି ଉଠୁଛି ପଡ଼ୁଛି ।

ଦୁଓଟି ପୃଥୁଳ ସ୍ତନର ମଝିରେ କୁନ୍ଦୁର ନିଦ୍ରିତ ମୁଖ ।

ମୁହଁ ମାଡ଼ି ସେ ଶୋଇଛି । ଟିକି ଦେହଟି ପଲଙ୍କରେ ଲମ୍ବିଛି, ପିଠି ଉପରେ ତା'ର ନିଦ୍ରିତା ମାଆର ହାତ । ଦୁଇ ଜଙ୍ଘ ଉପରେ ଉପରକୁ ମୁହଁ କରି ଶୋଇଛି ଟିକି ଝିଅ ଇରା, ତାଆର ଛାତି ଉପରେ ତାଙ୍କର ଆର ହାତଟି । ଶୋଇଲା ଝୁଅର ନିଶ୍ୱାସ ସଙ୍ଗେ ଭାସିଆସୁଛି କୋହ ।

ମୁଗ୍ଧ ଆଖିରେ ଚାହିଁରହିଲେ ହଲଧର । ଜୟଶ୍ରୀଙ୍କୁ ଡାକିବାକୁ, କି ଦେହରେ ହାତମାତ୍ର ଉଠାଇବାକୁ, ତାଙ୍କର ମନ ହେଲାନାହିଁ । ସଙ୍ଗିନୀ ରମାର ସେବା କରିବାକୁ ଯାଇ ଜୟଶ୍ରୀ ନିଜକୁ ଭୁଲିଯାଇଥିଲେ । ଏତେ ବର୍ଷର ଅଭ୍ୟାସ ଦୂରକୁ ଫିଙ୍ଗି ଦେଇଥିଲେ । ଦାମିକା ଶାଢ଼ୀ ପିନ୍ଧି ନାହାନ୍ତି ।

ଆସି ମଟିଘରେ କୁଶନ୍‌ଲଗା ଆରାମ ଚଉକିରେ ବସିଲେ । ଦେହରେ ପତଳା ଧଳା ପଞ୍ଜାବି ।

ସ୍ମୃତି ପକେଟରୁ କିଏ ଚିତ୍କାର କରିଉଠୁଛି, କିଏ ସେ ହଲଚଲ ହେଉଛି, ପଦାକୁ ବାହାରି ଆସିବାକୁ ଆଘାତ କରୁଛୁ, ସହସ୍ର ଲୁହ ଫୋଡ଼ି ପକାଉଛୁ । କାନରେ ବାଜି ଯାଉଛୁ ତା'ର କୁପିତ ଧିକ୍‌କାର, ଅତୀତ ଓ ବର୍ତ୍ତମାନର ମିଶାମିଶି ସ୍ୱର—

ଭୁବନେଶ୍ୱର । ପାର୍ବତୀ ମନ୍ଦିର । ନାରୀଗହଣରେ ଅବଗୁଣ୍ଠନବତୀ କେତେ କୁଳକାମିନୀ । ବିଜୁଳି ଆଲୁଅ ମ୍ଳାନିତ । ଝଟକିଉଠୁଛି ଲଜ୍ଜାଶୀଳ ଶୋଭନ ମୂର୍ତ୍ତି, କଜ୍ଜଳଭରା ଆଖି କୋଣରେ ଝଲକ ଝରିଲା ବାଙ୍କିଲା ଚାହାଣି ।

ହେଇ ସେ ରମା, ନଗାଧିରାଜତନୟା, ଭୁବନମୋହିନୀ ଉମା କି ହେବେ ! ସ୍ମୃତିରେ ଚମକ ଲାଗିଲା, ଏଇ ହେବେ ହଲଧରଙ୍କ ମନୋହାରିଣୀ ଘରଣୀ । ପରୀକ୍ଷାରେ ସେ ପାସ୍ କରିଛନ୍ତି ।

ଦେବାନେବା ବେପାର ଉଠିଲା ନାହିଁ । ଦୁନିଆରେ ବହୁତ ସୁନ୍ଦରୀ କନ୍ୟା ଅଛନ୍ତି । ରୂପ ଓ ଗୁଣ ଅନେକଙ୍କର ଅଛି । ଯୌତୁକ ପାଇଁ ଦାବି କରାହୋଇଥିବା ନଗଦ ଟଙ୍କା ଦେଇ ନ ପାରିଲେ ପଛେଇ ଯାଅ । ଆଖି ବୁଲେଇ ଚାରିଆଡ଼କୁ ଚାହଁ । ଟଙ୍କାଥଳି ଧରି କେତେ ପିତା ହରବର ହୋଇ ଆଗେଇ ଆସିଲେଣି । ଟଙ୍କାଥଳି ସଙ୍ଗେ ମୋ ଝିଅକୁ ବୋହୂ କରି ନିଅ ବୋଲି ସେମାନେ ଅନୁରୋଧ କଲେଣି । ମୋ ଝିଅର ରୂପ, ଗୁଣ, ବିଦ୍ୟାବୁଦ୍ଧି, ଆଉ ତମ ପୁଅର ବଡ଼ପଣ ଲୁଚିରହିଛି ଏହି ଟଙ୍କାଥଳିରେ ବୋଲି କେତେ ବାପ ଲୋଭ ଦେଖାଇ କୁହାଟ ଛାଡ଼ିଲେଣି ।

ହଲଧର ପିତାଙ୍କର ଅବାଧ୍ୟ ହୋଇ ପାରିଲେ ନାହିଁ । କେତେ ଦୁଃଖ ସହି ମନରେ କେତେ ଆଶା ଓ ସ୍ୱପ୍ନ ରଚି, ଯେଉଁ ପିତା ତାଙ୍କୁ ମଣିଷ କରିଛନ୍ତି, ତାଙ୍କର ଆଦେଶ ଅମାନ୍ୟ କରିପାରିଲେ ନାହିଁ । ଯେଉଁ ସୁବର୍ଣ୍ଣ

ପ୍ରତିମାଙ୍କୁ ପାଟଣାଙ୍କ ମନ୍ଦିରରେ ଦେଖି ମନେ ମନେ ନିଜର କରିସାରିଥିଲେ, ତାଙ୍କୁ ସେ ମନରୁ ନିର୍ବାସିତ କଲେ, ବିବାହ କଲେ ଜୟଶ୍ରୀଙ୍କୁ, ପିତା ଯାହାଙ୍କୁ ମନୋନୀତ କରିଥିଲେ । ହଲଧର କର୍ତ୍ତବ୍ୟନିଷ୍ଠ ପୁରୁଷ !

ତମେ ମତେ ଉପେକ୍ଷା କରିଥିଲ, ମୋର ରୂପ ଯୌବନର ବଡ଼ିମାକୁ ଦୃଷ୍ଟିରେ ଆଣ୍ଡେଇ ଦେଇଥିଲ; ମୋର ତାରୁଣ୍ୟର ପ୍ରଥମ କୌତୁହଳ, ଉତ୍ତେଜନା, ଆଗ୍ରହ ଓ ଆଶାମିଶା ଅପାଙ୍ଗକୁ ତମର ନାହିଁନାହିଁ ମୁଦ୍‌ଗରରେ ଚୂର୍ଣ୍ଣ କରିଥିଲ; ମୋର ଉଚ୍ଛଳ ଉଚ୍ଛ୍ୱସିତ, ଉଦ୍ଭାସିତ ନାରୀତ୍ୱ ଓ ପ୍ରଚ୍ଛନ୍ନ ମାତୃତ୍ୱକୁ ତମେ ଅପମାନିତ କରିଥିଲ । ତମେ, ତମେ ହଲଧର, ରୂପସୀମାନଙ୍କର ପରୀକ୍ଷାରେ ମୋତେ ଅକୃତକାର୍ଯ୍ୟ କରାଇ ଲାଞ୍ଛନାରେ ମୋର ମୁଣ୍ଡ ନୋଇଁଥିଲ । ମୋର ନିର୍ଦ୍ଦୋଷ ନୟନରୁ ନିରୋଳାରେ ନୀରବ ନିରଧାର ଝରାଇଥିଲ । କାହିଁକି ମୋତେ ତମେ ଅଜି ସାଥରେ ତମର ଛାତି ପକେଟରେ ଛପାଇ ରଖିଛ ନିର୍ଲଜ୍ଜ ? ମୋତେ ମୋର ନିଜ ସ୍ଥାନରେ ରଖିଦିଅ । ଏ ଦୁନିଆଁ ଛାଡ଼ି ମୋର ନିରମାଖି ଆତ୍ମା ଚାଲିଯିବାକୁ ଛଟପଟ ହେଉଛି । ତମର କାମନାର କାଳିମାରେ ମୋର ପବିତ୍ର ଆତ୍ମାକୁ କଳଙ୍କିତ କରନାହିଁ ।

ହଲଧରଙ୍କର ଛାତି ଉଠିଲା ପଡ଼ିଲା । ସେ ଚମକି ବସିଲେ । ଅଜାଣେ ହାତ ଛାତି ପକେଟ ଉପରେ ରଖିଲେ । ନିଜ ଭାବନା ଭିତରେ ରମା ଯେଉଁ ଅଭିଯୋଗ କରିଛି, ଆସାମୀ ହଲଧର ବିରୁଦ୍ଧରେ, ବିଚାରପତି ହଲଧରଙ୍କ ଆଗରେ, ଆସାମୀ ତା'ର ଉତ୍ତର ଦେବାକୁ ଅକ୍ଷମ । ସେ ଜାଣି ନ ଥିଲେ ଯେ, 'ଜୀବନର ଯାତ୍ରାପଥରେ ସେହି ଉପେକ୍ଷିତା ନାରୀଟି ସଙ୍ଗରେ ଆଉଥରେ କେବେ ତାଙ୍କର ଦେଖାହେବ, ଦିନେ ପୁଣି ସେହି ନାରୀର ରୋଗଶଯ୍ୟା ପାଖରେ ତାଙ୍କୁ ଠିଆହେବାକୁ ପଡ଼ିବ ।

ହଲଧର ମଣିକବାଟ ଅଡ଼କୁ କଣେଇଁ ଚାହିଁଲେ । ପୂର୍ବପରି ଆଉଜା ହୋଇଛି । ଜୟଶ୍ରୀ ନିଶ୍ଚିନ୍ତରେ ଶୋଇ ସପନରେ ମାତୃତ୍ୱର ଆନନ୍ଦ ଅନୁଭବ କରୁଥିବ ।

ଆଉ, ସେ ?

ଗ୍ଳାଡରେ ଛନକା ପଶିଲା । ଗ୍ଳାଡ ପକେଟରେ ହାତ ଭଣି ଗ୍ରେଟ ଫଟୋଖଣ୍ଡିକ କାଢ଼ିଲେ । ଠିଆହୋଇ ଉଜ୍ଜ୍ୱଳ ଆଲୁଅରେ ଅନାଇ ରହିଲେ । ସୁକାନ୍ତବାବୁଙ୍କର ଗୀତଗୋବିନ୍ଦ ବହି ଭିତରେ ଫଟୋଟି ରଖାହୋଇଥିଲା, ତାକୁ ସେ ସ୍ନେହଙ୍କର ପକେଟରେ ରଖିଛନ୍ତି ।

ବଧୂବେଶରେ ରମା !

କି ଶୋଭା ରୂପ । ଲାଜ ଲାଜ ଗୃହିଣି, ଦରହସିଲା ମୁହଁର ଠାଣି । ଏଇ ରମାକୁ ଦିନେ ସେ ନିଜର କରିବାକୁ ମନ ବଳାଇଥିଲେ । ପିତାଙ୍କର ଧନର ଲୋଭ, ତାଙ୍କର ମନର କାମନାକୁ ହତ୍ୟା କରିଥିଲା । ପିତୃଭକ୍ତ ସୁଧୀର ସନ୍ତାନ ସେ !

ଦୃଷ୍ଟିତ ଓଠ ଟିକ ଫଟୋଟି ଉପରକୁ ନଇଁ ଆସିଲା, ଅଟକିଲା ଅଧବାଟରେ । ଫଟୋଟି କଥା କହୁଛି, ଛି, ଛି, ଏ କଅଣ କରୁଛ ? ପାଟଣାଙ୍କ ମନ୍ଦିର ଭିତରେ ଯେଉଁ ରମାକୁ ତମେ ଦେଖିଥିଲ, ମୁଁ ସେ ନୁହେଁ । ମୁଁ ସୁକାନ୍ତର ଧର୍ମପତ୍ନୀ । ମୁଁ ଅନ୍ୟ ଘରର କୁଳବଧୂ । ତମେ ନରାଧମ । ମୁଁ ସୁକାନ୍ତର ଦୁଇଟି ସନ୍ତାନଙ୍କର ଜନନୀ । ତମର ମଧ୍ୟ ମୁଁ ମାତା । ମା ଜଗତ୍‌ଜନନୀ ଠାକୁରାଣୀଙ୍କ ଆଗରେ ତମେ ମୋର ଦର୍ଶନ କରିଥିଲ, ତମର କଳୁଷିତ ଦୃଷ୍ଟିକୁ ମୋର ପଦତଳେ ନୁଆଁଇ ଦେଇଥିଲ ।

ହାତ ଥରଉଠିଲା । ବିଚଳିତ ହଲଧର ଗ୍ଳାଅଡ଼େ ଆଖି ବୁଲାଇଲେ । ମନର ଦୃଷ୍ଟିପଡ଼ିଲା ରୋଗିଣୀ ରମାର ମୁହଁଉପରେ । କ୍ଷୀଣ ସ୍ୱରରେ ସେ ପୁଣି କହିଉଠୁଛି, ଦଉଁଟି ଦିନର ପ୍ରଭେଦ ଦେଖିପାରୁଛ କି ବିଗ୍ରହକ ? ଚିହ୍ନିପାରୁଛ ? ଏଇ ଫୁଲିଲା ମୁହଁ ଭିତରେ ଜନନୀ ରମାର ଆନନ ଛପିରହିଛି, କୁଳବଧୂ ରମାର ମୁଖ ଗୋପନ ହୋଇଛି, କୁଲୁକୁଲିଆ କଇଁଫୁଲିଆ ଭଳି ମୁହଁ ପରି ସାନ ମୁହଁଟିଏ, ଯେଉଁଦିନ ତା'ର ନାମକରଣ ହେଲା, ଏକୋଇଶା ମ, ସେଇଦିନର ସରଗଫୁଲ ଟିକି ମୁହଁଟି ବି ହଜିଯାଇଛି । ଆଉ ଦିନଟିଏ ଅପେକ୍ଷା କର, ପୁଣି ଦେଖିବ—

ଅଉ କହନା, ତମେ ମୋର ମାତା ରମା, ତମେ ମୋର ନମସ୍ୟ । ତମେ ମୋର ବନ୍ଧୁପତ୍ନୀ । ଏଇ ଫଟୋଟିର ସ୍ଥାନ କେଉଁଠି, ତମେ ଦେଖିବାକୁ ଚାହଁ ?

ହଲଧର ଗ୍ରେଟ ଫଟୋଟିକୁ ମୁଣ୍ଡରେ ମାରିଲେ, ପକେଟରେ ରଖିଲେ । କହିଲେ ମନଭିତରେ, ପୁଣି ଏହା ଯଥାସ୍ଥାନରେ ବହିଭିତରେ ରହିବ । ତମେ ଭଲହୋଇ ନିଜକୁ ଖୋଜ ବାହାର କରିବ । ସେକାଳର ତମକୁ ନେଇ ମହତ୍ତ୍ୱ ଓ ଉଦାର ସ୍ୱାମୀ ସୁକାନ୍ତକୁ ଉପହାର ଦେବ ।

ପକେଟରେ କ'ଣ ସାଇତି ରଖିଲ, ମୋତେ ଦେଖାଇବ ନାହିଁ ? କହିବ ନାହିଁ, କାହିଁକି ଏପରି ଚଞ୍ଚଳ ହୋଇଛି ତମର ମନ ?

ଆରଘର ପଲଙ୍କ ଉପରୁ ଜୀବନସଙ୍ଗିନୀ ପଥସୋହାଗିନୀ ଜୟଶ୍ରୀ ପ୍ରଶ୍ନ ପଚାରୁଛନ୍ତି !

ସୁକାନ୍ତବାବୁଙ୍କର ଘରଆଡ଼ୁ ହରି ପିଅନର କଥା ଶୁଭୁଛି ।

ହଲଧର ମଝିକବାଟ ଧୀରେ ଧୀରେ ଖୋଲିଲେ । ପଲଙ୍କ ପାଖକୁ ଗଲେ । ଜୟଶ୍ରୀ ପୂର୍ବପରି ଶୋଇଛନ୍ତି । ଘନୋଟି ନିଶ୍ୱାସର ଶବ୍ଦ ଶୁଭୁଛି । ଭାବିଲେ, ନା ଉଠାଇବେ ନାହିଁ । ଜୟଶ୍ରୀଙ୍କ ସଙ୍ଗେ ପିଲା ଦୁଇଟି ମଧ୍ୟ ଉଠି-ବସିବେ, ମାଆକୁ ଖୋଜି ବୋବାଳି ଛାଡ଼ିବେ ।

ମଝିକବାଟ ଆଉଜାଇ ବାରଣ୍ଡାକୁ ଆସିଲେ । ଶବ୍ଦ ଶୁଣି ପିଅନ ଉଠି ଠିଆହେଲା । କହିଲେ, ଶତ୍ରୁଘ୍ନ, ତମେ ଚେଇଁଥାଅ, ମା ଶୋଇ ପଡ଼ିଛନ୍ତି ; ଆଗ ଘରୁ ହରିର ପାଟି ଶୁଭୁଛି, ମୁଁ ବୁଝିଆସେ କଅଣ ହୋଇଛି ।

ଉତ୍ତରକୁ ଅପେକ୍ଷା ନ କରି ସୁକାନ୍ତବାବୁ ଘର ଆଡ଼େ ଚାଲିଲେ । ଭାବିଲେ, ଡାକ୍ତର ନିଜେ ଅନ୍ତତଃ ଘଡ଼ି ଅଧରେ ଆସିବେ ବୋଲି କହିଯାଇ ଥିଲେ, ଆସିଲେ ନାହିଁ; ଶୋଇପଡ଼ିଲେ ?

ରମା କ୍ଷୀଣ କଣ୍ଠରେ ପଚାରିଲେ, ହରି, କୁନୁ ଭଲ ନାହାନ୍ତି ?

ଏହି ଉତ୍ତର ଦେଇ ଆଉଥରେ ମା ସେ ଦୁହିଁଙ୍କୁ ତାଙ୍କ ଘରକୁ ନେଇ ଯାଇଛନ୍ତି । ସେ ଦୁହେଁ ତାଙ୍କ ପାଖରେ ଶୋଇ ପଡ଼ିଥିବେ । ହେଇ ମା' ତ ଆପଣଙ୍କ ପାଖରେ ଜଗି ବସିଥିଲେ । ଇସ୍ତଦେଇ ଉଠିଲେ, ସୁଦ୍ଧାଧର କାନ୍ଦିଲେ । କାଳେ ଆପଣଙ୍କ ନିଦ ଭାଙ୍ଗିବ, ସେଥିପାଇଁ ସେ ଇସ୍ତକୁ କାନ୍ଧରେ ପକାଇ ନେଇଗଲେ । ମୁନ୍‌ସଫବାବୁଙ୍କୁ ମନ୍ଦିରରେ ବସାଇ କହିଗଲେ, ଆପଣଙ୍କ ନିଦ ଭାଙ୍ଗିଲେ ସେ ଯାଇଁ ପିଲାଙ୍କ ପାଖରେ ରହିବେ, ମା ଏଠାକୁ ଆସିବେ ।

ରମା ଚୁପ ରହିଲା । ନିଘୋଡ଼ ନିଦରେ ସେ ଶୋଇପଡ଼ିଥିଲା । କେତେ କଅଣ ସପନ ଦେଖୁଥିଲା, ସବୁ ତାଆର ମନେନାହିଁ । କେମିତି ଗୋଟାଏ ନୂଆ ରାଇଜରେ ସେ ବୁଲୁଥିଲା । ହାଲୋଳମୟ ସେ ଦେଶ । ରଙ୍ଗରଙ୍ଗର ଅରଣ୍ୟ, ପାହାଡ଼, ଝରଣା, କେତେ ବଡ଼ ବଡ଼ ସୁନ୍ଦର କୋଠାବାଡ଼ି, ମନ୍ଦିର ଜାଠନାଠନା ଅଜଣା ଅଚିହ୍ନା ଜୀବଜନ୍ତୁ । ସେ ରାଇଜରେ କିନ୍ତୁ ମଣିଷର ଦେଖାନାହିଁ । କେଉଁ ପାହାଡ଼ତଳ, ଝରଣାକୂଳ, ପଥର ଉହାଡ଼ରୁ, କେତେ ଦୂରରୁ କେଜାଣି, ସୁକାନ୍ତ ଡାକ ଛାଡ଼ୁଛନ୍ତି ନାମ ଧରି, କାଖରେ ଇସ୍ତ, କାନ୍ଧରେ କୁନୁ —ରମା, ରମା—

ନିଦ ଭାଙ୍ଗିଲା । ରମା ଉଠିବସିଲା । ସୁକାନ୍ତଙ୍କର ଡାକ ଏବେ ବି ସେପରି କାନରେ ବାଜୁଯାଉଛି । ରାତି କେତେ ହେଲାଣି ସେ ଜାଣେନାହିଁ । ଦେହ ହାଲୁକା ଲାଗୁଛି । ବେଦନା ଜଣାପଡ଼ୁନାହିଁ । ଚାରିଆଡ଼କୁ ଚାହିଁଲେ, ଅଳପ ଆଲୋକିତ କୋଠରୀଟି ନିଶୂନ ଲାଗୁଛି, ହଜାଣିଆ ଭାବ ମନରେ ପଶୁଛି ।

ପଚାରିଲା, ତମ ବାବୁ କେବେ ଫେରିବେ କି ?

ତାଆର କେଉଁ ଠିକଣା ମା ? ଆପଣ ଜାଣନ୍ତି, ସେ ଦଶଦିନ ପାଇଁ ଯାଇ ତିନିଦିନ ରହିଯାଆନ୍ତି, କେବେ ପୁଣି ପାଞ୍ଚଦିନ ପାଇଁ ଯାଇ ଦୁଇଦିନରେ ଫେରନ୍ତି । ସେମିତିଆ କାମ ତାଙ୍କର । ଆପଣ ବ୍ୟସ୍ତ ହେଉନ୍ତୁ ନାହିଁ । ମୁନ୍‌ସଫବାବୁ କହୁଥିଲେ, କାଲି ସକାଳେ ସେ ତାଙ୍କ ଗାଡ଼ି ବାବୁଙ୍କ

ପାଖକୁ ପଠାଇଦେ । 'ଆମ କପ୍ ଉପରେ କଭର୍ ନାହିଁ କି ଡ୍ରାଇଭର ଉପରେ ପରତେ ନାହିଁ ।

ହଲଧରବାବୁ ନିଃଶବ୍ଦରେ ମଝିଘରେ ପଶିଲେ । ଏଣିକି ତେଣିକି ଚାହିଁ ଦାଉଁ ଦାଉଁ ପଡ଼ିଲା ଉଠିଲା ଛାତିରେ ଉପର ପକେଟରୁ ରମାର ଗ୍ରୁପ ଫଟୋଟି କାଢ଼ି ଗୀତଗୋବିନ୍ଦ ବହି ଭିତରେ ରଖିଲେ । ବହିଟିକୁ ଟେବୁଲର ଗୋଟିଏ ପାଖରେ ଥୋଇଲେ, ଛାତି ଥରେଇ ଦୀର୍ଘଶ୍ୱାସ ଛୁଟିଲା । ଆରାମ-ଚୌକି ଉପରେ ବସିପଡ଼ିଲେ ।

ଆରଘରୁ ରମାର ସ୍ୱର ଶୁଭିଲା, କେଡ଼େ ଭଲଲୋକ ସେ ଜୟଶ୍ରୀଦେବୀ, ମାଆ ଭଉଣୀ ହେଲେ ବି ଏତେ କଷ୍ଟ ନେବେ ନାହିଁ ହଉ, ଏତେ ସେବା କରିବେ ନାହିଁ । ପିଲା ଦୁହିଁଙ୍କୁ ମାଆପରି ସ୍ନେହ କରନ୍ତି । କେଉଁ ଜନ୍ମରେ ମୁଁ ତାଙ୍କର ସାନଭଉଣୀ ଥିଲି ।

ହଉ କହିଲା, ମୁନ୍‌ସିଫ୍‌ବାବୁ ଯେ ତାଙ୍କଠୁ ଭଲ ମା, ଅନିଦ୍ରା ହୋଇ ଆରଘରେ ବସିଥିଲେ । ମୋତେ ଜଗାଇଦେଇ ପିଲାଙ୍କୁ ଦେଖିବାକୁ ଗଲେ । ଏଇ ସହରରେ ତାଙ୍କର ଧନ୍ୟ ଧନ୍ୟ ପ୍ରଶଂସା ଲୋକେ କରନ୍ତି । ଧର୍ମର ସେ ଅବତାର । ସେ ଯେଉଁ ରାୟ ଦିଅନ୍ତି, ଯେତେ ଉପରକୁ କେସ୍ ନେଲେ ବି ସେ ରାୟକୁ କେହି ବଦଳାଇ ପାରନ୍ତି ନାହିଁ । ଧୀର କଥା, ମଧୁର ବ୍ୟବହାର—

ରମା ଉତ୍ତର ଦେଲାନାହିଁ । ତା'ର ଛାତିଥରାଇ ଦୀର୍ଘଶ୍ୱାସ ଛୁଟିଲା । ମନ କହିଲା, ଦୁନିଆଁରେ ସବୁ ଲୋକ ଭଲ, ପୁଣି ସମସ୍ତଙ୍କ ଭିତରେ ମନ୍ଦପଣ ବି କେଉଁ କଣରେ ଲୁଚିଛପି ରହିଥାଏ । ବେଳ ପାଇଲେ କେଉଁ ଦୁର୍ବଳ କ୍ଷଣରେ ସେହି ମନ୍ଦପଣ ମୁଣ୍ଡଟେକି ଉଠେ । ଜୟଶ୍ରୀଦେବୀଙ୍କ କୋଳରେ ଛୋଟି ପିଲା-ବଙ୍କଟେ ଦେଲେ ହଲଧରବାବୁଙ୍କ ଲେଉଟିଲା କଣୁଆଁ ଚାହାଣି ଓଢ଼ଣା ନ ଉଣ୍ଡି ଟିକି ପୁଅର ମୁହଁରେ ଲାଗି ରହିଲା, ଜୟଶ୍ରୀଙ୍କର ହାତମୁଠା ବାହାର ରୂପକୁ ଆଡ଼େଇ ତାଙ୍କର ବାମପଣ ଜୟଶ୍ରୀଙ୍କର ମନଗହନ ତଳେ ପ୍ରବାହିତ ମାତୃତ୍ୱର କଳକଳ ଛଳଛଳ ନିର୍ମଳ ଶୀତଳ ଝରଣାରେ ଅବଗାହିଲା ।

ରମା ମନେ ମନେ ପ୍ରାର୍ଥନା କଲା, ମାଆଗୋ ଜଗତ୍‌ଜନନୀ, ତମେ ନିର୍ଦ୍ଦୟ ହୁଅନା, ଜୟଶ୍ରୀଙ୍କ କୋଲରେ ପିଲାଟିକୁ ଦିଅ । ମାଆ ଗୋ, ମତେ ନେବ ଯେବେ ନେଇଯାଅ, ଅଉ କଷ୍ଟ ଦିଅନାହିଁ । ମୋର ମୁକ୍ତି ଲୋଡ଼ାନାହିଁ ଗୋ ମା, ମୋତେ ପୁଣି ଜନମ ଦିଅ ତମର ଏ ସୁନ୍ଦର ଦୁନିଆଁରେ, ଝୁଅ-ରକ୍ଷଣୀ ଜୟଶ୍ରୀଙ୍କ କୋଲରେ ।

ରମାର ଆଖି ସଜଳ ହେଲା । ଗ୍ରୀବ ଦୋହଲାଇ କୋହ ଉଠିଲା ।

ରମାର ନୀରବତା ହଳଧରଙ୍କ ଗ୍ରୀବ ଅସହିଲା । ଯେଉଁ ଯନ୍ତ୍ରଣାରେ ଛଟପଟ ରମା ନବୋଧ ଲୁହେ । ତାଙ୍କର ଭଲପଣିଆଁ ଉପରେ ତା'ର ଆସ୍ଥା ନାହିଁ । ତା'ର ନୀରବତା ଯତେ ତାଙ୍କୁ ଚିଙ୍ଗାପୁଛି । ସତେକି ସେ ପଚାରୁଛି, ବନ୍ଧୁପତ୍ନୀର ସେବା କରିବାକୁ ତମେ ହଳଧର ଉନ୍ନିଦ୍ର ରହିଛ, କି ପତ୍ନୀର ବାନ୍ଧବୀର ସନ୍ତୁଷ୍ଟ ନେବାକୁ ମନ କରିଛ, କି କେବଳ ପତ୍ନୀଙ୍କର ଆଦେଶ ପାଳୁଛ ? କହ ତ ହଳଧର, ହେଉ ହେଉ ନ ହେଲା ଘରଣୀର ସାନ୍ନିଧ୍ୟ ତମକୁ ଅନନ୍ଦ ଦେଉଛି ? ଉପେକ୍ଷିତା ଯେଉଁ ରମା, ତମ ଉପେକ୍ଷାର ଉପଯୁକ୍ତ ସେ, ଏ ଧାରଣାକୁ ମନରେ ବଦ୍ଧମୂଳ କରିବାର ପ୍ରୟାସ ତମକୁ ବେଦନା କରୁଛି ? ମରଣ ମୁହଁକୁ ଅଟେକେ ବସିଥିବା ଅସୋମ୍ନତା, ସେକାଳର ଉପେକ୍ଷିତା ରୂପସୀ ରମାର ମନରେ ଲୁଚି ରହିଥିବା ଅଭିମାନ ପାଖରେ ନୀରବ କ୍ଷମାଭିକ୍ଷା ଲୁହେ ତ ?

ଶୀତରୋଦେ ବହିଟି ଟେବୁଲ ଉପରେ ରଖାହୋଇଛି । ତାଅରି ଭିତରେ ସେକାଳର ରମା ଚପିହୋଇଛି । ହସିଉଠୁଛି, ପୁଣି କହୁଛି, ମୋତେ ତମେ ଅପବାଦ କରନାହଁ, ତମର ଭଲପଣିଆକୁ ତମେ କଳଙ୍କିତ କରିଛ । ଅତୀତକୁ ଭୁଲିଯାଅ । ଅଜି ଯିଏ ଯାହା, ତାକୁ ସେହି ରୂପରେ ଗ୍ରହଣ କର, ସେଇ ଧାରଣାରେ ସାମାଜିକ କର୍ତ୍ତବ୍ୟ ପାଳନ କର । ମୁଁ ତମର ବନ୍ଧୁପତ୍ନୀ, ମୁଁ ତମର ପତ୍ନୀଙ୍କର ବାନ୍ଧବୀ, ସେହି ଅଧିକାରରେ ଥାଇ ତମର ସ୍ନେହ, ସହାନୁଭୂତି ଓ କର୍ତ୍ତବ୍ୟ ମୁଁ ଦାବି କରୁଛି ।

ହଳଧର ପ୍ରକୃତିସ୍ଥ ହେଲେ । ଡାକିଲେ, ହରି ।

ହରି ଉତ୍ତର ଦେଲା, ଆଜ୍ଞା !

ରମାକୁ କହିଲା, ମୁନ୍‌ସେଫ୍‌ବାବୁ ଆସିଲେଣି ମା, ଆପଣ ଉଠନ୍ତୁ ନାହିଁ, ଡାକ୍ତରବାବୁ ମନା କରିଛନ୍ତି ।

ହରି ମନ୍ଦିରକୁ ଆସିଲା । କହିଲା, ମ ଆଙ୍କର ନିଦ ଭାଙ୍ଗିଲାଣି । କେଡ଼େ ଫୁର୍ତ୍ତି ସେ ଅଛନ୍ତି । ମୁହଁର ଫୁଲ କମିଲାପରି ଦିଶୁଛି । ଠାକୁରଙ୍କ ଦୟାରୁ ଶୀଘ୍ର ସେ ଭଲ ହୋଇଯିବେ । ଲୋକ ପଠାଇ ବାବୁଙ୍କୁ ଚିନ୍ତିଆ କରିବା ଉଚିତ ନୁହେଁ ।

ହଲଧର ଖୁସି ହୋଇ କହିଲେ, ସାମାନ୍ୟ ବ୍ରଣଟିଏ, ଅସାବଧାନତାରୁ ବଢ଼ିଗଲା, ଏଥକୁ ଚିନ୍ତା କାହିଁକି ? ଅତି ଶୀଘ୍ର ଭଲ ହୋଇଯିବ । ତଥାପି, କାଲି ସକାଳୁ ସୁନାଲ୍ ବାବୁଙ୍କ ପାଖକୁ ଖବର ପଠାଯିବ ।

ତେବେ ଆପଣ ଅନିଦ୍ରା ରହିଲେ ସାର୍ ?

ହଲଧର କହିଲେ, ଜୟଶ୍ରୀ ଶୋଇପଡ଼ିଛନ୍ତି । ଗ୍ରନ୍ଥ ଉପରେ ମୁଣ୍ଡ ରଖି କୁନୁ ଶୋଇଛି, କୋଳରେ ଶୋଇଛି ଇରା । ତାଙ୍କୁ ଉଠାଇଲେ ପିଲା ଦିହେଁ ଉଠିବେ । ନିଦ ଅଧରେ ଅସ୍ଥିର ହୋଇ କାନ୍ଦିବେ । ସେଇ ଡରରେ ଉଠାଇଲି ନାହିଁ । ରମାଦେବୀଙ୍କର ଦେହର ଉତ୍ତାପ ପରୀକ୍ଷା କରି ଔଷଧ ଦେବାର କଥା । ଡାକ୍ତରବାବୁ ଆସିବେ କହିଥିଲେ, ସେ ଶୋଇ ପଡ଼ିଲେ ପରି । ଆବଶ୍ୟକ ହେଲେ ତାଙ୍କୁ ଡକାଇବା ।

ହଲଧର ଥର୍ମୋମିଟର ହାତରେ ଧରି ମନ୍ଦିରଦ୍ୱାର ପରଦା ଆଡ଼େଇ ରୋଗୀର ଘରଭିତରକୁ ଗଲେ, ଦେଖିଲେ, ରମା ପଲଙ୍କ ଉପରେ ବସିଛି ।

ସେ ମୁଣ୍ଡର ଓଢ଼ଣା ଅଳପ ଟାଣିଲା । ପଲଙ୍କ ଉପରୁ ତଳକୁ ଓହ୍ଲାଇବାକୁ ଚେଷ୍ଟାକଲା ।

ହଲଧର ବ୍ୟସ୍ତ ହୋଇ କହିଲେ, ଆପଣ ତଳକୁ ଓହ୍ଲାନ୍ତୁ ନାହିଁ । ବସନ୍ତୁ ଏ ଥର୍ମୋମିଟରଟି ମୁହଁରେ ଦିଅନ୍ତୁ ।

ରମା ଅବାଧ ହେଲନାହିଁ । ଯେଉଁ ହାତଟି ସଙ୍ଗେ ତା'ର ହାତ ଏକ ଠି ବନ୍ଧା ହୋ'ଇ ଦୁଇଟି ଅଚହ୍ନା ଜୀବନକୁ ସ୍ୱାର୍ଥର ବନ୍ଧନରେ ବାନ୍ଧ ଦ୍ଦେଶାର କରିଥିଅାଛି, ସେଇ ହାତକୁ ଅତି ସାବଧାନତାର ସହିତ ଥର୍ମୋମିଟରଟି ନେଇ ସେ କିଭତଲେ ରଖିଲା । ହାତର ପରଶ ପାଇନାହିଁ, କିନ୍ତୁ ସହାନୁଭୂତରେ ଜରଜର ଜଣେ ପରପୁରୁଷର ମନର ପରଶ ସେ ପାଇଲା । ଜରୁଆ ଦେହ ଥରୁଥିଲା । ଆଖିରେ ଭରିଲା ତତଲା ଲୁହ, ଫୁଲିଲା ଗାଲ ଉପରେ ଦୁଇଧାର ହୋଇ ଗଡ଼ିଆସିଲା ।

ମନ ଖୋଜିଲା ସେଇ ଅତିଆପଣାର ମୁହଁଟିକୁ, ଯିଏ ତା'ର ହସିଲା ମୁହଁକୁ କାନ୍ଦୁରା କରେ, ଆଖିରୁ କେତେ କେତେ ଲୁହ ଝରାଇ ପୁଣି ହାତ ପାପୁଲିରେ ତତଲା ଲୋତକ ପୋଛି ହସିହସିକା କାନ୍ଦୁରା ମୁହଁକୁ ହସିଲା କରେ; ବେଳ ଅବେଳ ନ ମାନି, ଲାଜସରମର ଧାରଣା ଭୁଲି, ଅଭିମାନରେ ଅଡ଼ିଲା ମୁହଁକୁ ଗୁଡରେ ଜାକେ । ଚେଇଁଲେ କହେ କାନ ପାଖରେ, କହୁଥିଲି ପରା, ମୋ କଥାରେ ଛଳ କରିବ ନାହିଁ, କାନ୍ଦିଲ ତ? ହାରିଲ ତ ? ଏଥର ଟିକିଏ ହସ, ତମୁକୁ ମୋ ରାଣ ।

ରମା ଆଖି ବୁଜିଲା । ମନ ଛୁଟିଗଲା କେଉଁ ପାହାଡ଼ତଳର ନିଘଞ୍ଚ ଅରଣ୍ୟ ମାଳକୁ । କଲକଲ ହୋଇ ବହିଯାଉଛି ଝରଣା । କୂଳରେ ଏକୁଟିଆ ଡାକବଙ୍ଗଳା । ଖଲବଲ ଅନ୍ଧାର । ନିବିଡ଼ ଅନ୍ଧାର ଭିତରୁ ଶୁଭୁଛି ଝିଙ୍କାରିର ସ୍ୱନ । ଏକୁଟିଆ ସେ ପଲଙ୍କ ଉପରେ ଶୋଇ ଛଟପଟ ହେଉଛନ୍ତି । ମଶାପଲ ଦେହରେ ଲାଗି ରକତ ଶୋଷୁଛନ୍ତି । ଖଟତଳେ ମଲାବାନ୍ଧ ବୁଢ଼ାନାଗ ଶୋଇଛି । ଦୂର ପାହାଡ଼ର ଗୁହାରୁ ବାହାରି ମହାବଳ ବାଘ ଝରଣା କୂଳକୁ ପାଣି ପିଇବାକୁ ଆସୁଛି । ଘରର କବାଟ ଖୋଲାଅଛି ।

ଓଠରେ କାହା ଟିପର ମୃଦୁ ପରଶ ।

ରମା ଆଖି ଖୋଲିଲା । ହଳଧରବାବୁ ତା ପାଟିରୁ ଥର୍ମୋମିଟର ଟାଣି ନେଇଛନ୍ତି । ଆଲୁଅ ଆଡ଼କୁ ଟେକି ଉତ୍ତାପ ଦେଖୁଛନ୍ତି । ମୁହଁରେ ଚିନ୍ତା-

ପାହାନ୍ତିଆ-ହସ ଉଇଁଆସୁଛି । ହରି ସିଅନ ଉଦ୍‌ବିଗ୍ନ ହୋଇ ତାଙ୍କ ମୁହଁକୁ ଅନାଇଁ ରହିଛି ।

କହିଲେ, ସାମାନ୍ୟ ଜର ଅଛି, ଉଦ୍‌ବେଗର କାରଣ ନାହିଁ । ରମାର ମୁହଁକୁ ଚାହିଁ ପଚାରିଲେ, ବ୍ରଣ ଆଉ ପୋଡୁନାହିଁ ? ରମା ମୁଣ୍ଡ ହଲାଇ କ୍ଷୀଣ ସ୍ୱରରେ କହିଲା, ନାଇଁ ।

ଉଷୁମ ପାଦରେ ମାଉଁସିଆ ନରମା ହେମାଳିଆ ପାପୁଲିର ଧୀରି ପରଶ, କୋମଳ ଚାପ । ତାତଲ ଦେହର ଲୋମମୂଳ ଟାଙ୍କୋର ଉଠିଲା । ଛେଚେଲୁଚି ହେଉଥିବା ଅଙ୍ଗର ବ୍ୟଥା ସତେକି ଉଭେଇଗଲେ । ଗୁଇଁଗୁଇଁଅ ତନ୍ଦ୍ରା ଭାଙ୍ଗିଲା । ସପନ ନୁହେଁ, ଅସଂଲଗ୍ନ ଆଶାମିଶା ଉଦ୍ଦାମ ଭାବନାର ଚୂଳ ଅନ୍ଧାଳି ମୂଳରୁ ଟଳିଲା । ସେ ଯେଉଁଠି ସେଇଠି, ପୂର୍ତ୍ତିବିଭାଗର ମୁଖ୍ୟକର୍ତ୍ତା ନୁହେଁ, ଅଧସ୍ତନଟିଏ ।

ସେ ହେଇ ସୁକାନ୍ତ, ଜଣେ କର୍ମୀ, ଚାଲନଗୁଡ଼ା ନାଳର ଦାୟିତ୍ୱରେ ଥିବା ଛୋଟ ଅଫିସର । ଅକ୍ଳାନ୍ତ ପରିଶ୍ରମ କରି କାମ ଉଠାଇଛି । କାମ ସାରିଛି । ଆ ଓ ଯାଆର ପ୍ରଭେଦ ତଳିଆ କର୍ମଚାରୀଙ୍କୁ ଦେଖାଇ ଦେଇଛି । ମନ ଆନନ୍ଦରେ, ନୂଆ ଉତ୍ସାହରେ, ପିଠିଆ ଆଜ୍ଞା-ହିଁମାନଙ୍କୁ ଉତ୍ସାହିତ କରିବାକୁ ଅତି ପୁରୁଣା ମନବୋଧିଆ ମନ୍ତ୍ର ଶୁଣାଇଛି, କର୍ମଣ୍ୟେବ ଧିକାରସ୍ତେ ନ ଫଳେଷୁ କଦାଚନମ୍, ଅସ୍ୱସନ୍ତୋଷିଆଙ୍କର ହତାଶିଆ ବିଳାପ, ବୋଧଶୋଧିଆ ପ୍ରେରଣା !

ବିଭାଗୀୟ ସଚିବ ଆନୁଷ୍ଠାନିକ ଭାବରେ ନୂଆ ନାଳର ଫୁକାର ଖୋଲିବେ, ନାଳରେ ଜଳ ଛାଡ଼ିବେ । ନୂଆ ଜମିରେ ଜଳ ମଡ଼ାଇବେ । ଛୋଟ ହ୍ରଦରେ ମାଛ ଚାଷପାଇଁ ଯାଆଁଳ ଛାଡ଼ିବେ ।

ଏ ସବୁ କର୍ମର ମୋଟାମୋଟି ପ୍ରୋଗ୍ରାମ ଆସିଛି । କାର୍ଯ୍ୟଶେଷ ହେଲା ବୋଲି ଖବର ପଠାଇଲେ ଉପରିକମାନେ ପରିଦର୍ଶନ କରିବେ । ଭଲ ମନ୍ଦ ବାଛିବେ । ନାଲି ଆଖି ଦେଖାଇ ଧମକାଇବେ । ଭୁଲ ଭ୍ରାନ୍ତ ସୁଧାରିବାକୁ ଆଦେଶ ଦେବେ ।

ଉଦ୍‌ଘାଟନ ଉତ୍ସବପାଇଁ ଶୁଭଦିନ ସ୍ଥିର କରାହେବ । କାର୍ଯ୍ୟନିର୍ଘଣ୍ଟ ପ୍ରସ୍ତୁତ ହେବ । କାର୍ଯ୍ୟ ସମାପନ ପାଇଁ ଆଦେଶ ମିଳିବ । ପ୍ରକୃତ ଦକ୍ଷତାର ସେଇ ହେବ ପରୀକ୍ଷା, ପଦୋନ୍ନତିର ଖସଡ଼ା ପାହାଚ ଆରୋହଣର ସୁଯୋଗ ।

ରାସ୍ତାଘାଟ ସମତୁଲ ହେବ । ତୋରଣମାନ ପ୍ରସ୍ତୁତ କରାଇବାକୁ ପଡ଼ିବ । ଗ୍ରାମ୍ୟଝିଅ, ଫୁଲମାଳ, ଅଭ୍ୟର୍ଥନାର ସଙ୍ଗୀତ ପାଇଁ ବାଳିକା ଦଳ । ବିଚିତ୍ରାନୁଷ୍ଠାନର ସମ୍ଭାବନା ଅଛି । ନାରିକେଳ, ଶୁଭଶଙ୍ଖ, ମାଇକ୍ । ନାଗ-ଖେଳ, ଅର୍ଥାତ୍ ଧାଙ୍ଗଡ଼ୀ ନାଚର ବ୍ୟବସ୍ଥା କରିବାକୁ ମୌଖିକ ଅଦେଶ ଆସିବା ଅସମ୍ଭବ ନୁହେଁ । ଜଣେ ପାଳକ ଏଇଆ ଦେଖିବାକୁ ପସନ୍ଦ କରୁଥିଲେ । ରାମଗିରି ଉଦୟଗିରି ମାଳ ଅଞ୍ଚଳକୁ ପରିଦର୍ଶନ କରିବାକୁ ଯାଉଥିଲେ । ଅଧ ଲଙ୍ଗଳା ମାଳୁଆ ଲୋକଙ୍କ ଉପରେ ତାଙ୍କର ଶୁଭଦୃଷ୍ଟି ପଡ଼େ ।

କିଏ କହିବ, ବଡ଼-ଅଫିସରଙ୍କର କି ଖିଆଲ କେତେବେ ଓ କିପରି ହୁଏ ?

ପ୍ରଚାରପାଇଁ ଚଳଚ୍ଚିତ୍ର-ଫଟୋ ନିଆଯାଇ ପାରେ, ଆକାଶବାଣୀ ଲହଡ଼ିଆ-ଗୀତ ରେକର୍ଡ କରିବାକୁ ଲୋକ ପଠାଇ ପାରନ୍ତି । ହଁ, ଜଳଯୋଗ ଓ ଚା-ପାନର ଆୟୋଜନ କରାହେବ ।

ଜଟିଳ ଓ କଷ୍ଟକର ଏସବୁ କାମ, ସ୍କୁଲ କଲେଜରେ ପଢ଼ା ହୋଇନାହିଁ, ପ୍ରାକ୍‌ଟିକାଲ କ୍ଲାସରେ ଦେଖା ହୋଇନାହିଁ । ଅଥଚ ଆବଶ୍ୟକ ଏସବୁ ବିଷୟ ପାଇଁ ଓଡ଼ିଆ କି ଇଂରାଜୀ ଭାଷାରେ କୌଣସି ପୁସ୍ତକ ତା'ର ଦୃଷ୍ଟିରେ ପଡ଼ିନାହିଁ ।

କିପରି ଠିଆ ହେବାକୁ ହେବ ? ଚଳନ, ଅଙ୍ଗଭଙ୍ଗୀ, ହସ, ଗାମ୍ଭୀର୍ଯ୍ୟ ଓ ବିଷାଦ ଭାବ ଓଠ, ମୁହଁ ଓ ଆଖିନାକରେ ପ୍ରତିଫଳାଇବାକୁ ହେବ, ଶରୀର କାର୍ଯ୍ୟବ୍ୟସ୍ତତା'ର ପ୍ରମାଣର ପ୍ରଚାରଣା କରିବାକୁ ହେବ, ଛାତ୍ରଜୀବନରେ କେହି କେଉଁଠି ଶିଖାଇଲେ ନାହିଁ । ଏସବୁର ଅଭାବରେ ସବୁ ନିର୍ବାସ୍ଥତା ନିପାତ ହୁଏ । କାମ ନ କରି ମହାପାପେ ମରି ନଥନ୍ତି, କାମ କରି କରି ପାପେ ଜଳଜଳ ବୁଡ଼ି ରହନ୍ତି, ଗୋଟାନ୍ତି ଅଇଁଠାପତ୍ର ।

ସୁକାନ୍ତ ମୁଣ୍ଡର କେଶ ଟାଣିଲା । ଏ ସବୁ ସେ ଭୁଲାଇ ପାରିବ ନାହିଁ । ଅତଶୀଘ୍ର, ରାତାରାତି ଜୟପୁର ଫେରିଯିବ । କାର୍ଯ୍ୟ ଶେଷ ହେଲା ବୋଲି ଉପରିକଙ୍କୁ ଖବର ଦେବ । ପାରିବେ ଯଦି ସେ ଶେଷ ଅଧ୍ୟା ସମାପନ କରନ୍ତୁ । ଅକ୍ଲାନ୍ତ ପରିଶ୍ରମ କରି ତା'ର ଦେହ ଅବଶ ଲାଗୁଛି । ସେ ଅବସର ନେବ, ରମାର ଅଭିମାନ ଭାଙ୍ଗିବ, ପିଲା ଦିଓଟିଙ୍କୁ ଦୁଇ କାନ୍ଧରେ ବସାଇ ନାଚ କରିବ । ସେତିକି ତା'ର କ୍ଲାନ୍ତ ଜୀବନର ପରମ ଆନନ୍ଦ ।

ଗ୍ଲେସିୟର୍, ଆଗ ଜାମା କୋଟା ଖୋଲ, ଧୋଇଧାଇ ହୁଅ, ଜଳଟିଆ କିଛିଏ ଖାଅ, ଯେଉଁଠୁ ଦି' ପିଲାଙ୍କୁ ଧରି ଗୋଟାପାକ ନାଚ କରୁଥାଅ । ତମ ନୂଆବୋଉ ଯେଉଁ ଦେଇଛନ୍ତି, ମୋ ଭାଉଜ ବି ଯେଉଁ ନେଇଛନ୍ତି । ସବୁ ଭଲ । ଆସିବଟି ଅଗ ।

ହାତଧରି ରମା ଟାଣୁଛି । କେନ୍ଦ୍ରେ ତଡ଼ିତ୍ ଖେଳାଉଛି । ଫୁର୍ଫୁର୍ କେଶ, ରମାର ଆଖିରେ କଜଳ ନାହିଁ, ବନସୀଆ ବାଙ୍କୁଳା ଗୁହାଣି ନାହିଁ, ଅଛି ଭୃପ୍ତି ଓ ଉଦବିଗ୍ନତାର ହାଲକା ଅଳ୍ପ । ଓଠରେ ଗୋଲାପି ରଙ୍ଗବୋଳା ହୋଇନାହିଁ । ଖିଲ୍‌ଖିଲ ହେଉଛି ହସ, ସେଇ ଓଠ ଦି' ପାଖୁଡ଼ାକୁ ଲାଜୁଡ଼ିଆ ଛେଉ-ଢେଉକା କରୁନାହିଁ । ମୁକୁତାଧବଳ ଶଙ୍ଖାହେଳା ଝଟକିଲା ରଦନ ଅଳପ ଦିଶୁଛି । ପାଣିଆଁ ଅଳତା ଓଠରେ ଧୀର ମନ୍ଦୂଲକା ତରଙ୍ଗ, ଉଠପଡ଼ ତରଙ୍ଗ ନ ଦିଶିଲା ପରି ଦିଶିଯାଉଛି । ମୁହଁରେ ଦେହରେ ପାଉଡ଼ର ପରଖ ନାହିଁ । ପାତଳ ନେଲନ୍ ଶାଢ଼ୀ ସେ ପିନ୍ଧିନାହିଁ । ଶାଢ଼ୀ ଭେଦ ଅଙ୍ଗର ଭଙ୍ଗିମା ଡବଡବ କରି ଗୁହିଁନାହିଁ ।

ଦିଓଟି ସନ୍ତାନର ଜନନୀ ସେ, ସାତ ବରଷର ପୋଖତା ଘରଣୀ, ରାଗ ଦ୍ୱେଷହୀନା ମାନାଭିମାନରହିତା, ଉଦାରତା ଓ ସ୍ନେହ, ପ୍ରେମ, କରୁଣା ସାଲତା, ଅନୁରକ୍ତା ବନ୍ଦିତା ।

ସ୍ୱାମୀର ଜୀବନରେ ପଦୋନ୍ନତି ପାଇଁ ରମା ସାହାଯ୍ୟ କରି ପାରିବ ନାହିଁ । ଉପରିକଙ୍କ ସଙ୍ଗେ କରି ସଂଯୋଗ କରିବାକୁ ତାର ସାହସ ନାହିଁ ।

ଏଣୀ ଗୃହାଣି ହାଣି, ଗୃ-ପାଣି ସଙ୍ଗେ ନିଜକୁ ସେ ଅଜାଡ଼ି ପାରିବ ନାହିଁ । ସେ ଏ ଯୁଗର ଅଫିସରର ଉପଯୁକ୍ତ ବାନ୍ଧବୀ ନୁହେଁ ! ସେ ରକ୍ଷଣଶୀଳା, ଅପଦାର୍ଥ, ସ୍ୱାମୀର ଦେହ ଅସୁସ୍ଥ ହେଲେ ସେ ବ୍ୟାକୁଳ ହୁଏ, ମୁହଁ ଶୁଖାଇ ଛଟପଟ ହୁଏ, ଅଖିଆ ଅପିଆ ବସି ପାଦ ଆଉଁସେ । ସେତକ ତା'ର କରାମତ ।

ଖରତାପ ଦେହରେ ଭେଦାଇ ସେ ପରିଶ୍ରମ କରିଛି । ସନ୍ତାପହରୁ ତାକୁ ସାମାନ୍ୟ ଜର ହୋଇଛି । ଜୟପୁର ଫେରି ପାରିଲା ନାହିଁ । ଅପେକ୍ଷା କରିବ । ଉପାସ ରହିବ । ଅଳପ ଗରମ ମିଶ୍ରି ପାଣି ଗିଲାସେ ପିଇ ସେ ଶୋଇଥିଲା । ଅଗାଧୂ ବଲିଁ କରିଦେବ । ରାତିଟିଏ ଜଗିନେଲେ ବଡ଼ସକାଳକୁ ଦେହ ଭଲ ହୋଇଯିବ । ସେ ଜୟପୁର ଫେରିଯିବ ।

ଫେରି ଆସିଛି ସରି ?

ରାତି କେତେ ହେଲାଣି ? ଉନ୍ନିଦ୍ର ହୋଇ ରମା ଜଗିବସିଛି ? ପାଦ ଓ ଗୋଡ଼ ମଞ୍ଚାଳୁଛି ?

ମଶାରି ପଡ଼ିଛି । ଅଲୁଅ ଜଳୁଛି । ପିଲା ଦୁଓଟି ଶୋଇ ପଡ଼ିଲେଣି ? ନିଶୂନ, ନିବେଦ ନିଶି । ଦେହ ଗରମ ଲାଗୁଛି । ମୁଣ୍ଡ ଭ୍ରମୁଛି । ଆଖି ମାଡ଼ି ମାଡ଼ି ପଡ଼ୁଛି । ରମା ତଳେ ବସି ମଶାରି ଭିତରେ ହାତ ଗଳାଇ ଗୋଡ଼ ଚପୁଛି । ମଲ୍ଲୀଫୁଲର ମହକ ବାଜୁଛି ନାକରେ । ମନ ଉଲସି ଉଠୁଛି । ରମା ମଲ୍ଲୀମାଳ ଗଭାରେ ବେଢ଼ାଇଛି ।

ସୁକାନ୍ତ ଆଖି ଖୋଲିଲା । ରମା ହାତର ପରଶ ନୁହେ ତ !

ସୁକାନ୍ତ ମୁଣ୍ଡଟେକ ଚାହିଁଲା । ବୁଝିଲା । ଏ ନୁହେ ଜୟପୁର, ଏ ଗୁଲାନ୍‌ଗୁଡ଼ା ବଙ୍ଗଳା । ସତେ ତ, ଦୂରରୁ ଜଳପ୍ରବାହ କ୍ଷୀଣ କଳକଳ ଧ୍ୱନି ଶୁଭୁଛି । ଝିଙ୍କାରିର ସ୍ୱନ । ବିଜୁଳି ଅଲୁଅ, ବିଜୁଳି ପଙ୍ଖା ନାହିଁ ।

ରମା ବହୁ ଦୂରରେ ଅଛି ।

ପାଖରେ ଅଛି ଶୋଭାବତୀ ।

ସୁକାନ୍ତ ତାକୁ ପାଖକୁ ଡାକନାହିଁ, ବରଂ ଦୂରେଇ ରହିଛି । ସେ ନିଜେ ନିଜେ ଆସିଛି । ସହାନୁଭୂତ ଦେଖାଉଛି, ଅତ୍ୟାଧୁନିକା ଘରଣୀ, ସ୍ୱୈର ଓ ମଦ୍ୟପର ପତ୍ନୀ । ନିଜକୁ ସମର୍ପି ଦେବାକୁ ଯେ ସତତ ଆଗଭର, ହେଇ ସେ ଶୋଭାବତୀ, ଆକର୍ଷଣର ଚଳନ୍ତ ପ୍ରତିମା, ପଦ ମଞ୍ଚାଳୁଛି, ସେବା କରୁଛି ।

ମଥା ଉପରେ ହାତ ରଖି ହଳଧର ଧୀରେ ଧୀରେ ମୁଣ୍ଡଟିକୁ ପଛଆଡ଼କୁ ଅଳପ ନୋଇଁଲେ । ଆଉ ହାତରେ ଧରିଥିବା ଔଷଧ ଗ୍ଲାସଟି ରମାର ଓଠରେ ଲଗାଇଲେ । କଅଁଳେଇ କହିଲେ, ଢୋକ ଢୋକ ପିଅନ୍ତୁ, ଆଜି ରାତିରେ ଏତିକି ଆପଣଙ୍କର ଶେଷ ପାନ ଔଷଧ । ନିଦ ହୋଇଯିବ । କାଲି ସକାଳକୁ ଜର ଛାଡ଼ି ଯାଇଥିବ । ମୁହଁର ଫୁଲା କମିଯିବ । ଠାକୁରଙ୍କର ଦୟାରୁ ଆପଣ ସମ୍ପୂର୍ଣ୍ଣ ଆରୋଗ୍ୟ ହେବେ । ହଁ ଢୋକନ୍ତୁ ।

ରମା ହାତରେ ନିଜେ ଔଷଧ ଗ୍ଲାସଟି ଧରିବାକୁ ମନ କଲା । ସେ ଅନୁଭବ କଲା, ହାତ ଦୁଇଟି ଉଠାଇ ହେଉନାହିଁ । ବାହୁରେ ଡାକ୍ତରବାବୁ ବାରମ୍ବାର ଇଞ୍ଜେକ୍ସନ ଦେଉଛନ୍ତି । ଫୋମେଣ୍ଟ କରିବାକୁ କହିଥିଲେ । ସମସ୍ତେ ସେ କଥା ଭୁଲି ଯାଇଛନ୍ତି । ହାତ ଦରଜ ହୋଇଛି । ଯେଉଁ ହାତରେ ସେ ଥର୍ମୋମିଟରଟି ମୁହଁରେ ଧରିଥିଲା, ସେ ହାତଟି ମଧ୍ୟ ଉଠାଇ ପାରୁନାହିଁ । ସେ ନିରସ୍ତ ହେଲା, ଔଷଧ ଢୋକିଲା, ମୁହଁ ବିକୃତ କଲା । ଔଷଧ ଅତି କଟୁ ।

ହଳଧର ଗ୍ଲାସଟି ଧରି ହାତକୁ ବଢ଼ାଇଦେଲେ । ରମାକୁ ଚାହିଁ ହସ ହସ ହୋଇ ପଚାରିଲେ ଅତି ପିଠା, ନା ?

ଅଜାଣତରେ ରମାର ଫୁଲିଲା ଓଠ ଓ କୃତଜ୍ଞତାଭରା ଆଖିରେ ଫୁଟି ଆସୁଥିଲା, ମଳ୍ଲୀକଢ଼ର ଆଭା । ମଥା ଉପରର ବସନ ପିଠି ଉପରକୁ ଖସି ଆସିଛି । ଫିଟି ପଡ଼ିଥିବା କବରୀ ଅଡ଼ୁଆ ଅସନା ହୋଇ ଦୋହଲୁଛି ।

ସେ କହିଲା, ଚଟରଇତା ପରି ପିଠା ।

ହଳଧର ହସିଉଠିଲେ ।

ନିଜ ଭୃଣ୍ଡରୁ ଖସିପଡ଼ିଥିବା କଥା ଦ'ପଦ ଓ ଅଗରେ ଉଭା ଜଣା ଓ ଅଜଣା ପରପୁରୁଷର ହସ ଶବଦ ତାକୁ ସଚେତ କ ବେହାପାତ କଲା । ସେ ଦୀର୍ଘଶ୍ୱାସ ଛାଡି ଗମ୍ଭୀର ହେଲା । ତା'ର ଆଖି ସଜଳ ହେଲା । ମନ କହିଲା, ତମର ସେବା ମୋର ଲୋଡ଼ା ନାହିଁ, ତମେ ମୋ ପାଖରୁ ଦୂରେଇ ଯାଅ, ମୋତେ ଶାନ୍ତି ଓ ନିଶ୍ଚିନ୍ତରେ ମରିବାକୁ ଛାଡ଼ିଦିଅ । କୁନୁ ଓ ଇରା, ମୋର ଦୁଇ ନାକପୁଡ଼ାର ନିଶ୍ୱାସ, ତମେ ତାଙ୍କୁ ଚୋରି କରି ନେଇଛ, ତୁମର ପ୍ରିୟତମା ପତ୍ନୀଙ୍କୁ ଉପହାର ଦେଇଛ । ସେମାନଙ୍କୁ ମୋତେ ଫେରାଇଦିଅ । ତମେ ଯାଅ, ତମେ ଯାଅ—

ଆଖିରୁ ଲୁହ ଦ'ଧାର ଗଡ଼ିଆସିଲା । ରମା ଧୀରେ ଧୀରେ ମୁହଁ ଟେକି ତା'ର ସମୀପରେ ଆଗରେ ଉଭା ହଲଧରଙ୍କ ମୁହଁକୁ ଚାହିଁଲା । ଫୁଲିଲା ଓଠ ଦ' ଫାଳ ଅଳପ ଥରିଉଠିଲା; କିନ୍ତୁ ମନର ବଚନ ଓଠତଳେ ଗୋପନ ରହିଲା । ସେ ମୁହଁ ନୋଇଁଲା ।

ହଲଧର ବିଚଳିତ ହେଲେ । କହିଁଲେଇ କହିଲେ, ଆପଣ ପିଲାଙ୍କ ପରି କାନ୍ଦୁଛନ୍ତି କାହିଁକି ? ବେଶୀ କଷ୍ଟ ହେଉଛି ? ଧୈର୍ଯ୍ୟ ଧରନ୍ତୁ, ମୁଁ ଯାଇ ଜୟଶ୍ରୀଙ୍କୁ ଡାକଦେଉଛି । ସେ ଆପଣଙ୍କ ପାଖରେ ରହିବେ, ମୁଁ ନିଜେ ଯାଇ ଡାକ୍ତରଙ୍କୁ ନେଇ ଆସିବି । ଗୋମତୀଦେବୀଙ୍କୁ ମଧ୍ୟ ସଙ୍ଗରେ ଆଣିବି । କାଲି ସକାଳୁ ସୁକାନ୍ତବାବୁଙ୍କ ପାଖକୁ ମୋର ଗାଡ଼ି ପଠାଇଦେବି । କାମ ଅଧା ରଖି ସେ ଫେରିଆସନ୍ତୁ । ଆପଣ ଆଉ କାନ୍ଦନ୍ତୁ ନାହିଁ, ଶୋଇପଡ଼ନ୍ତୁ ।

ହଲଧରଙ୍କର ବ୍ୟସ୍ତଭାବ ଦେଖି ରମା ନିଜର ସନ୍ଦେହମିଶା ଭାବନା ପାଇଁ ନିଜକୁ ଅପରାଧିନୀ ମଣିଲା । ଲୁହଧୁଆ ମୁହଁ ଅଳପ ଟେକି କଣେଇ ଚାହିଁଲା । ହଲଧରଙ୍କର ମୁଖଟି ଶୁଖିଲା ଦିଶୁଛି, ଦୁଇ ଆଖିରେ ଅନିଦ୍ରାଜନିତ କ୍ଳାନ୍ତିର ମଳିନତା ।

ସେ ଧୀରେ କହିଲା, କଷ୍ଟ ହେଉନାହିଁ, ଭଲ ଲାଗୁଛି । ଅଡ଼ କହିଁ ଔଷଧ ଲୋକଲେ ମୋ ଆଖିରୁ ଲୁହ ଝରେ ।

ଡାକ୍ତରଙ୍କୁ କହିବା, ସେ ଏଣିକ ମିଠା ଔଷଧ ଦେବେ । ଆପଣ ଶୋଇପଡ଼ନ୍ତୁ, ମୁଁ ଜୟଶ୍ରୀଙ୍କୁ ଡାକିଦେଉଛି, ସେ ପାଖରେ ରହିବେ ।

ହଲଧର ମଝିଦରଜାର ପରଦା ଟେକି ଆରଘରକୁ ପାଦ ବଢ଼ାଇଲେ ।

ରମା କହିଲା, ଆପଣ ରାତସାରା ଜାଗି ରହିଲେଣି, ଦେହ ଖରାପ ହେବ, ଯାଆନ୍ତୁ ଶୋଇବେ । ହରି ତ ପାଖରେ ଅଛନ୍ତି. ଜୟଶ୍ରୀଙ୍କୁ ଏତେ ରାତରେ ଉଠାଇବେ କାହିଁକି ? ପିଲା କେଉଁଠି ଉଠିଲେ ଧନ୍ଦା ଧରିବେ ।

ହଲଧର ପଲଙ୍କ ପାଖକୁ ଫେରି ଆସିଲେ । ଖୁସି ହୋଇ କହିଲେ, ବେଶ୍, ତାହା ହିଁ ହେବ । ଆପଣ ଆଗ ଶୋଇପଡ଼ିବେଟି, ଏଇ ଆଲୁଅ ଲିଭିଲା ।

ହଲଧର ମଶାରି ଟାଣିଲେ । ସ୍ୱିଚ ଟିପି ଆଲୁଅ ଲିଭାଇଲେ । ମଝିଘରକୁ ଆସି କହିଲେ, ହରି, ତମେ ଦାଣ୍ଡକବାଟ ବନ୍ଦ କରିବ ଆସ । କାନ୍ଥକୁ ଆଉଜି ଘୁଙ୍ଗୁଡ଼ି ମାରୁଥିଲ, ଏଥର ଚେଇଁ ରହିବା ତୁମର ପାଳି । ଆବଶ୍ୟକ ହେଲେ ଯାଇ ଆମ ଘରେ ଡାକିବ ।

ହରି ଉତ୍ତର ଦେଲା, ହଉ ଆଜ୍ଞା ।

ହଲଧର ଚାଲିଗଲେ । ହରି ଦାଣ୍ଡ କବାଟ ବନ୍ଦ କଲା । ଶବଦ ହେଲା । ମଝିଘରର ଆଲୁଅ ଲିଭାଇ ସେ କବାଟ ଆଉଜାଇ ବାରଣ୍ଡାକୁ ଗଲା ।

ସବୁ ଶୁନ୍ଶାନ୍ ।

ପଲଙ୍କ ଉପରେ ରମା ଅନ୍ଧାରରେ ତୁନି ହୋଇ ବସି ରହିଲା । ମୁଣ୍ଡ ଭ୍ରମିବାକୁ ଲାଗିଲା । ଯେଉଁ ହଲଧର ତାକୁ ଅପମାନ ଦେଇ ପ୍ରତ୍ୟାଖ୍ୟାନ କରିଥିଲେ, ଯିଏ ଜଗତ୍ଜନନୀ ମନ୍ଦିର ଭିତରେ ତା ଉପରେ ତୃଷିତ ଦୃଷ୍ଟି ପକାଇଥିଲେ, ଏ କ'ଣ ସେଇ ହଲଧର, ବନ୍ଧୁପତ୍ନୀ ବୋଲି ଅସୁସ୍ଥା ଦେଖି ଉନ୍ନିଦ୍ର ହୋଇ ଜାଗି ବସିଥିଲେ ?

ସେ ତାଙ୍କୁ କଥା କହୁଛି । ଲାଜ ଓ ସଙ୍କୋଚର କବାଟ ଖୋଲୁଛି । ହେଲେ ଯଦି ସେ ଭଲ ହୋଇଯାଏ, କାଲି ପୁଣି ଦେଇ ହଲଧର ଅଗେଇ ଆସି

ଆଳାପ ଆରମ୍ଭ କରିବେ । ଥରେ ସେ ମୁହଁ ଖୋଲିଛି, ଆଉ ନୀରବ ରହିପାରିବ ନାହିଁ । ସେ ନିଜେ ଜୟଶ୍ରୀଙ୍କ ଆଗରେ ସବୁ କହିବେ ।

ଜୟଶ୍ରୀ ପ୍ରଘଟ କରିବେ, ପଚ୍ଛରିବେ, କଣ୍ଠ ଫୁଟିଲଣି, ପାଟି ବନ୍ଦ କରିଥିଲୁ ପରା, ହେଉ ହେଉ ନ ହେଲା ବରଙ୍କୁ କଥା କହିଲୁ ତ ?

ସୁକାନ୍ତ ପଚାରିବେ—କଅଣ ପଚାରିବେ ? କହିବେ ଉପହାସ କରି, ହଳଧର ବାବୁ ତମର ଦେହ ଛୁଇଁ ମନର ଓରମାନ ନେଷ୍ଟାଇଛନ୍ତି । ଡାକ୍ତର ନ ହେଲେ ବି ଆଶାୟୀ ମଣିଷ ଡାକ୍ତରୀ କରନ୍ତି ।

ମଲ୍‌ନାହିଁ ଯାହା ।

ରମା ତକିଆ ଉପରେ ମୁଣ୍ଡ ଦେଇ ଶୋଇଲା । ଭାବିଲା, ମରିବାକୁ ମୁଁ ଯାଉଛି, ଅବଶ୍ୟ ମରିବି, ବଞ୍ଚିବି ନାହିଁ ଯେ କାହା ଆଲୋଚନା ଶୁଣିବି । ଗତକଥା ସାତସପନ ହୋଇଛି । ହଳଧର ତା'ର ବଡ଼ଭାଇ ସମାନ । ସେବାକଲେ, ଔଷଧ ଖୋଇଲେ । ଆଜଟି କହିଲେ । ସେ ତାଙ୍କୁ କଥା କହିଲା ତ ଭଲ କଲା । ଏଥିପାଇଁ ଅରୁଚି ପରୁଚି ଲାଗିବ କାହିଁକି ?

ରାଜଜେମା ବୟସ୍ଥା ହୋଇଛନ୍ତି । ସ୍ୱୟମ୍ବର ହେବ । ପିତା ଶହେ ରାଜାଙ୍କୁ ନିମନ୍ତ୍ରଣ ପଠାଇଛନ୍ତି । କେତେ ପିତା ପୁଣି ପଣ ରଖିଛନ୍ତି । ରାଜା, କି ରାଜପୁତ୍ରଗଣ ସ୍ୱୟମ୍ବର ସଭାରେ ସମବେତ । ସେମାନଙ୍କ ମଧ୍ୟରୁ ଅନେକ ହୁଏତ ବିବାହିତ । କାହାର କାହାର ଏକାଧିକ ପତ୍ନୀ, କିଏ କିଏ ପୁତ୍ରକନ୍ୟାଙ୍କର ଜନକ । ଆଶା ଓ ଆଗ୍ରହରେ ସେମାନଙ୍କର ମନ ଜରଜର, ଦେହ ଥରଥର । ରୂପ, ସ୍ୱାସ୍ଥ୍ୟ, ବୀରତ୍ୱ, ବିଦ୍ୟାବୁଦ୍ଧି, କୌଶଳ, ଧନ, ରାଜ୍ୟ ଓ ପ୍ରତିପତ୍ତି ମଧ୍ୟରୁ କିଏ କାହାର ଅଧିକାଂଶ । ନିଜ ବଡ଼ିମାରେ ସମସ୍ତେ ବଡ଼, ତେଣୁ ସମସ୍ତେ ଆଶାୟୀ ।

ଭୁବନମୋହିନୀ ମେନକା ଅବା ଉର୍ବଶୀ ରୂପିଣୀ ତରୁଣୀ, ଶୋଭାର ତରଙ୍ଗ ଛୁଟାଇ ସଖୀମାନଙ୍କ ଗହଣରେ ଧୀରେ ଧୀରେ ଆଗେଇ ଆସୁଛନ୍ତି, ହାତରେ ବରଣମାଳା, ସଲଜ୍ଜ ନୟନରେ ଏଣୀ ଚାହାଣି । ଭରପୂର ଆକର୍ଷଣୀ

ସବୁ ରାଜା ଓ ରାଜପୁତ୍ରଙ୍କର ସ୍ନାୟୁରେ ଉତ୍ତେଜନାର ପ୍ରବାହ ଛୁଟାଇଛି, ଗ୍ରୀବାର ସ୍ପନ୍ଦନ ଆଶା ଦୁରାଶାରେ ଡେଉଁଡେଉଁକା କରୁଛି ।

ଏଇ ସେ ରାଜକେମା, ଧୀର ତରଙ୍ଗ ପରି ହଲହଲ ଚାଲି ଆସୁଛନ୍ତି, ମୋହର ବେକରେ ବରମାଳା ଦେବେ, ହାତ ଧରି ମୋହର ସଙ୍ଗରେ ଯିବେ, ହେବେ ମୋହର ରାଣୀ, ଅଙ୍କଶାୟିନୀ, ଆହ୍ଲାଦଦାୟିନୀ !

ଲୋଭିଲା ଦୃଷ୍ଟି କାମନାର ଡୋରରେ ଶୋଭଙ୍ଗୀର ତନୁକୁ ବେଢ଼ାଇ ଦେଉଛି ପରସ୍ତ ପରସ୍ତ ।

ରାଜକେମା ଜଣକ ବେକରେ ବରମାଳା ଦେଲେ । ସେଇ ସେ ଭାଗ୍ୟବାନ୍, ଅନ୍ୟମାନେ ବିଫଳମନୋରଥ । ଆଶା ହଜିଛି, ଲୋଭିଲା ଦୃଷ୍ଟିର କାମନା ଅପସରିଛି ।

ସେମାନେ ନିମନ୍ତ୍ରିତ ଅତିଥି । ସେମାନେ ବନ୍ଧୁ ।

ଯୁଗଯୁଗର ପ୍ରଚଳିତ ରୀତି ଓ ସଂସ୍କୃତି ଆଶାୟୀ ମନର ଗତି ବଦଳାଇଛି । ରାଜକେମା ବନ୍ଧୁପତ୍ନୀ, ସେ ଭଗିନୀପ୍ରତିମ ।

ରମା ପୁଣି ଅତୀତକୁ ଦୃଷ୍ଟି ବଢ଼ାଇଥିଲା । ହଲଧରବାବୁଙ୍କ ପାଖରୁ ତା'ର ପ୍ରାପ୍ୟ ସମ୍ମାନ, ସ୍ନେହ, ସହାନୁଭୂତି ଓ ଆଶୀର୍ବାଦ ।

ସେ ଯୁଗର ସଂସ୍କାର ଉଭେଇ ଯାଇଛି ?

ସ୍ୱୟମ୍ବର ହେଉଛି ପୁରୁଷର । ସ୍ୱୟମ୍ବର ସଭା ଲୋଡ଼ା ହେଉନାହିଁ, କନ୍ୟାମାନେ ସ୍ୱଦେହରେ ସମବେତ ହେଉନାହାନ୍ତି, ପ୍ରତିକୃତିର ଚଳନ ହେଉଛି । କନ୍ୟା ପିତାମାନଙ୍କର ଦେବା'ନେବାର ପ୍ରତିଯୋଗିତା ଚାଲିଛି । ବିଜୟୀ ବୀରର ଆଉ ଟିକିଏ ଦାବି, ଏ ଯୁଗର ପୁଅ ସେ, ଦୂରରୁ ଅବା ପାଖରୁ ଥରେ ଚାହିଁଦେଲେ ମନ ଖୁସି ହେବ, ସେଇଠୁ, ଯଥା ଭବଣସ୍ୟ ମନୋଦଶା ।

ଭୁବନେଶ୍ୱର, ପାର୍ବତୀ ମନ୍ଦିର, ଦେଖାଦେଖି !

ମନକୁ ଆସିଲା ନାହିଁ ?

ଜମ୍ବୁଦ୍ବୀପର, ଜଗନ୍ମୋହିନୀ ମନ୍ଦିର ।

ସେ ଅନ୍ୟର ପତ୍ନୀ, ଦୁଇଟି ସନ୍ତାନଙ୍କର ଜନନୀ । ମନକୁ ପାଇଲା ? ପରବନତାର ଚଳୁକୁ ସେ ଦୃଷ୍ଟିରେ ବେଢ଼ାଉଥିଲେ ।

ଶ୍ରେଣୀ ରମାର କୋଠରୀ ଭିତରେ ସେଇ ହଳଧର, ସ୍ନେହଶୀଳ, ସେବାରତ ସୋଦର ।

ସେ ଝଗୃରକ କି ପ୍ରତାରକ ?

ରମା ଆଜି ଏକାକିନୀ । ଆଖିକୁ ନିଦ ଆସୁନାହିଁ । ମନ ଉଚାଟ । ଔଷଧ ବ୍ୟର୍ଥ ହେଲା ପରି ! ମୁହଁ ମାଡ଼ି ମାଡ଼ି ପଡ଼ୁଛି । ମଥା ଭ୍ରମୁଛି । ପଲଙ୍କ ଉପରେ ଅନ୍ଧାରରେ ହାତ ଏପାଖ ସେପାଖ ହେଉଛି, ଖୋଜୁଛି ତାଆର ସହାର । ପିଲା ଦଣ୍ଡେ ପାଖରେ ନାହାନ୍ତି । ଜୀବନଦୋସର ଧର୍ମଦେହ ନାହାନ୍ତି । ସେ ଦୂରରେ, କେତେ ଦୂରରେ !

ପାଖରେ ଶୋଇବସି, ମସ୍ତିଷ ଭିତରେ ତା'ର ଅଧେ ଦେହ ପଶିଛି, ନାଚିଛି, ଧୀରେ ଧୀରେ ସେ କେଶ ସାଉଁଳୁଛି । କଳା ମିଚମିଚ ସୁଗୋଲ ଚକଚକ୍‌ଣ ମୁହଁଟି ପାଖେଇ ଆସୁଛି, ଦୂରେଇ ଯାଉଛି, ପୁଣି ପାଖେଇ ଆସୁଛି । ନିଃଶ୍ୱାସର ଧକ୍‌କା ଉତ୍ତପ୍ତ କପାଳରେ ଲାଗୁଛି । କବରୀର ମଲ୍ଲୀ ମାଳରୁ ଭାସିଆସୁଛି ସୁବାସ । ଦେହଶ୍ରୀ ଉଲୁସି ଉଠୁଛି ।

ସୁକାନ୍ତର ତାତଲା ଚଳୁରେ ତଳଙ୍କୁର ପ୍ରବାହ । ଖରତର ଶ୍ୱାସ । କାମନାଜର୍ଜର ଆବିଳ ଆଗ୍ରହ ବେଢ଼ାଇ ଧରୁଛି ଯୌବନ ପ୍ରତିମା, ଧାରଣାରେ ନିବିଡ଼ ଆଲିଙ୍ଗନ ।

ହାତ ଉଠୁନାହିଁ । ମନଗହନରୁ ବର୍ବର ଓ ଜାଡଗଡ଼ା ପୁରୁଷକାର ଧକ୍‌କାଶଉଠୁଛି, ହେବାରତା ନାରୀ ସେ, ହେଉପଛେ ଅବହେଳିତା, ଅତ୍ୟାଚରିତା ପତ୍ନୀ ! ସେ ଖୁହେ ଟିକିଏ ଆଦର, ସ୍ନେହ ଓ ସହାନୁଭୂତି । ସେତିକି ।

ସେ କୌଶଳୀ ପୁରୁଷଙ୍କର ଖେଳ କଣ୍ଢେଇ, ବିଷକନ୍ୟା ? ସପମୀର ଯୋଗଭଙ୍ଗ କରିବାକୁ ପ୍ରେରିତା ଉର୍ବଶୀ ? ସହାନୁଭୂତିରେ ଜରଜର ହୋଇ ସେ ଦେବା କରୁନାହିଁ । ତାରୁଣ୍ୟର ନାଗଫାଶରେ ସେ ପରସ୍ତ ପରସ୍ତ ଗୁଡ଼ାଇ ଦେଉଛି, ଫଣା ଟେକୁଛି, ନିଃଶ୍ୱାସର ଲହଡ଼ି ବାଜୁଛି ମୁହଁରେ । ହାତ ବଢ଼ାଇ ବେଢ଼ାଇ ଧରିଲେ ଫଣା ନଇଁଆସିବ ଗୁଡି ଉପରକୁ । କୋମଳ ଦଂଶନ । ବିଷ ଚହଟିବ । ସୁଚାରୁର ବଡ଼ମାର ମରଣ ହେବ ।

କାହିଁ ସେ ଅଗାଧ୍, ଜ୍ଞାତ ଓ ଅଜ୍ଞାତର ମଝିରେ ଠିଆ ହେଇଥିବା ଦୁର୍ବିନୀତ ପ୍ରହରୀ ? ପୁରୁଷଙ୍କର ପଦ୍ମଚୋଳାରେ ସେ ମଧ୍ୟ ବଶ ହୋଇଛି ? ଦେବା କରିବାକୁ ସର୍ପିଣୀ ଶୋଭାବତୀକୁ ସୁଯୋଗ ଦେଉଛି ?

ଶରୀର ମନ୍ଦ୍ରୀମାଳ ମହକିଉଠୁଛି । ଦେହ ମନ ଉଚାଟ କରୁଛି । ହାତ ଦୁଓଟି ଆପେ ଆପେ ଉଠୁଛି । ଭଲପଣିଆଁର ସବୁ ତର୍କ ପଛରେ ପଡ଼ୁଛି । ଶୋଭାବତୀର ଶୀତଳ ମାଂସଳ ହାତ ପାପୁଲିକୁ ସେ ମୁଠାଇ ଧରୁଛି ।

ଶୋଭାବତୀ ଟାଣି ନେଉନାହିଁ, ସେ ନିଶ୍ଚଳ, ସେ ନୀରବ ।

କାନରେ ବାଜୁଛି ଆଉ ଜଣକର ବଂଶୀଜିଣା କୋମଳ ସ୍ୱର, ମନା ନ ମାନିବାର ଫଳ ପାଇଲ ତ ? ଟିକିଏ ଅପେକ୍ଷା କଲନାହିଁ ! ରାଗ ତମତମ ହୋଇ ମନଇଚ୍ଛା ମତେ ଶୋଧିଲ, ବାସି ଖଟା ପଖାଳ ଖାଇ ଅଫିସକୁ ଗଲ । ତମର ସବୁ ରାଗଦ୍ୱେଷ, ଅଭିମାନ, କଟୁକଥା, ଫୋପଡ଼ା କଚଡ଼ା ମୁଁ ହଜମ କରିଛି । ସେ ସବୁ ମୋର ଦେହସହା ହୋଇଛି । ଅଧନିଆ ବାସିପଖାଳ କଂସାକ ତମେ ହଜମ କରିପାରିଲ ନାହିଁ । ଦେହ ତାତିରେ ଖଇ ଫୁଟୁଛି । ଆଉ ଦିନେ ଅବାଧ ହେବନାହିଁ । ନିଅ, ଉଷୁମ ବାର୍ଲିପାଣି ପିଇଦିଅ ।

ପିଇବି ନାହିଁ ଯାଅ, ତମେ ମତେ ଉଲୁଗୁଣା ଦେଉଛ । ତମ ମାଇପିଜାତିଙ୍କ ସ୍ୱଭାବ ମୁଁ ଜାଣେ ଯେ, ନଇଁପଡ଼ିଲେ ବେଳ ଉଣ୍ଡି ବିଧାଏ ଥୋଇବ । ମତେ ଜର ହେଲା ତ ତମର କଅଣ ଯାଉଛି ? ମୁଁ ମୋର କଷ୍ଟ

ପାଉଛୁ । କାଲି ସକାଳେ ଅଡୁଗ କଂସାଏ ବାସି ପଖାଳ ଖାଇବ । ଜର ବଢ଼ୁ, କମୋନିଆ ହେଉ, ସନ୍ନିପାତ ହେଉ, ହେଉଠୁ—

ଚୁପ ହ କହୁଛୁ, ହାଣ୍ଡିରେ ପାଣିତୋରାଣି ଅଛି ଯେ, ମତେ ଡରାଇବ ? ସବୁ ମୁଁ ଶେଷ କରିଦେଇଛୁ । ହଉ ହେଲା, ସବୁ ଦୋଷ ମୋର, ମୋ କଥା ମୁଁ ଫେରାଇ ନେଉଛୁ । ନିଅ, ପିଇ ଦେବଟି, ମୋ ସୁନାଟି ପରା !

ସୁକାନ୍ତ ଅଝଟ ହୋଇଛି । ଜୁଳୁଜୁଳୁ କରି ଅନାଇଁ ରହିଛି । ପାଖରେ ବସିଛି ବାଈଆଣୀ ରମା—ଫୁରୁଫୁରୁ କେଶ, ଶୁଖିଲା ମୁହଁ, ଫିକା ଆଖି । ମଇଳା ବସନ । ଗୋଟିଏ ହାତ ସୁକାନ୍ତର ଦେହ ଆଉଁସୁଛି, ଆଉ ହାତରେ ବାର୍ଲି ଗିଲାସ ।

ସନ୍ଧ୍ୟାପହରୁ ସେ କାମରେ ଲାଗିଛି । ଆଉ ପଲଙ୍କରେ ପିଲା ଦହେଁ ଶୋଇପଡ଼ିଲେଣି । ରମା ସୁକାନ୍ତର ପାଦ ସେକିଛି, ଅଞ୍ଚଳରେ ପୋଛି ଗରମମୋଜା ପିନ୍ଧାଇ ଦେଇଛି, ଦେହ ହାତ ଘଷି ଦେଇଛି, ମଥା ସାଉଁଳିଛି।

ଅଦଳେଡ଼ା ଅଳିଆ କେଶରୁ ମଲ୍ଲୀ ଫୁଲର ବାସ ଛୁଟୁନାହିଁ, ମନବନରୁ ସଜ ତେଜ ପ୍ରେମ-କୁସୁମର ମହକ ଛୁଟିଛି । ସେ ଆଜ କାମିନୀ ନୁହେଁ, ସେ ଆଜ ସେବିକା, ଭଗିନୀ, ମାତା ।

ସୁକାନ୍ତ ମୁଣ୍ଡ ଟେକ ଉଠିଲା । ଗିଲାସରେ ଓଠ ଲଗାଇ ଗରମ ବାର୍ଲି ଢକଢକ କରି ପିଇଲା ।

ପଣତରେ ଓଠ ପୋଛି ରମା କହିଲା ଏଥର ଚୁପହୋଇ ଶୋଇପଡ଼, ସକାଳକୁ ଝାଡ଼ଝୁଡ଼ ହୋଇ ବସିବ । ଶୋଇପଡ଼ ମୁଁ ଚଦର ଘୋଡ଼ାଇଦିଏ ।

ସୁକାନ୍ତ ସୁନାପିଲା ପରି କଥା ମାନିଲା । ରମାର ହାତ ଛାଡ଼ିଲା ନାହିଁ, ତୁଣ୍ଡ ଖୋଲିଲା ନାହିଁ ।

ରମା ଜାଣେ, ସେ କଅଣ ଖୋଜୁଛନ୍ତି ।

ସେ ମୁହଁ ନୋଇଁଲ, ହସହସ ଆଖି, କହିଲା, ବଡ଼ ଅଲାଜୁକ ତମେ । ସୁକାନ୍ତର ତାତଲା ଚିବୁକରେ ଗୋଟିଏ ଚୋକ । ମୁହଁ ଟେକିଲା । ଲାଜରେ ଓଠ ପାଖୁଡ଼ା ଦିଓଟି ଥରିଥରୁଛି, କହିଲା, ଶୋଇପଡ଼ ଏବେ ସୁନାଟି ପରି ।

ସୁକାନ୍ତର ଅଳସ ହାତମୁଠା ହୁଗୁଳା ହେଲା ।

ଶୋଭାବତୀ ଧୀରେ ଧୀରେ ହାତପାପୁଲି ଖସାଇନେଲା । ମଶାରି ଭିତରୁ ମୁହଁ ପଦାକୁ କାଢ଼ିଲା । ଟେବୁଲ ପାଖରେ ଠିଆହୋଇ ସେ ଡାକ ଛାଡ଼ିଲା, ଅଗାଧୁବାବୁ ···ସାହେବଙ୍କର ନିଦ ଭାଙ୍ଗିଲାଣି, ବାର୍ଲିପାଣି ଦେବ ପରା ?

ଶୋଭାବତୀ ପଦାକୁ ଗଲା । ତା ହସର ଶବ୍ଦ ସୁକାନ୍ତର କାନରେ ବାଜିଲା ।

ସୁକାନ୍ତର ଗୁଡ ଥରଥର ହୋଇ କମ୍ପିଲା । ସେ ବୁଝିଲା, ଶୋଭାବତୀ ଉପହାସ କରୁଛି, ଶୋଭାବତୀ ପ୍ରତିଶୋଧ ନେଉଛି । ସେ ଜଣାଇଁ ଦେଉଛି ଯେ, ସେ ପ୍ରେମ-କାଙ୍ଗାଳୁଣୀ ହେଲେ ବି ନିଜକୁ ଯାଚିଯାଚି ବିତରଣ କରେନାହିଁ, କାହାରି ପ୍ରେମରେ ସେ ପଡ଼େନାହିଁ । ସେ ନିଜକୁ ହିଁ ଭଲପାଏ ।

କଳା ମିଚମିଚ, ଫୁରକୁଟିମୁଣ୍ଡି, ସିଙ୍ଘାଣି-ନାକୀ, ମଇଳା, ଅସନା ଯେଉଁ ଲଙ୍ଗୁଳୀ ଦରଲଙ୍ଗୁଳୀ ଝିଅମାନେ ମାଟିକାଦୁଅରେ ଘାଣ୍ଟିଚକଟି ହେଉଥିଲେ, ତାଙ୍କରି ଭିତରୁ ସେ ଜଣେ, ପାଖକୁ ଲଗିଲାଗି ଗଲେ ନାକଟେକି ଯେଉଁମାନଙ୍କୁ ଲୋକେ ଆକଟ କରି କହନ୍ତି, ଇସ୍, ଛୁଇଁବୁ, ଛୁଇଁବୁ, ଦୂରେଇ ଯା, ସେଇମାନଙ୍କ ଭିତରୁ ସେ ଜଣେ । ସେମାନଙ୍କୁ ଦିନେ ପୁଣି ଆଦରକରି ଅତି ସ୍ନେହରେ ଅଣ୍ଡିଲା ଲୋକେ କୋଳେଇ କହନ୍ତି, ଆରେ, ସେଠି କାହିଁକି ଠିଆ ହୋଇଛୁ, ଏଠିକି ଆ, ପାଖକୁ, ଆହୁରି ପାଖକୁ—

ସେ ଆକର୍ଷଣର ଚଳନ୍ତି ପ୍ରତିମା ।

ସୁକାନ୍ତର ମନଗହନରେ ସତେକି ଶୋଭାବତୀ କହୁଛି, ହୋଇଥିବ ଗୋ, ନିଜେ ମୁଁ କରିନାହିଁ; ସମସ୍ତେ ମତେ ବଡ଼ କରିଛି, ସର୍ବାଙ୍ଗରେ ଭରପୁର ସ୍ୱାସ୍ଥ୍ୟ ଭରିଛି । ମୋଓରି ଦେହରେ ମୋର ତାରୁଣ୍ୟ ପର୍ବତରେ ଶିଖର ତୋଳିଛି, ନୟନରେ ଅପାଙ୍ଗ ଖଞ୍ଜିଛି, ବଦନରେ ହସିଲ ଲେପିଛି ।

ମନ ମୋର ଛେଉଛେଉକା ।

ଏ ଦେହ, ଏ ଯୌବନ, କ୍ଷୀରସର ଖାଇ ହୋଇନାହିଁ । ମାଟିତଳର କନ୍ଦା, ବୃକ୍ଷଲତାର ପତ୍ର, ଚେର, ଫୁଲ ଓ ଫଳ, ଆମ୍ବ ଟାକୁଆ, ତେନ୍ତୁଳି ମଞ୍ଜି, ମାଣ୍ଡିଆ, କଙ୍ଗୁ, ବଣର ପଶୁ ଓ ପକ୍ଷୀମାନଙ୍କର ମାଂସ, ପାଣି ଓ ପଙ୍କର ଗେଣ୍ଡା କୋଚଆ, ଆମ୍ବପତ୍ର ଠୋଲା ଭିତରର କାଇ, ଖଜୁରି ଗଛର ପୋକ, ହୁଙ୍କା ତଳର ଉଇଟାକୁ, ଗାତ ଭିତରର ମୂଷା ଓ ଟେମଣା ସାପ, ଯା'ହା ତମେ ଘୃଣାକର ମ, ସେଇଆ ଖାଇ ଗଢ଼ିଉଠିଛୁ, ବଢ଼ିଉଠିଛୁ ମୋର ଯୌବନ-ଟଳଟଳ ମାଂସଳ ଦେହଟି ।

ତାଅର ସ୍ପର୍ଶ ପାଇଁ ହାତ ବଢ଼ାଇଲ, ହାତ ଧରିଲ । ନିଜକୁ ମୁଁ ସମର୍ପି ଦେଇଥିଲି ତ, ହାତ ହୁଗାଳି ଅବ୍ୟକ୍ତ କଥାରେ ପ୍ରକାଶ କଲି, ତୁ ପଳାଇ ଯା, ତୁ ଦୂରେଇ ଯା । କାହିଁକି ମ ଘୃଣା କଲ ? ହଉ ହେଲା— ।

ଉତ୍ତେଜିତ ସୁକାନ୍ତ ପଲଙ୍କ ଉପରେ ଉଠିବସିଲା । ଆରଘରୁ ଶୋଭାବତୀର ପାଟି ଶୁଭୁଛି । ସେ କହୁଛି ଅଗାଧୁବାବୁ, ଉଠ ମ, ସାହେବଙ୍କୁ ବାଲିପାଣିଦିଅ, ହେକ ଶୋଷରେ ସେ ଗୋଟାଗୁଏଁ ଅରୁଛନ୍ତି, ମୋ ହାତରୁ ସେ ପିଇବେ ନାହିଁ, ମୁଁ ଅଛବ ! ଓହୋ, କେଡ଼େ ଗାଢ଼ ନିଦ ମ ତମର ।

ଯୌବନଗର୍ବରେ ଗର୍ବିତା ସେ ତରୁଣୀ, ଉପହାସ କରୁଛି ! ସେ ଜଣାଇ ଦେଉଛି, ତୁମେ ମୋତେ ଉପେକ୍ଷା କରିପାରିନାହଁ, ଗୋଡ଼ରେ ଆଡ଼େଇ ଦେଇ ପାରିନାହଁ, ମୁଁ ତମର ସର୍ବାଙ୍ଗରେ ଅନଳ ଜାଳିଛି, ତୁମକୁ ଜଳିପୋଡ଼ି ପାଉଁଶ ହେବାକୁ ଛାଡ଼ିଦେଇ ଅସିଛି । ମୁଁ ପ୍ରମାଣ ଦେଇଛି, ତମର ବିଦ୍ୟାବୁଦ୍ଧି, ତମର ପଦମର୍ଯ୍ୟାଦା, ଧନ, ପ୍ରଭୁତ୍ୱ ଓ ବଡ଼ପଣ, ଅଢ଼ ନିଶମାଖି ଶୋଭାବତୀ, ବଣର ଫୁଲରେ ଯେ ମହକ ଉଠିଲା, ତା ସଙ୍ଗେ ତଉଲ କରିଲ, ତାକୁ ହିଁ ମଣିଲ ଅଧିକ, ହେଉପଛେ ମୁହୂର୍ତ୍ତକ ପାଇଁ । ଆବର୍ଜନା ବୋଲି ମୋତେ ପରେ ଫିଙ୍ଗିଦେଲ ସିନା, ଆଗ ହାରିଲ ତ ।

ନାହିଁ ନାହିଁ, ମନ ତେଜି ଉଠିଲା । ସୁକାନ୍ତ ମଶାରି ଟେକି ପଦାକୁ ଆସିଲା । ଦେହର ଜ୍ୱର, ଦେହର ବ୍ୟଥା ଉପଶମ ହୋଇଛି, ଭେଦିଛି

ସ୍ନାୟୁରେ । ଭାବନା ପ୍ରତିଶୋଧର ବିଷରେ ଜର୍ଜରିତ । ମଲ୍ଲୀଫୁଲର ବିଷାକ୍ତ-ବାଷ୍ପ ପ୍ରକୋଷ୍ଠ ଭିତରେ ଭରିରହିଛି, ଶ୍ୱାସରୋଧ କରୁଛି ।

ସୁକାନ୍ତ ଚଉକି ଉପରେ ବସିଲା । ଅଳ୍ପ ଚେଇଁଲା । ଭାବିଲା, ଉଦ୍ଧତ ନାଗୁଣୀର ଫଣା ନୋଇଁବ, ଯୌବନର ତୁଙ୍ଗଶୃଙ୍ଗ ଭାଙ୍ଗି ଚୂନା କରିବ, ହସିଲା ଅପାଙ୍ଗକୁ ନୋଇଁ ଆଣିବ ତଳକୁ । ସେ ପରାଜୟ ସ୍ୱୀକାର କରିବ ନାହିଁ । ସେ ବିଜୟୀ ହେବ ।

ହାତରେ ବାଲିଗିଲାସ ଧରି ନିଦ ମଳମଳ ଅଗାଧୁ କୋଠରୀରେ ପଶିଲା । ତା ପଛରେ ଶୋଭାବତୀ । ଉଜ୍ଜ୍ୱଳ ଆଖିରେ ଅବଜ୍ଞାର ହସ । ଦର-ହସିଲା ଓଠରେ ବିଜୟିନୀର ଗର୍ବ । ସତେ କି ସେ ପ୍ରଶ୍ନ ପଚାରୁଛି, ବିଜୟୀ ହେବ ନରପୁଙ୍ଗବ ? ମୁଁ ବଣ ପାହାଡ଼ର ହରିଣୀ, ଚଞ୍ଚଳ ମୋର ଗତି । ଏଇଠି ଅଛି, ଏଇଠି ନାହିଁ । ଫାଶ ପକାଇ ଧରିବ ? ମୁଁ ହେବ ବାଘୁଣୀ, ଧରିବି, ରକ୍ତ ଶୋଷିବି । ଦୂରେଇ ରହ । ତମ ଉପେକ୍ଷାର ପ୍ରତିଶୋଧ ମୁଁ ନେଇଛି । ତମେ ହାରିଛ—

ଦୁଇହାତ ଗଳାରେ ବେଢ଼ାଇ, ନିବିଷ୍ଟ ଭାବରେ ହୃଦୟରେ..ଭକ୍ତି, ଫୁରଫୁରମୁଣ୍ଡୀ, ହସହସମୁହାଁ ରମା କହୁଛି ମନ-ଉଦ୍ୟାନର ନିଭୃତ କୁଞ୍ଜରେ, ହେ ମୋର ଦେବତା, ହେ ମୋର ସର୍ବସ୍ୱ, ତମେ ବିଜୟୀବୀର, ପ୍ରଲୋଭନକୁ ପାଦରେ ଆଡ଼େଇ ବିଜୟୋଲ୍ଲାସରେ ସଗର୍ବରେ ଫେରିଆସିଛ, ମୋର ଆନୁଗତ୍ୟର ଦୃଢ଼ତାରେ ତମର ଚଞ୍ଚଳ ଥରଥର କାମନା ସ୍ଥିର ହୋଇଛି । ମୋର ତରଳ ସରଳ ଦୃଷ୍ଟିରେ ତମ ମନର ଆବିଲ ପ୍ରବାହ ନିର୍ମଳ ହୋଇଛି । ମୋଓଠ ପରଶରେ ତମର ତପ୍ତ ରକ୍ତ ଶୀତଳ ହେବ ।

ସୁକାନ୍ତ ଅଗାଧୁ ହାତରୁ ଗିଲାସ ନେଲା । ଶୋଭାବତୀର ଦରହସିଲା ମୁହଁକୁ ଘୃଣା ମିଶା କଠୋର ଦୃଷ୍ଟିରେ ଚାହିଁଲା । ସୁକାନ୍ତର ସେହି ଦୃଷ୍ଟିର ତେଜସ୍ୱୀନ ଆଲୋକ ସତେ କି ଶୋଭାବତୀକୁ ଜାଳିଦେଲା । ଶୋଭାବତୀର ଦୋହଲ ଦୃଷ୍ଟି ତଳକୁ ନଇଁଲା ।

ଜୟଶ୍ରୀ ଆଖି ଖୋଲିଲେ । ଭୟଙ୍କର ସ୍ୱପ୍ନ ଭାଙ୍ଗିଯାଇଛି । ଛାତି ଥରଥର କମ୍ପୁଛି । ସେ କଣେଇ ଚାହିଁଲେ । ଝରକାର ପରଦାର ଆରପାଖରେ ଉଷାର ଶୀତଳ କୋମଳ ଆଲୁଅ ଢେଉ ଖେଳିଲାଣି । ଘରଭିତରେ ନେଳିଆ ବିଜୁଳି ଆଲୁଅ ନିଷ୍ପ୍ରଭ ଦିଶିଲାଣି । ବିଜୁଳି ପଙ୍ଖାର ଘରଘର ଶବ୍ଦ କାନରେ ବାଜୁଛି । ପଲଙ୍କର ଗୋଟିଏ କଡ଼ରେ କୁନୁ ଚିତ୍ ହୋଇ ଶୋଇଛି । ଇରା ତାଙ୍କର ଗୋଡ଼ତଳେ କଡ଼େଇ ଶୋଇଛି । ଯାହାଙ୍କ ନାମରେ ସେ ଏଡ଼େ ଭୟଙ୍କର ସପନ ଦେଖିଲେ ସେ ପାଖରେ ନାହାନ୍ତି ।

ସେ ଉଠି ବସିଲେ । କେତେଆଡ଼ର କେତେ ସମୟର ସମ୍ଭବ ଅସମ୍ଭବ ମିଶାମିଶି ଘଟଣା ସପନ ରାଇଜରେ ଘଟିଗଲା, ମନେନାହିଁ । ମନେପଡ଼ୁଛି ଶେଷ ଘଟଣାଟି ।

ଅଗନାଗ୍ନି ଅରଣ୍ୟ ଭିତରେ ଆବଡ଼ା ଖାବଡ଼ା ଅଣଓସାର ସାପୁଆ ରାସ୍ତାରେ ତୀରବେଗରେ ମଟରଗାଡ଼ି ଛୁଟିଛି । ହଳଧରବାବୁ ନିଜେ ଚଳାଉ-ଛନ୍ତି । ପାଖରେ ବସିଛନ୍ତି ଜୟଶ୍ରୀ । ପିଲାଗୁଡ଼ିଏ ପଛ ସିଟ୍‌ରେ ବସି ପାଟିତୁଣ୍ଡ କରୁଛନ୍ତି । କୁନୁ ଓ ଇରା ମଧ୍ୟ ଅଛନ୍ତି । ରାସ୍ତା ମୋଡ଼ରେ ବଡ଼ ପଥର । ଗାଡ଼ି ବାଜିଲା ସେହି ପଥରରେ, ଓଲଟି ପଡ଼ିଲା ।

ସମସ୍ତେ ଅଛନ୍ତି, କାହାର ଦେହରେ ଆଞ୍ଚ ଲାଗିନାହିଁ । ଗାଡ଼ି ଚୂର୍‌ମାର୍ ହୋଇଛି । ସମସ୍ତେ ତ ଥିଲେ, ହଳଧରଙ୍କର ଦେଖାନାହିଁ ଯେ, ସେ କୁଆଡ଼େ ଗଲେ ?

ସନ୍ଧ୍ୟା ଅନ୍ଧାର ଘୋଟି ଆସୁଛି । ଜୟଶ୍ରୀ ବାଇଆଣୀ ପରି ଏଣେତେଣେ ଧାଉଁଛନ୍ତି, ଚିତ୍କାର କରୁଛନ୍ତି । ଅରଣ୍ୟ ଭିତରୁ ଅସ୍ତବ୍ୟସ୍ତ ହୋଇ, ଖୋଲାକେଶ ଦୋହଲାଇ ରାସ୍ତା ଉପରକୁ ଧାଇଁ ଆସୁଛି ରମା, ତା ପଛରେ ସୁକାନ୍ତ ।

ହଳଧର କାହାନ୍ତି ? ଏ ଦୁହେଁ କେଉଁଠୁ ଆସିଲେ ?

ବଡ଼ ରାସ୍ତା ହଜିଯାଇଛି । ଜଙ୍ଗଲ ଭିତରେ ଶଗଡ଼ଗୁଳାରେ ଗୋଟିଏ ବଳଦଗାଡ଼ି ଠିଆ ହୋଇଛି । ପିଲାଗୁଡ଼ିକ ତାଆରି ଭିତରେ ପାଟିତୁଣ୍ଡ

କରୁଛନ୍ତି । ସୁକାନ୍ତ ଓ ରମା କୁଆଡ଼େ ଛପିଗଲେଣି । ଗାଡ଼ି ଭିତରୁ ମୁହଁ ଗଳାଇ କୁନୁ ଡାକ ଛାଡ଼ୁଛି, ମାଉସୀ, ମାଉସୀ— । ଇଗ୍ନ ରଡ଼ ଛାଡ଼ୁଛି । ଗାଡ଼ିଆନ ଗାଡ଼ି ଚଳାଉଛି ।

ହଳଧର ଗଲେ କୁଆଡ଼େ ?

ଅନ୍ଧାର ଘନେଇ ଆସୁଛି । ଜୟଶ୍ରୀ ପଛରେ ପଡ଼ିଛନ୍ତି । ଗାଡ଼ି ଦୂରେଇ ଯାଉଛି । ସେ ପାଟିକରି ପଛରେ ଧାଉଁଛନ୍ତି । ପଥର ଝୁଣ୍ଟି ତଳେ ପଡ଼ୁଛନ୍ତି । ହାତଧରି ରମା ଉଠାଉଛି । ଜୟଶ୍ରୀ ଉଠିପାରୁ ନାହାନ୍ତି ।

ଦେହ ଅବଶ ଲାଗୁଛି । ଗୋଡ଼ହାତ ଥରୁଛି । ସେ ଧୀରେ ଧୀରେ ଉଠିଲେ, ମଶାରି ଟେକି ପଦାକୁ ଆସିଲେ । ହଳଧର ପଲଙ୍କରେ ନାହାଁନ୍ତି । ରାତସାରା ରମା ପାଖରେ ଜଗି ବସିଥିବେ । ଯାଉଛି କହି ତାଙ୍କୁ ସେ ରମା ପାଖରେ ବସାଇ ଦେଇ ଆସିଥିଲେ, କଦୋଉଡ଼ ନିଦ ଘୋଟିଗଲା ।

ହଳଧର ଆସି ଉଠାଇଲେ ନାହିଁ କାହିଁକି ?

ଜୟଶ୍ରୀ ମଝିଘରକୁ ଆସିଲେ । ଶାଢ଼ୀର ପଣତ ତଳେ ଘୁରୁଛି । କେଶବାସ ଅଲରା । ମଝିଘରର ଆଲୁଅ ଲିଭିଛି । ଧୀରେ ଧୀରେ ବିଜୁଳିପଙ୍ଖା ବୁଲୁଛି । ଫିକା ପାହାନ୍ତାର ଦରବିକଶିତ ମଲ୍ଲୀଫୁଲିଆ ଆଲୁଅ ଦୁଇପାଖର ଖୋଲା ଝରକା ବାଟେ ପ୍ରକୋଷ୍ଠରେ ପଶୁଛି । ଅଳପ ଆଲୋକିତ ହୋଇଛି । ଆରାମ ଚଉକିରେ ଗୋଡ଼ ଲମ୍ବାଇ ମୁଣ୍ଡତଳେ ତକିଆ ଦେଇ, ହଳଧର ଶୋଇପଡ଼ିଛନ୍ତି ।

ଛାତିତଳେ ଉଲ୍ଲାସର ଛଳଛଳ ଉଚ୍ଛଳ ତରଙ୍ଗ ଛୁଟିଲା । ଜୟଶ୍ରୀଙ୍କର ଓଠରେ ବିମଳ ହସର ଢେଉ ଖେଳିଲା । ବାରସ୍ତୁଉଲିଆ ସପନର ପ୍ରଭାବ ଅପସରିଲା । ପ୍ରାଣାଧିକ ସ୍ୱାମୀ ତାଙ୍କର ଏଇଠି ଅଛନ୍ତି । କାଳେ ନିଦରେ ବ୍ୟାଘାତ ଘଟିବ ବୋଲି ସେ ପାଖକୁ ଯାଇ ଉଠାଇ ନାହାନ୍ତି । ପଲଙ୍କରେ ନ ଶୋଇ ଗୋଟିଏ ଚଉକି ଉପରେ ଶୋଇ ରାତି କଟାଇଛନ୍ତି । ସେମିତିକା ମଣିଷ ସେ । ନିଜେ ପଛେ ଅସୁବିଧା ଭୋଗିବେ, ଅନ୍ୟର ଅସୁବିଧା ସେ କରିଦେବେ ନାହିଁ ।

ରମା ପାଖରୁ କେତେବେଳେ ଫେରିଲେ ? କିଏ ତା'ର ସ୍ୱରୂପ ଦେଖିଲା ? କିଏ ଔଷଧ ଦେଲା ? ହଁ, ନଟବରବାବୁ ଡାକ୍ତର ଅସିଥିବେ, ତାଙ୍କ ସାଙ୍ଗରେ ଗୋମତୀ । ରମା ପାଖରେ ସେଇ ବସିଥିବେ । ସେ ନିଶ୍ଚୟ ଭଲ ହୋଇଗଲାଣି ।

ଦୁଇଟି ପିଲାର ମା ହୋଇ ମଧ୍ୟ ରମାର ପିଲାବୁଦ୍ଧି ଯାଇନାହିଁ । ପିଲାଙ୍କ ପରି କାନ୍ଦଣା । ବେକ ଗୁଡ଼ାଇ ଧରି ସେ କେନେଇ କହୁଥିଲା, ମୁଁ ମରିବି ଲୋ ଭଉଣୀ, ସିଏ ତ ଟୋକା ମଣିଷ, ନୂଆ ସଂସାର କରିବେ, ତାଙ୍କର ଆଉ କେତେ ପିଲା ହେବେ, ମୋ କୁନୁ ଇରକୁ କିଏ ମଣିଷ କରିବ ।

ଜୟଶ୍ରୀଙ୍କ ଆଖିରୁ ଲୁହ ଝରିଲା । ହେରଣା ଫୁଲିଲା ମୁହଁକୁ କାନ୍ଧକୁ ଆଉଜାଇଲେ । ମୁଣ୍ଡ ଓ ପିଠି ଆଉଁସି ଗେଲେଇ କହିଲେ କାନ ପାଖରେ, ବାଇଆଣୀ କି, ସାମାନ୍ୟ ରୋଗକୁ ଏତେ ଡରୁଛ ? ଭଲ ହୋଇଯିବ ଯେ ।

ଭଲ ନ ହେଉ, ମୁଁ ସେଇଆ ଚାହେଁ ।

ଏପରି କଥା କହନା ରମା ।

ଆଖିର ତତଲା ଲୁହ ଜୟଶ୍ରୀଙ୍କର ବାହୁ ଉପରେ ପଡ଼ିଲା । ରମା କହିଲା, ସ୍ୱାମୀ ଦେବତାଙ୍କର ମନଜାଣି ସେବା କରିବାକୁ ଯେତେ ଚାହିଁଥାଏଁ ହେଲେ ବି ମୋର ସବୁ କାମରେ, ସତରେ ଲୋ, କେଉଁଠି କିଛି ଦୋଷତ୍ରୁଟି ରହି-ଯାଏ । ସେ ସିନା ଟିକିଏ ବିରକ୍ତ ହୁଅନ୍ତି, ପୁଣି ସବୁ ଭୁଲ କ୍ଷମା କରନ୍ତି । ମୁଁ ଭାବେ, ତାଙ୍କ କ୍ଷମା, ଆଦର ଓ ସ୍ନେହର ଉପଯୁକ୍ତ ପାତ୍ର ମୁଁ ନୁହେଁ, ମୋ ମନରେ ଏତିକି ଦୁଃଖ ରହିଯିବ ।

ବିରକ୍ତ ହୋଇ ଜୟଶ୍ରୀ କହିଲେ, ଛି, ଛି, ଏହି କଥା ତମେ ମନକୁ ଆଣୁଛ ? ଶୋଇବଟି, ମୁଁ ପାଖରେ ବସିଛି । ସମସ୍ତଙ୍କର ଦେହମୁଣ୍ଡ ହୁଏ, କି ତମର ଆଜି ନୂଆ ହେଉଛି । ସୁକାନ୍ତବାବୁ ପାଖରେ ନାହାନ୍ତି ବୋଲି ତମେ ଝୁରି ହେଉଛ । ସେଥିପାଇଁ ଏମିତି ଅଭିମାନିଆ କଥା ତମ ମୁହଁରୁ ବାହାରୁଛି । ସୁକାନ୍ତବାବୁ ତମକୁ ଅତି ସ୍ନେହ କରନ୍ତି, ଏ କଥା ସମସ୍ତଙ୍କୁ ଜଣା । ମତେ ତ ଅଛପା ନାହିଁ ! ବାପ ପରି ସେ ଶାସନ କରନ୍ତି, ଭାଇପରି

ଖଲବ ଲଗାନ୍ତି ଓ ଚଢ଼ାନ୍ତି, ସ୍ନାନଘର କି ଟିକସୁଅ ପରି ଅଳି କରନ୍ତି । ଆଉ, ଜାଣିକରି ତ ସେ କୁନୁ ଇସ୍ୱଙ୍କ ବାପ ! ତମେ ଶୋଇପଡ଼ିବଟି ।

ଜୟଶ୍ରୀ ରମାକୁ ଧୀରେ ଧୀରେ ବିଛଣାରେ ଶୁଆଇ ଦେଲେ । ଘଫା ସ୍ତୁଦର ଘୋଡ଼ାଇ ଦେଲେ । ଆଉଜି ବସି ଦେହରେ ହାତ ପକାଇଲେ ।

ରମା କ୍ଷୀଣ ସ୍ୱରରେ କହିଲା, କାଲେ ମୁଁ ନଥିବି, ସେ ଆସିଲେ କହିଦେବ ଅପା, ଏ ଜୀବନରେ ତାଙ୍କର ମନ ମନାଇଁ ମୁଁ ସେବା କରିପାରିଲି ନାହିଁ, ଠାକୁରଙ୍କୁ ଜଣାଣ କରୁଛି ଯେପରି ଆସନ୍ତା ଜନ୍ମରେ ମୁଁ ସେଭକ କରିପାରିବି, ସେତିକି ଶକ୍ତି, ସେତିକି ବୁଦ୍ଧି ଠାକୁରେ ମତେ ଦେବେ । ତମକୁ ମୋ ରାଣ, କହିଦେବ ଅପା, ରାଗରୋଷ କି ଅଭିମାନ କରି ମୁଁ ଏହା କହୁନାହିଁ, ତାଙ୍କର ସାତବର୍ଷକାଳ ଘରଣୀ ହୋଇ ଯାହା ମୁଁ ଅନୁଭବ କରିଛି, ସେଇଆ ମନଖୋଲି କହୁଛି ।

ବାଇଆଣୀଟା, ସୁନାମୁଣ୍ଡା ସୁକାନ୍ତ ଉପରେ ଅଭିମାନ କରି, ଏଣୁତେଣୁ ଭାବି ମନ ଖରାପ କଲେ ରୋଗର କୋପ ବଢ଼ିବ । ସୁନା ଭଉଣୀଟି, ଚୁପ୍ ହୋଇ ଶୋଇପଡ଼, କୁନୁ ଇରୁଙ୍କର ଯତ୍ନ ମୁଁ ନେଉଛି, ତାଙ୍କ କଥା ତୁ ଭାବନା ।

ରମାର ମୁଣ୍ଡ ଆଉଁସି ଦେଉଣୁ, ସେ ଛୁଆଟିଏ ପରି କୁଣ୍ଟକରି ଶୋଇ ପଡ଼ିଥିଲା । ଅଭିମାନିନୀ, ସ୍ନେହରଙ୍କୁଣୀ, କରମାଖୀ ଗାଆଁ ଝିଅଟିଏ !

ଜୟଶ୍ରୀ ଭାବିଲେ, ରାତସାରା ରମା ଏକା ରହିଲା ? ହଳଧରବାବୁ ନିଜେ ପାଖରେ ରହିଲେ ନାହିଁ, କି ତାକୁ ଉଠାଇ ଦେଲେନାହିଁ । କେଡ଼େ ନିଶ୍ଚିନ୍ତ ମଣିଷ, ଆରାମରେ ଶୋଇ ସେ ଘୁଙ୍ଗୁଡ଼ି ମାରୁଛନ୍ତି । ଯେଉଁ ରମାକୁ ଘରଣୀ କରି ଆଣିବାକୁ ମନ ଆଗ୍ରହରେ ହମହମ ହୋଇ ପାଙ୍ଗଣାଙ୍କ ମନ୍ଦିରକୁ ଧାଇଁ ଯାଇଥିଲେ, ସେଇ ରମା ଇଏ; ମୋଫସଲିଆଣୀ ଝିଅ ବୋଲି ପସନ୍ଦ ନ ହେଲା, ସେ ତ ଭିନେ କଥା । ଝିଅ ଥିଲେ ପୁଅ ଥିଲେ କେତେ ଜାଗାରେ ସମ୍ବନ୍ଧ ପଡ଼େ, କେଉଁଠି କ'ଣ ଘଟେ, ବେଦିରୁ ବର

ବାନ୍ଧୁଡ଼େ । ସମସ୍ତେ ଘରସଂସାର କରନ୍ତି, ଆନନ୍ଦରେ ବେଳ କଟାଇବାକୁ ଚେଷ୍ଟା କରନ୍ତି ।

କେଉଁଠି କେବେ କାହାର ସମ୍ବନ୍ଧ ପଡ଼ିଥିଲା, କି କାରଣରୁ ଭାଙ୍ଗିଥିଲା, ଏସବୁ ଘଟଣା କେବେ କପଣ ମନେପଡ଼େ, ଭାବିବାକୁ କୌତୁକ ଲାଗେ । ହଳ-ଖୁସି ବେଳରେ ସ୍ୱାମୀ ଆଗରେ ସ୍ତ୍ରୀ, କି ସ୍ତ୍ରୀ ଆଗରେ ସ୍ୱାମୀକୁ ଫୁଲେଇ ହୋଇ କହିବାକୁ ମଜା ଲାଗେ । ନ ହେଲା ବର, ଅବା ନ ହେଲା କନିଆ ଉପରେ ରାଗଦ୍ୱେଷ, ଅଭିମାନ କି ଘୃଣା ଆସେ ନାହିଁ ।

କିଏ କେଉଁଠି ସୁଖ ଦୁଃଖର ସଂସାର କରେ ।

ଦରମୁକୁଳିତ ଆଲୋକର ଅଦେଖା ଅନନ୍ତ କଳିକା ପ୍ରସ୍ଫୁଟିତ ହୋଇ-ଆସିଲାଣି । କଅଁଳା କୁଳୁକୁଳିଆ ଉଚ୍ଛ୍ୱାସ ଉପାର ଦରଳ ମୁହଁରେ ଧୀରେ ଧୀରେ ପ୍ରତ୍ୟୁଷର ଉଷତ ହସ ବିକଶି ଉଠିଲାଣି । ଲୋଚନର ଗନ୍ଧପଣଧି ଆରପାଖରୁ ଅଜଣା ବିହଙ୍ଗଙ୍କର କାକଳି ଭାସି ଆସି କାନରେ ବାଜୁଛି । ପ୍ରକୋଷ୍ଠ ଭିତରେ ସଜ ଆଲୋକର ଲଜକଜ ଅବାଧ ପ୍ରବେଶ ।

ଏଥର ଦିବସ ବିକଶିଉଠିବ, ସକାଳ ହେବ, ତଥାପି ହଳଧରଙ୍କର ନିଦ ଭାଙ୍ଗିନି ନାହିଁ । କେତେ ସୁନ୍ଦର ମନସ୍ୱଳକା ଦିଶୁଛି ତାଙ୍କର ଭାବନାହୀନ ନିଶ୍ଚିନ୍ତ ନିଦ୍ରିତ ମୁହଁଟି ।

ଭାବିଲେ ଜୟଶ୍ରୀ, ଉଠାଇବ, ପଚାରିବ, କାହିଁକି ରମାକୁ ଅବହେଳା କଲ, ମୋତେ ଉଠାଇଲ ନାହିଁ, ଅବା ନିଜେ ତା ପାଖରେ ରହିଲ ନାହିଁ ? ମରଣଯାତ୍ରୀକୁ ଏକା ଛାଡ଼ିଦେଇ ଆସିଲ ? ସେ ତମର ଘୃଣାର ପାତ୍ର ନୁହେଁ, ଅନୁକମ୍ପାର ପାତ୍ର । ଜୟପୁରରେ ଆକସ୍ମିକ ଦେଖା । ଗ୍ଲାନି ମନର ଭିତରେ ଯେଉଁ ମୋଫସଲିଆଣୀ ଝିଅଟିକୁ ଦେଖି ଛି' କରି ଦୂରେଇ ଆସିଥିଲ, ସେ ଅନ୍ୟ ଜଣେ ରମା, ଇଏ ତମର ପତ୍ନୀର ବାନ୍ଧବୀ, ତମର ବନ୍ଧୁର ପତ୍ନୀ । ତମେ ଅତି ନିଷ୍ଠୁର ।

ଗ୍ରୀବତଳେ ଛପି ଛପି ପତ୍ନୀଙ୍କର ଅଳ୍ପମିତା ମୁଣ୍ଡଟେକ ଟିଲ୍‌ଟିଲ୍ ହସୁଛି, ଝୁଜୁବୁଜୁ ହେଉଛି, କହୁଛି ସତେକି, ମୋ'ର ସଂସାର ସୁନ୍ଦର ଓ ସୁଖର, ମୋ'ର ଦୋଷର ସୁଧାର ଓ ଉଦାର ।

ଶୋଇଲା ମୁହଁରେ ବୋକଟିଏ ଦେବାକୁ ଜୟଶ୍ରୀଙ୍କର ମନ ଉଚ୍ଛନ୍ନ ହେଲା, ମୁହଁ ନଇଁ ଆସିଲା, ପାଖେଇ ଆସିଲା ।

ହଳଧରଙ୍କର ଡାହାଣ କପାଳ ଉପରେ ଅସ୍ପଷ୍ଟ ସିନ୍ଦୁର ବିନ୍ଦୁ, ଲମ୍ବି ଯାଇଛି ଆହୁରି ଅସ୍ପଷ୍ଟ ଗାର ।

ଜୟଶ୍ରୀଙ୍କର ଆଖିରେ ବିସ୍ମୟ । ମୁହଁ ଗମ୍ଭୀର ହେଲା । ମନରେ ଅପନା ଭାବନାର ଢେଉ, ଉଠୁପଡ଼ି ଚାଲିଲା ଛାତି ଥରଥର ।

ସେ ମୁହଁ ଟେକି ଠିଆହେଲେ ।

ନାକପୁଡ଼ା ଥରାଇ କୋହ ଉଠିଲା । ମନର ନୟନ ଆଗରେ କେତେ ଦୃଶ୍ୟ ଭାସିଗଲା । ଦରମଲା ସାପପରି ଭାବନା ଛଟପଟ ହେବାକୁ ଲାଗିଲା— ଜଗନ୍ନାଥ ମନ୍ଦିର, ହଳଧରଙ୍କର ଥରକୁ ଥର ବାଙ୍କୁଲା ଚାହାଁଣୀ, ରାଜପଥରେ ଓଲଟଦୃଷ୍ଟି, ପରିହାସ କଥା, ରୋଗଣୀ ରମା ପାଇଁ ବ୍ୟାକୁଳତା, ତା ପାଖେ ପାଖେ ଉନ୍ନିଦ୍ର ରଜନୀ ।

ଏଇଥିପାଇଁ ସେ ଉଠାଇଲେ ନାହିଁ ? ମରଣଯାତ୍ରୀ ରମା କଅଣ ଏଇଆ ଚାହିଁଥିଲା ! ଶେଷ ମୁହୂର୍ତ୍ତରେ ନିଜଏ ସ୍ନେହ, ଗୋଟିଏ ଚୁମ୍ବନ । ପାଙ୍ଗଟା ମନ୍ଦିରରେ ଶୁଭଚକ୍ଷୁର ମିଳନ, ଥରକୁ ଥର । ମିଥ୍ୟାବାଦୀ, ପସନ୍ଦ ନ ହେଲା ବୋଲି ବାହାଘର ଭାଙ୍ଗି ନ ଥିଲି ପରା, ଦେଖଣ ନେଖଣର ସମାଧାନ ହେଲା ନାହିଁ ବୋଲି ପରସ୍ପରକୁ ଲୋଡ଼ିଲା ଜୀବନ ଦୂରେଇ ଗଲା ? ତଥାପି ମନ ଝୁରୁଛି । ଏଡ଼େ ଅକୃତଜ୍ଞ !

ଜୟଶ୍ରୀଙ୍କର ଦୁଇଆଖି ସଜଳ ହେଲା ।

ଆଲୁଅର ଶୁଭ୍ର ପାଖୁଡ଼ା ଖୋଲି ଖୋଲି ଆସୁଛି, ଜାଗରଣର ଢେଉ ମାଡ଼ିମାଡ଼ି ଆସୁଛି, [illegible]ଦର ପାରିବାରରେ ତରଙ୍ଗ ଉଠିଲାଣି ।

ଜୟଶ୍ରୀ ଅଳସ ହାତରେ କବାଟ ଆଉଜାଇଲେ । କାହାର ନିଦ ଭାଙ୍ଗିନାହିଁ । ଦୁଇ ଖେପାରେ ସୁକାନ୍ତ ବାବୁଙ୍କର ଘର ବାରଣ୍ଡାରେ ଠିଆ-ହେଲେ । କେଶବାସ ଉଲୁରି ପଡ଼ୁଛି ।

କବାଟରେ ହାତ ମାରି ଡାକଲେ, ରଙ୍ଗିଆ, ରଙ୍ଗିଆ—

ରମାର ଘାଡ଼ଲ ନିଦ ଭାଙ୍ଗିଲା । ଆଖି ଖୋଲି ହେଉ ନାହିଁ । ଦେହ ଦୁର୍ବଳ ଲାଗୁଛି । ଗୁଡ଼ ଥରୁଛି ।

କିଏ ଡାକୁଛି ?

ରମା ଆଖି ଖୋଲିଲା । ଘର ଭିତରେ ବାହାରର ଶୀତଳ ଆଲୁଅ ପଶିଆସିଲାଣି ।

କିଏ ଡାକୁଛି, ଜୟଶ୍ରୀ ?

କିଏ କବାଟ ଖୋଲିଲା । ଜୟଶ୍ରୀ କଅଣ ପଚାରୁଛନ୍ତି । ରଙ୍ଗିଆ ଉତ୍ତର ଦେଉଛି, ଡାକ୍ତରବାବୁ, କି ତାଙ୍କ ଘର ମା ଆସିନାହାନ୍ତି, ଆମ ମାଆଙ୍କୁ ମୁନସଫ୍‌ବାବୁ ଔଷଧ ଖୋଇଲେ, କେତେ ଘଡ଼ିରେ ଗଲେ, ନିଶା ଗଲ୍ଲିଆଏ, ମାଆଙ୍କର ନିଦ ଅଉ ଭାଙ୍ଗି ନାହିଁ, ଆପଣଙ୍କୁ ଉଠାଇବାକୁ କେହି ଯାଇନାହିଁ ।

ମତେ କାଲିନିଦ ଘୋଟିଗଲାଟର ରଙ୍ଗିଆ !

ଜୟଶ୍ରୀ ଗୃହ ନ ପାଡୁଣୁ ଆସି ପହଞ୍ଚିଲେଣି । ସେ ଉତ୍ତମ ଲୋକ । ପର ଆପଣା ଭେଦ ଜ୍ଞାନ ତାଙ୍କର ନାହିଁ । ପିଲା ଦୁଇଟିଙ୍କୁ ନଜର କରିଛନ୍ତି । ସେମାନଙ୍କର ନିଦ ଭାଙ୍ଗି ନ ଥିବ । ହଳଧର ବାବୁଙ୍କ କୋଳରେ ଶୋଇଦେଇ ସେ ଆସିଥିବେ । ରୁଅରଙ୍କୁଣୀ ସେ ହେଲେଣି । ଏଥର ଷଠୀର ମନ ତରଳିବ । କଅଁଳା ପିଲା ଦକଟେ ସେ ଜୟଶ୍ରୀଙ୍କ କୋଳରେ ଦେବ । ପର-ପିଲାଙ୍କୁ ଯେ ମୋର କରେ, ଷଠୀଦୁହେଇଁ ତାକୁ ଦୟା କରେ, ଘାଟେକରି ପୁଅଝିଅ ଦିଏ । ଜୟଶ୍ରୀ ଜନନୀ ହେବେ ।

ହେଉ,ଆ କର ମା ଜଗଜ୍ଜନନୀ, ତମେ ତ ଷଠୀଦୁହେଇଁ ।

ରମା ଝଟି ପଲଙ୍କ ଉରେ ବସିଲା । ଜୟଶ୍ରୀ ଘରେ ପଶିଲେ । ମଶାରିର ଗୋଟିଏ ଧାର ଉଠାଇ ମଶାରି ଉପରେ ରଖିଲେ । ଆଖିରେ ତାଙ୍କର ଅବାଧ ଲେତକ ଢଳଢ଼ଳ ହେଉଛି, ଅକୁହା ଈର୍ଷାର ଘୂର୍ଣ୍ଣିବାତ୍ୟ କେତେ ଚ୍ଛୋଟବଡ଼ ଭାବନାର ଅବର୍ଜନା ଯେକି ମନମଇଦାନରେ ଟେକାଭଉଁରି ଖେଳାଉଛି ।

ଅପା !

ରମା ଡାକୁଛି, ଶୁଣି ସେଇ ନୂଆ ଡାକ । ଜୟଶ୍ରୀଙ୍କର ଛଳଛଳ ଆଖି ଆଗରେ ଦଉଡ଼ିଯାଉଛି ସୌଗଣୀ ରମାର ଫୁଲିଲ ମୁହଁ, ଅଲଗ୍ନ କେଶ, ଦରଫୁଙ୍ଗୁଲା ଦେହରେ ଦରମଇଲା ବାସ । ଆଖିରେ ତା'ର କଜଳ ନାହିଁ, ମଥାରେ ବାସି ସିନ୍ଦୂରଗାର, କିନ୍ତୁ କପାଳରେ ସେ ସିନ୍ଦୂରବିନ୍ଦୁ ନାହିଁ । ସକସକାଳର ପବିତ୍ର, ନିର୍ମଳ, ଶୀତଳ, କଅଁଳ ଆଲୁଅ ପରି ଝଟକ ଉଠୁଛି ରମାର ଓଠ ଦଫାଳରେ ଟିକିଏ ହସ । ତା'ର ଆଖି ଜୟଶ୍ରୀଙ୍କର କପାଳ ଉପରେ ଖେଳୁଛି ।

ଜୟଶ୍ରୀ ଚୁହିଁରହିଲେ । ମନର ଘୂର୍ଣ୍ଣିବାୟୁ ମଥା ନୋଇଁ ଆସିଲା, ଚନ୍ଦ୍ରାର ଆବର୍ଜନା ଦୂରକୁ ଫିଙ୍ଗି ହୋଇ ପଡ଼ିଲା । କାନ୍ଥ ଅଡ଼କୁ କଣେଇଁ ଚାହିଁଲେ । କଣ୍ଟାରେ ଟଙ୍ଗାହୋଇଛି ବଡ଼ ଆଇନା, ବଙ୍କେଇଛି, ତହିଁରେ ତାଙ୍କର ମୁହଁ ପ୍ରତିଫଳିତ ହୋଇଛି । ମଥାରେ ସିନ୍ଦୂରଟୋପାରୁ ଲମ୍ବି-ଯାଇଛି ଅସ୍ପଷ୍ଟ ସିନ୍ଦୂରଗାର ।

ଯେଉଁ ମୁହଁଟି ଆଖିରେ ପଡ଼ିଲା, ସେଇଟି ସତେକି ଜୟଶ୍ରୀଙ୍କର ନୁହେଁ, ହଲଧରଙ୍କର !

ସେହିପରି ସେ ଆଉ, ପୋଛିବାକୁ ସେ ହାତ ବଢ଼ାଇବେ ନାହିଁ । ପତ୍ନୀତ୍ୱର ବଜୟକେତନ, ସବୁ ପତ୍ନୀଙ୍କ ଅବଗତ !

ରମା ହସୁଛି । ହସ ନୁହେଁ ଅଭିନନ୍ଦନର ପୁଷ୍ପବୃଷ୍ଟି, ପତ୍ନୀତ୍ୱର ଅଧିମିକାର ଅର୍ଚ୍ଚନା !

କେଡ଼େ ଆବିଲ; କେଡ଼େ ଦୁର୍ବଳ ମୋର ମନ । ସନ୍ଦେହର ମୃଗତୃଷ୍ଣା କାହିଁକି ମୋର ଭାବନାରେ ଭେଳିକି ଲଗାଇଲା ? ନିଜ କଳୁଷିତ ସନ୍ଦେହର ପ୍ରତିବିମ୍ବ ସେ ଦେଖିଲା । କାହା ପାଖରୁ ସେ ଆଜି କ୍ଷମା ଚାହିଁବେ ।

କଅଣ ଦେଖୁଚ ଅପା ?

ତୋତେ ଦେଖୁଛି ରମା, ତୋର ଅଲୁଣବାଲୁଗ୍ଣ ଜନମାପଣିଆଁ । ତୋର ମଇଳା, ଅସନା, ଘେଗଣା ରୂପତଳେ କେଡ଼େ ବିମଳ, ସୁନ୍ଦର, ମନମୋହନ ଶୁଭ୍ରସୁବର୍ଣ୍ଣ ଅଭଙ୍ଗ ଝଟକଳ ରୂପ । ଅପା ବୋଲି ଡାକିଲୁ ପରା, ବଡ଼ଭଉଣୀର ସମ୍ମାନ ଦେଲୁ—

ବାକ୍ୟ ସରିଲା ନାହିଁ । ଜୟଶ୍ରୀ ରମା ପାଖରେ ବସିଲେ, ରମାର ହାତ ଧରିଲେ । ଦେହରେ ଜର ନାହିଁ । ମୁହଁର ଫୁଲ କମିଆସିଲାଣି । ରମା ଭଲହୋଇ ଉଠୁଛି । ସେ ଭଲ ହୋଇଯିବ । ସୁକାନ୍ତ ଗସ୍ତରୁ ଫେରି ଦେଖିବ କଅଣ ଏଇ ଅଲୁଣବାଲୁଗ୍ଣକୁ ।

ଜୟଶ୍ରୀ ରମାର ଅଲଗ୍ଣ କେଶରେ ହାତ ସାଉଁଳିଲେ ।

ତମ ଆଖିରେ ଲୁହ କାହିଁକି ଅପା ?

କହି ପାରିବି ନାହିଁ । ମୋତେ ତୁ କ୍ଷମା କରିବୁ ରମା ?

କାହିଁକି ଅପା ? ପିଲା ଦଉଡ଼ିକୁ ଗୁଡ଼ରେ ଧକାଇ ତମେ ଶୋଇ-ପଡ଼ିଥିଲ, ସେମାନେ ଉଠି କଣ୍ଡାଳ କରିବେ ବୋଲି ତୁମକୁ ନ ଉଠାଇ ହଲଧରବାବୁ ନିଜେ ଆସି ଜଗିରହିଥିଲେ, ଔଷଧ ଦେଲେ, ଶୋଇ ପଡ଼ିବାକୁ ମୋତେ ଆଜ୍ଞି କହିଲେ । ସେ ଅଧରାତ ପରେ ଚାଲିଗଲେ । ତମେ ଶୋଇ ପଡ଼ିଲ, ଅସି ପାରିଲ ନାହିଁ ବୋଲି ମୋ ପାଖରେ କ୍ଷମା ନ ମାଗି, ତମ ହଲଧରଙ୍କ ପାଖରେ କ୍ଷମା ମାଗ ।

ସେଇଆ କରିବି । ତୁ ଏତେ ହସୁଛୁ କାହିଁକି ?

ତମେ ଅନିଦ୍ରା ଥିଲ କି, ତମ ମୁହଁ ତ ସେଇଆ କହୁଛି ?

ଜୟଶ୍ରୀଙ୍କର କପାଳ ଉପରେ ରମାର ଆଖି ।

ଦୁଷ୍ଟ !

କାଲି, ମିଲି ଓ ବେବୀ ପ୍ରସ୍ତୁତ ହେଲେଣି । ଶୋମତୀ ନିଜେ ପ୍ରାତଃକୃତ୍ୟ ସମାପନ କଲେଣି । ସକାଳ ସୂର୍ଯ୍ୟର ଆଲୋକ ଘରବାହାରେ ଡେଉ ଖେଳିଲାଣି ।

ଡାକ୍ତରଙ୍କର ନିଦ ଭାଙ୍ଗି ନାହିଁ । ରମାକୁ ଥରେ ଦେଖିଆସିବାକୁ ଗୋମତୀଙ୍କ ମନ ଉଚ୍ଛନ୍ନ ହେଉଛି । ଦିନରେ ସେ, ବା ଡାକ୍ତର କେହି ଯାଇ ପାରିନଥିଲେ ।

ଅମର ବାବୁଙ୍କର ଆଉ ଗୋଟିଏ ପୁଅ ହୋଇଛି, ହେଲେ କାଠଫଳରୁ ଗୋଟିଏ । ଝିଅଟିଏ ପାଇଁ ଇନ୍ଦିରା କେଡ଼େ ବ୍ୟାକୁଳ ହେଉଥିଲେ, ଦେବଦେବୀଙ୍କ ପାଖରେ ମାନସିକ କରିଥିଲେ, ତାଙ୍କର ମନକାମନା ପୂର୍ଣ୍ଣ ହେଲନାହିଁ । ସେ ଏବେ ଚାରିପୁଅର ମା ।

ରାତଯାକ ଡାକ୍ତର ଅମରବାବୁଙ୍କ ଘରେ ଜଗି ବସିଥିଲେ । ଲେଡ଼ି-ଡାକ୍ତର ଛୁଟିରୁ ଫେରି ନାହାନ୍ତି । ଶୁଣାଯାଉଛି, ଶୀଘ୍ର ତାଙ୍କର ଶୁଭପରିଣୟ ହେବ । ସେ ଆଉଥରେ ଛୁଟି ବଢ଼ାଇବେ, ସରକାରୀ ଚାକିରିରୁ ଇସ୍ତଫା ଦେଇ ଘରକରଣା କରିବାକୁ ଯିବେ । ବର୍ଷବର୍ଷ ଲାଗି, ଅଗାଧ ପରିଶ୍ରମ କରି, ସହସ୍ର ସହସ୍ର ଟଙ୍କା ଖର୍ଚ୍ଚ କରି ଯେଉଁ ବିଦ୍ୟା ଓ ଦକ୍ଷତା ସେ ଅର୍ଜନ କରିଥିଲେ, ସେଥିରେ ଜଳାଞ୍ଜଳି ଦେବେ । ଗୋଟିଏ ହାତରେ ଛଞ୍ଚୁଣୀ ଓ ଆର ହାତରେ ଡଙ୍କା ଧରିବେ । ପୁରୁଣା ବିଦ୍ୟାକୁ ଭୁଲି, ନୂଆ ବିଦ୍ୟା ଶିଖିବେ ।

ବୈଜ୍ଞାନିକ ଯନ୍ତ୍ରପାତି ଲୋଡ଼ା ହେବନାହିଁ । ଡିପ୍ଲୋମା ସଙ୍ଗେ ସେଗୁଡ଼ିକ ସାଇତା ହୋଇ ରହିବ, କାଳକ୍ରମେ କଳଙ୍କ ଲାଗିବ । ମୋଟା ମୋଟା ବହି-ଗୁଡ଼ିକ ପୋକ କାଟିବେ । ସେ ହେବେ ଜଣେ ଅଫିସରଙ୍କ ଘରଣୀ, ମିସ୍ ବେହେରା ହେବେ ମିସେସ୍ ରାଓ ।

ଡାକ୍ତର କହିଲେ ରାତରେ, ସେ ସୁଖରେ ରହନ୍ତୁ ଗୋମତୀ, ଏଗାରଟି ପୁଅ ଓ ସତରଟି କନ୍ୟାଙ୍କର ଜନନୀ ହେଉନ୍ତୁ । ନିଜ ଘରେ ଷ୍ଟେଟ ହସ୍ପିଟାଲ ଖୋଲି ବୁଲିଯାଉଥିବା ଡାକ୍ତରୀ ଶିକ୍ଷାର୍ଥୀଙ୍କରୁ ପଦେଅଧେ ଉଦ୍‌ଗାର ଆତ୍ମ-ସନ୍ତୋଷ ଲାଭ କରନ୍ତୁ ।

ମୋତେ ସେ ଅତି ଅସୁବିଧାରେ ପକାଇ ଗଲେ, ଗୋମତୀ, ଇନ୍ଦିରାଦେବୀ ଦୁର୍ବଳ ହୋଇଛନ୍ତି । ତାଙ୍କର ପେଟଭିତରେ ପିଲାଟି ସ୍ଥାନଚ୍ୟୁତ ହୋଇଛି ।

ନର୍ସ ନରି ବସିଥିଲେ ମଧ୍ୟ ମୋତେ ରହିବାକୁ ପଡବ । ଅମରବାବୁ ଆଶଙ୍କାରେ ଛଟପଟ ହେଉଛନ୍ତି ।

ଗୋମତୀ କହିଲେ, ତମେ ଅନିଦ୍ରା ରହି ପଛକେ ଇନ୍ଦର୍ଵିକୁ ବଞ୍ଚାଅ । ରମାଙ୍କୁ ଥରେ ଦେଖି ଆସିବ ନାହିଁ ?

ମୁଁ ଯେଉଁ ଔଷଧ ଦେଇଆସିଛି ତାକୁ ଖାଇଲେ ରମାଦେବୀ ଶାନ୍ତରେ ଶୋଇପଡ଼ିବେ । ସେ ସୁସ୍ଥ ହୋଇଯିବେ । ହଲଧରବାବୁ ଲୋକ ପଠାଇଲେ, ତାକୁ ମୋ ପାଖକୁ ଅମରବାବୁଙ୍କ ଘରକୁ ପଠାଇ ଦେବ । ଆବଶ୍ୟକ ମଣିଲେ ମୁଁ ସେଇଠାରୁ ରମାଦେବୀଙ୍କୁ ଦେଖିବାକୁ ଯିବ ।

ରାତି ପାହାନ୍ତ ନଟବରବାବୁ ଅମରବାବୁଙ୍କ ଘରୁ ଫେରିଲେ । ଗୋମତୀ ଉଠି ବସିଥିଲେ । ଡାକ୍ତର ଖୁସି ହୋଇ ସମ୍ବାଦ ଦେଲେ ଯେ ଇନ୍ଦର୍ଵିଙ୍କର ପୁଅ ହୋଇଛି, ମା ଓ ପୁଅ ଭଲ ଅଛନ୍ତି, ଝିଅ ନ ହୋଇ ପୁଅ ହେଲା ବୋଲି ଇନ୍ଦର୍ଵି ମୁହଁ ଶୁଖାଇଛନ୍ତି, କିନ୍ତୁ ଅମରବାବୁ ଭାରି ଖୁସି ଅଛନ୍ତି । ଭବିଷ୍ୟତରେ ତାଙ୍କୁ ଯୌତୁକ ଦେବାକୁ ପଡ଼ିବ ନାହିଁ, ସେଇଥି ସେ ଖୁସିହୁଉଛନ୍ତି । ପୁଅର ବାପ ସେ, ଯୌତୁକ ଧନ ତାଙ୍କର ପ୍ରାପ୍ୟ । ପୁଅଗୁଡ଼ିକ ମଣିଷ ହେଲେ ନିଲମ-ଡାକର ସୁବିଧା ସୁଯୋଗ ତାଙ୍କୁ ମିଳିବ ।

ଗୋମତୀଙ୍କର ନିଦ ମଳମଳ ଆଖିରେ ହସିଲା ସନ୍ଦେହ । ଡାକ୍ତର ପ୍ରକାରାନ୍ତରେ ତାଙ୍କୁ ତିରସ୍କାର କରୁଛନ୍ତି, କହୁଛନ୍ତି ତିନୋଟି ଝିଅ ସଂସାରକୁ ଆଣିଲ, ତହିଁରୁ ଗୋଟିକୁ ପୁଅ କରି ଗଢ଼ି ପାରିଲ ନାହିଁ ? ହେଉ, ଭବିଷ୍ୟତରେ ଯୌତୁକ ଦେବାକୁ ଧନ ସଞ୍ଚି ରଖିଥାଅ, ବେପରବା ଓ ମୁକ୍ତହସ୍ତ ହୋଇ ଖରଚ କରନାହିଁ । ଝିଅ ବାହାଘରର ନିଲମଡାକ କେତେ ଉପରକୁ ଚଢ଼ିବ କେହି ଜାଣନ୍ତି ନାହିଁ । ସାବଧାନ !

ଲିଲି, ମିଲି ଓ ବେବୀ ପଲଙ୍କ ଉପରେ ନିଶ୍ଚିନ୍ତରେ ଶୋଇଛନ୍ତି ।

ଗୋମତୀ କଣେଇଁ ଚାହିଁଲେ । ପୁଅ ହେଉ, କି ଝିଅ ହେଉ ବୋଲି ସେ କେବେ କେଉଁ ଦେବଦେବୀଙ୍କ ପାଖରେ ପ୍ରାର୍ଥନା କରି ନାହାନ୍ତି, ଡାକ୍ତରବାବୁ

ନଦୋଡ଼ି ଗ୍ରୁଡ଼ ବାଗ୍‌ଦେବୀ ତୀର୍ଥରେ ଦେଉଳ କଟାଇବାକୁ ପଣ କରି ନାହାନ୍ତି । ପେଟ ଭିତରେ ଛୁଆ ବୁଲିଲେ ମନ ତା ଆରି ପାଖେ ପାଖେ ବୁଲେ । ଉଆଁସୀ ଅନ୍ଧାର ଭିତରେ ଦେଖିବାକୁ ଚାହେଁ, ପୁଅ କି ଝିଅ ।

ଲିଲି, ମିଲି, ବେବୀଙ୍କୁ ମୁଁ ପୁଅମାନଙ୍କଠାରୁ ବଳି ଆହୁରି ବଡ଼ ମଣିଷ କରି ଗଢ଼ିବି, ତମେ ଦେଖିବ ରହ । ତାଙ୍କୁ ବୋହୂ କରିବାକୁ କେତେ ବଡ଼-ବଡ଼ିଆ ବାପ ଆସି ମୋ ଦୁଆରେ ଧାରଣା ଦେବେ । ମୋ ଲିଲି ହେବ ହଲଧରବାବୁଙ୍କଠାରୁ ବଡ଼ ଜଜ୍, ମିଲି ହେବ ସୁକାନ୍ତବାବୁଙ୍କଠାରୁ ବଡ଼ ଇଞ୍ଜିନିଅର, ଆଉ ବେବୀ ଡାକ୍ତରାଣୀ ହୋଇ ତମୁକୁ ବୁଝି ବତେଇବ । ଘଡ଼ି ପାହାନ୍ତାକୁ ଫେରିଲ, ଟିକିଏ ଶୋଇପଡ଼ ଆଗ ।

ଡାକ୍ତର ମୃଦୁ ହସି କହିଲେ, ତମେ ତିନୋଟି ଝିଅଙ୍କର ଭବିଷ୍ୟତର ଛବି ମୋ ଆଗରେ ଆଙ୍କିଲ, ତମ ମନକାମନା ପୂରଣ କରିବାକୁ ମୁଁ ସାହାଯ୍ୟ କରିବି, କିନ୍ତୁ ଆଉ ଯେଉଁ ଦୁଇଟି ଝିଅଙ୍କୁ ମୁଁ ସପନ ଦେଖୁଛ, ସେମାନେ ଆସିଲେ ତାଙ୍କୁ କଅଣ କରି ଗଢ଼ିବ ?

ଅଲଜୁକ, ଆଗ ସେମାନେ ଆସନ୍ତୁ, ସେଇଠୁ ମୁଁ କହିବ । ତମେ ବିଶ୍ରାମ ନିଅ ।

ଡାକ୍ତର ପ୍ରୀତିପୂର୍ଣ୍ଣ ଆଖିରେ ଗୋମତୀଙ୍କର ହସହସ ମୁହଁକୁ ଚାହିଁଲେ । ଗୋମତୀଙ୍କର ହାତ ଧରି ଗେହ୍ଲେଇ କହିଲେ, ସେମାନେ ନିଶ୍ଚୟ ଆସିବେ, ବେବୀ ତଳେ ରୁବୀ, ତା ତଳେ ହବୀ—

ଖରା ପଡ଼ିଲାଣି । ଡାକ୍ତରଙ୍କ ନିଦ ଭାଙ୍ଗି ନାହିଁ ।

କୁନି ଓ ଇତିଙ୍କୁ ସଙ୍ଗରେ ନେଇ ସୁକାନ୍ତବାବୁଙ୍କର ଘରର ରଙ୍ଗିଆ ପ୍ରା ଉପରେ ଆସୁଛି । ତା'ର ଚାଲିରୁ ଜଣାଯାଉଛି ଉଦ୍‌ବିଗ୍ନତାର କାରଣ ନାହିଁ, ରମା ଭଲ ହୋଇ ଅସୁଛି । ବେଳାଣି, ଡାକ୍ତରବାବୁଙ୍କୁ ଡାକିବାକୁ ଅସୁନାହିଁ ତ ? ଯିବାକୁ କହି ଆସିଥିଲେ, ଯାଇପାରିଲେ ନାହିଁ । ଅଭିମାନିନୀ ରମା ଭୁଲ ବୁଝିବ ନାହିଁ ତ ?

ଦାଣ୍ଡ ଅଗଣାରେ ଗୋମସ୍ତା ଚେଙ୍ଗିଅଙ୍କୁ ଅପେକ୍ଷା କରି ରହିଲେ । କୁନୁ ଧାଇଁ ଧାଇଁ ଆସୁଛି । ତାଙ୍କୁ ଦେଖି ଲଲି ଓ ମିଲି ଗୁମ୍ଫାଆଡ଼କୁ ଛୁଟି ଯାଉଛନ୍ତି । ଦେଖା ଯିବାକୁ ଉଛନ୍ନ ହେଲଣି । ଗୋମସ୍ତା ତାର ହାତ ଧରି ଅଟକାଇ ରଖିଛନ୍ତି ।

କୁନୁକୁ କୋଉଁ କରିବେ, ଦେଖା ହେବ ସୁକାନ୍ତବାବୁଙ୍କର ବୋହୂ । ଏ ସବୁ ଦୂରର କଥା, ରମାକୁ ଛଳେଇ କହିବା ଯାଉ—ମୋ ବରକୁ ତୁ ବାହା ହେଲୁ, ତୋ ବରକୁ ଯଦି ସମୁଦ ନକରେ ତ ତୁ ମୋ ନାମ ଧରିବୁ ନାହିଁ ।

ହସ ହସ ରମାର ଥରି ଥରି କଥା ଶୁଭଯାଉଛି, ହିଁ ମୋର ଦେଖରେ ସ୍ୱାନ, ଏବଠୁ ମୋ ଲଙ୍ଗଳୀ ବୋହୂକୁ ମତେ ଦେଇଦିଅ । ତୁଳସୀପତ୍ର ପାନ୍ତ । ଯିଏ ତମୁକୁ ହାଇଦେବ ଡାକ, ଯାଉଁଣୁ ଆସୁଣୁ ବାଛୁଥାଅନ୍ତେ, ସେ ତମର ସମୁଦ ହେବେ, ମାନ ମହତ ରଖି କଥା କହିବେ, ଧନ୍ୟ ଧନ୍ୟ ପ୍ରଶଂସା କରି ଗୁଣ ଗାଇବେ, ମୁଁ ବି ତମ ନାମ ନଧରି ସମୁଦୁଣୀ ବୋଲି ଡାକିବି ।

ସୁକାନ୍ତବାବୁ କଅଣ ସତରେ ଅଁଇଗୁଣିଆ ଲୋକ ?

ନାହିଁ ନାହିଁ, ସବୁ ଗେରସ୍ତଙ୍କ ପରି ସେ ଟିକିଏ ଖୁଣ୍ଡଖାଲବ ଲଗାନ୍ତି । ଘରଣୀମାନଙ୍କର ହସିଲି ମୁହଁକୁ ଗମ୍ଭୀର କରିବା, କାନ୍ଦୁରି କରିବା, ଆଖିରୁ ଲୁହଧାର ଗଡ଼ାଇବାକୁ ବେଳେ ବେଳେ ଗେରସ୍ତମାନଙ୍କର ଆଗ୍ରହ ହୁଏ । ଆଖିରୁ ଧାର ଲୁହ ନ ଝରିଲେ ପରଘରୀ ଝିଅର ବାପ, ମା, ଭାଇ, ଭଉଣୀ ଓ ସେମାନଙ୍କର ସ୍ନେହଶ୍ରଦ୍ଧା ମନେପଡ଼େନାହିଁ । ସରଳମନା ରମାଟି, ମୁହଁ ଖୋଲି କହିଦିଏ, ଆଉମାନଙ୍କର ଅଭିମାନ ପେଟ ଭିତରେ କୁହୁଳୁଥାଏ ।

ରଙ୍ଗିଆ ଆସି ପହଞ୍ଚିଲଣି । ପିଲି ଦିଓଟିଙ୍କୁ ଗାଧୋଇ ପାଧୋଇ ଭଲ ଜାମା ପିନ୍ଧାଇ ବୁଲାଇ ପଠାଇଛି ରମା ? ସୁକାନ୍ତବାବୁ ଅଧବାଟରେ ଫେରି ଆସିଲେ ? ଭଙ୍ଗିକାଅର ଲୋକ, ବେଳକାଳ, ଖଦ୍ୱବର୍ଷା, ଆପଦବିପଦ ମାନନ୍ତି ନାହିଁ ।

ରମା କହେ; ତାଙ୍କ କଥା କ'ଣ କହିବି ଲୋ ଭଉଣୀ, ପାଠୁଆ ହୁଣ୍ଡାଙ୍କୁ ବାଆବତାସ ନାହିଁ । ବସିଲାଠୁ ଉଠି ପଳାନ୍ତି । କେବେ ଫେରିବେ କେହି ଜାଣନ୍ତି ନାହିଁ । ତରତର ପଦେ କହିଲେ, ଫାଉଁ କରି ଉଠନ୍ତି । ଏ ସବୁ ମୋର ଦେହସହା ହେଲାଣି ।

କୁନୁ ଧାଇଁ ଆସୁଛି ପାଖକୁ । ତାକୁ ଧରି କାଖ କରି ମୁହଁରେ ଚୋକ ଦେବାକୁ ଗୋମତୀ ବେଖୀର ହାତ ଛାଡ଼ି ଆଗେଇଗଲେ । କୁନୁକୁ ଟେକି ଛାତିରେ ଜାକିଲେ । ରଙ୍ଗିଆକୁ ପଚାରିଲେ, ତମ ମା କେମିତି ଅଛନ୍ତି ରେ, ସୁନାନ୍ଦବାବୁ ଗସ୍ତରୁ ଫେରିଲେ କି, ପିଲାଙ୍କୁ କଏ ଯତନ କରି ପଠାଇଛି ?

ରଙ୍ଗିଆ ତାଙ୍କର ଶେଷ ପ୍ରଶ୍ନର ଉତ୍ତର ଆଗ ଦେଲା, ଜଜ୍‌ସାହାବଙ୍କ ଘରର ମାଆ । ପିଲା ଦହେଁ ରାତିରେ ତାଙ୍କରି ଘରେ ଥିଲେ । ସେଇ ମା ଏବେ ଆମ ମାଆଙ୍କର ମୁଣ୍ଡ ବାନ୍ଧି ଦେଉଛନ୍ତି ।

ବନପଥରେ ଜିପ୍ ଗାଡ଼ି ଧାଇଁଛି ।

ଡ୍ରାଇଭର ପୁନାମ ସିଂ ଷ୍ଟିୟରିଂ ଧରି ସତର୍କତାର ସହିତ ଖାଲଢିପ କଟାଇ ଜଗିଜାଗିଆ, ବାଙ୍କବାଙ୍କିଆ, ଉଠାପଡ଼ା, ଆବଖାବଡ଼ା ରାସ୍ତାରେ ଗାଡ଼ି ଚଲାଇଛି । ତାର ମଦନଶା ମୁଦ ଛାଡ଼ନାହିଁ । ଆଖି ରଙ୍ଗିଲା ଦିଶୁଛି । ଗୁଣୁଗୁଣୁ ହୋଇ ଗୋଟିଏ ଗୀତର ଦି ଚାରିପଦ ଆବୃତ୍ତି କରୁଛି ।

ଛୋଟିଆ, ଦୁର୍ବଳ, ତିରିଶି ପଇଁତିରିଶ ବର୍ଷିଆ ଟୋକାଟିଏ ସେ ପୁନାମ ସିଂ, ତା'ର ମୁଣ୍ଡରେ ଲମ୍ବ କେଶ, ନାକ ତଳେ ଫ୍ରେଞ୍ଚକଟ କଳା ମିଚିମିଚି ନିଶ, ଗୋରା ଚୁଲ୍‌ବୁଲିଆ ମାଇଚ୍ଛ ମୁହଁକୁ ସୁନ୍ଦର ଦିଶୁଛି । ଆଖି ଲାଗିଛି ରାସ୍ତା ଉପରେ । ଭଲ ଡ୍ରାଇଭର ବୋଲି ଖ୍ୟାତି ଅଛି । ମଟରଗାଡ଼ିର ଯନ୍ତ୍ରପାତି ସମ୍ବନ୍ଧରେ ଧାରଣା ଅଛି । କ୍ଲିନର ପଦରୁ ସେ ଉଠିଛି । ମେକାନିକ୍ ହେବ ବୋଲି ଆଶା କଲାଣି । ଥିଲାଘରର ପୁଅ, ଖରଚ ପ୍ରତି ନିଘାନଜର ନାହିଁ ।

ଛୋଟବଡ଼ ଅରଣ୍ୟଘେରା ପାହାଡ଼ମାଳର କଡ଼େକଡ଼େ ରାସ୍ତା, ଅସଂଖ୍ୟ ଛୋଟବଡ଼ ନାଳ ଅତିକ୍ରମିଛି । କେତେ ନାଳ ଉପରେ କାଠପୋଲ, କେତେ

ନାଳ ଉପରେ ପୋଲ ନାହିଁ । କେତେ ସ୍ଥାନରେ ପୋଲ ଭାଙ୍ଗିଛି, ରାସ୍ତାକୁ ବୁଲାଇ ନିଆ ହୋଇଛି । ପୁରୁଣା ଗାଡ଼ିକୁ ପ୍ରନାମ ସିଂ ସତର୍କତାର ସହିତ ଚଳାଉଛି । ଗାଡ଼ିର ସବୁ ହୁଗୁଳା, ବ୍ୟାଟେରୀ କମଜୋର, କେଉଁଠି ଦଗା ଦେବ, ରଥ ଅଟକିବ, କିଏ କହିବ ? ଇଞ୍ଜିନ ଥରେ ବନ୍ଦ ହେଲେ, ତାକୁ ଷ୍ଟାର୍ଟ କରିବା କାଠିକର ପାଠ । ହେଲ୍‌ପ୍ ଧରୁନାହିଁ, ଠେଲି ଠେଲି ଷ୍ଟାର୍ଟ କରିବ'କୁ ପଡ଼ିବ ।

ସଢ଼ିସକାଳେ ସେମାନେ ବ୍ଲକନ୍‌ଗୁଡ଼ା ଛାଡ଼ିଥିଲେ, ସୁକାନ୍ତର ଦେହରେ ଅଳପ ତାତି ଥିଲା ।

ହରି ସିଅନ ସତର୍କ କରି କହିଥିଲା, ଖରା ପଡ଼ୁ ସିନା, ପାହାନ୍ତିଆ ପବନ ଜରୁଆ ଦେହରେ ଲାଗିଲେ ଜର ବଢ଼ିବ ଅଜ୍ଞା, ଦୁଇଘଣ୍ଟା ଡେରି କରି ଗଲେ ଆମର ଗୁଡ଼ାର ପିମ୍ପୁଡ଼ି ଖାଇଯିବେ ନାହିଁ ।

ସୁକାନ୍ତ ଅଳପ ହସି କହିଥିଲା, ମୋ ପାଇଁ ଚିନ୍ତା କରନାହିଁ, ସ୍ୱେଗ-ବାଇବର ମୁଁ ମାନେନାହିଁ । ତରିଲେ ସେମାନେ ଡରିଯିବେ, ମାଡ଼ି ବସିବେ । ବାହାରିପଡ଼ ।

ବଡ଼ ଲୋକଙ୍କ ଉତ୍ତର ନାହିଁ । ଟୋକାଟାକରା ଆଣ୍ଟୁଆ ଅଫିସରମାନେ ଚନ୍ଦ୍ରସୂର୍ଯ୍ୟ ମାନନ୍ତି ନାହିଁ । ବାରମ୍ବାର ଚେତିଲେ ମଧ୍ୟ ମନରେ ଚେତନା ପଶେ ନାହିଁ । ବୁଲରେ ବାବା ।

ଆଗ ସିଟ୍‌ରେ ଡ୍ରାଇଭର ପାଖରେ ସୁକାନ୍ତ ବସିଲା, ପଛ ସିଟ୍‌ରେ ହରି । ଦୁଇକଡ଼ରେ ବେଡ଼ିଂ, ସୁଟକେଶ୍, ଫାଇଲ ଓ ନକ୍ସା ବଡ଼ା ସର୍ଭେ କରିବାର ଯନ୍ତ୍ରପାତି, ରୋଷାଇବାସର ଉପକରଣ ଓ କାଠ ପେଡ଼ିରେ ରଖା ହୋଇଥିବା ବାସନକୁସନ ।

ବ୍ଲକନ୍‌ଗୁଡ଼ା ଅନେକ ଦୂରରେ ରହିଲାଣି । ସେମାନେ କୋଡ଼ିଏ ମାଇଲ ଆଗେଇ ଆସିଲେଣି । ବ୍ଲକନଗୁଡ଼ା ନାଳ, ଜଳଭଣ୍ଡାର, ଛାମମୁଣ୍ଡ ବଙ୍ଗଳା, କାନ୍ତିବତି ପ୍ରଭୃତି, ଓଭରସିଅର ଅମ୍ବିକାବାବୁ ଓ ଶୋଭାବତୀ ପ୍ରତ୍ୟକ୍ଷରୁ ପରୋକ୍ଷ

ହେଲେଣି । ତିନୋଟି ଦିନର କର୍ମ, ଶ୍ରମ, ଭାବନା, ଉଦ୍‌ବେଗ୍ନତା, ଉତ୍ତେଜନା, ରହସ୍ୟ, ଦ୍ୱନ୍ଦ୍ୱ ପ୍ରତ୍ୟକ୍ଷର ଉହାଡ଼ରେ, ପରୋକ୍ଷର ବିସ୍ତୀର୍ଣ୍ଣ ପ୍ରାନ୍ତରରେ ଅସ୍ପଷ୍ଟ ଓ ସ୍ୱପ୍ନିଳ ହେଲେଣି ।

ସେହି ସପନ ସମଷ୍ଟି ଭିତରେ ମନଗହନରେ କେତେ ଉପରକୁ ମଥା ଟେକୁଛି ସଫଳତାର ଆଲୋକସ୍ତମ୍ଭ ! ବାଲିନ୍‌ଗୁଡ଼ା ଜଳଭଣ୍ଡାର, ବାଲିନ୍‌ଗୁଡ଼ା ନାଳରେ ପ୍ରବାହିତ କଳକଳ ଜଳର ହସହସ ଫେନିଳ ପ୍ରବାହ, ସାଫଲ୍ୟର ଶୁଭ୍ର, ଶୀତଳ, ଶୋଭନ ଆଲୋକରେ ଝଟକି ଉଠୁଛି ।

ଜଳ ମାଡ଼ୁଛି । ଦିଶିଯାଉଛି, ଭବିଷ୍ୟତର ମୋହନ ରୂପ, ଶସ୍ୟଶ୍ୟାମଳ ଦଗହଜା କେଦାର । ଦିଶିଯାଉଛି, ଆଶାୟୀ ନରନାରୀଙ୍କର ହସିଲା ମୁହଁ, ନାଚିଲା ଚାଲି । କାନରେ ବାଜୁଛି, ସେମାନଙ୍କର ମନପୁଲକା ଲହଡିଆ ଗୀତ, ବାଦ୍ୟର ତାଳେ ତାଳେ ତେଉତେଉକା ।

ସୂର୍ଯ୍ୟ କେତେବେଳୁ ଉଠିଲେଣି ।

ପାହାଡ଼ମାଳର ସବୁଜ ସାଗର ସେପାଖେ ସେ ଛପି ରହିଛନ୍ତି । ମ'ଳୁଆ କାଳିଆ ଓ ଫଳକାଳିଆ ବାଦଲ ଆକାଶ ଛାତରେ ପାଲ ଟାଣି ଭାସିଯାଉଛନ୍ତି । ପବନ ହେଲାଣି ଶୀତୁଳିଆ । ଦୂର ପରବତର ମଥାମାଳ ଧୂଆଁଳିଆ ଦିଶୁଛି । ବାଦଲ ତଳକୁ ନଇଁଛି । ବରଷା ହେଉଛି । ବିଷ ଚହଟିଲା ପରି ସେ ମାଡ଼ି ଆସିବ କି ? ବରଷା ଛୁଟୁ, ଭାବନା ନାହିଁ । ବାଲିନଗୁଡ଼ା ନାଳର ଫୁକାର-ଗୁଡ଼ିକ ଅଧା ଖୋଲା ହୋଇଛି । ଅଧିକ ପାଣି ଆସିଲେ ଅମ୍ବିକାବାବୁ ସେଗୁଡ଼ିକ ଆହୁରି ଖୋଲିଦେବେ । ସେପାଖ ନାଳର କବାଟ ବନ୍ଦ କରିଦେବେ । ଝଲ୍ଲସୀ ନାଳରେ ପାଣି ଛୁଟିବ । ଭୟ ନାହିଁ ।

ଗାଡ଼ି ଉଠାଣି ବାଟରେ ଅଟକି ଯାଉଛି । ଠେଲି ଠେଲି ଷ୍ଟାର୍ଟ କରିବାକୁ ସମୟ ଲାଗୁଛି । ସୁଜାନ୍ତ ଓ ହରି ଗାଡ଼ିକୁ ଆଗକୁ କି ପଛକୁ ଠେଲି କ୍ଳାନ୍ତ ହୋଇପଡ଼ିଲେଣି । ଡ୍ରାଇଭର ସୁନାମ ସିଂ ବାରମ୍ବାର ବନେଟ୍ ଖୋଲି ହଜାଡ଼ିବାକୁ ଚେଷ୍ଟା କରୁଛି । ମନେ ମନେ ସେ ହସୁଥିବ । ଡେରିକରି

ବାହାରିଥିଲେ ବାଟରେ ଗଲାଆଇଲା ଲୋକଙ୍କର ସାହାଯ୍ୟ ମିଳିଥାନ୍ତା, ଏବେ କାହାରି ଦେଖାଦର୍ଶନ ନାହିଁ ।

ଅଟକିଲା ଗାଡ଼ିକୁ ଦୁର୍ବଳ ଅଶାଧୁ ପିଅନ ଓ ଜରୁଆ ଅବାଧ ହାକିମଙ୍କୁ ଠେଲିବାକୁ ପଡ଼ୁଛି, ନୋହିଲେ ଅପେକ୍ଷା କରି ବସିବାକୁ ପଡ଼ନ୍ତା, କେଉଁବେଳେ ଗ୍ରାମଲୋକ ହାବୁଡ଼ିବେ, ଗାଡ଼ି ଠେଲିବେ, ଗାଡ଼ି ଚାଲିବ । ହାକିମଙ୍କର ରାଗ ମରିଛି । ଅତି ଦୁର୍ବଳ ଅଧାବାଇଆ ପରି ଦିଶିଲେ ମଧ୍ୟ ସେ କିଛି କହୁନାହାନ୍ତି । ତୁଣ୍ଡ ଖୋଲିଲେ କଥିଁଲ କଥା । ଜୟପୁର ପହଞ୍ଚିଲେ ତେଜ ବାହାରିବ । ଜଙ୍ଗଲିଆ ଘାଟିରାସ୍ତାରେ ଅଧେବାଟ ନ ଆସୁଣୁ ସାରଥିର ଅସମର୍ଥତା ପାଇଁ ତା ଉପରେ କୋପ କରିବାକୁ ଓ ଲାଲଆଖି ଦେଖାଇବାକୁ ମନରେ ଶଙ୍କା ଆସୁଛି ।

ବଠାଣିଆ ବାଙ୍କୁଲା ରାସ୍ତାରେ ଗାଡ଼ି ଧୀରେ ଧୀରେ ଚାଲିଛି । ବାଆଁ ହାତ ଖାଖ ଝଣ୍ଡୀ, ଡାହାଣହାତ ଗଭୀର ଉପତ୍ୟକା, ଷ୍ଟ୍ରେଟନାଲର ବୁଲାଣିଆ ଅବସ୍ଥିତ, ବାଘମାମୁଁର ବିହାରକ୍ଷେତ୍ର । ବଡ଼ ବଡ଼ ଚମ୍ପାଗଛର ବଣ । ଗଛଗୁଡ଼ିକର ଗଣ୍ଡିକୁ କୁଣ୍ଢାଇ ଧରିଲେ ହାତ ପାଇବ ନାହିଁ, ଉପତ୍ୟକାର ତଳୁ ଉଠି ରାସ୍ତାର ପଥର ଉପରକୁ ମୁଣ୍ଡ ଟେକିଛନ୍ତି । ହଳଦିଆ ଫୁଲ ପ୍ରତି ଗଛରେ ଖୁନ୍ଦି ହୋଇଛି । ଉତ୍କଟ ମହକରେ ଦିଗଦିଗ ଚହଟି ଉଠୁଛି, ବଣଦେବୀଙ୍କର କ୍ରୀଡ଼ାସ୍ଥଳୀ ।

ରମାର ଚମ୍ପାଫୁଲରେ ଶରଧା ।

ସୁକାନ୍ତର ଆଖିକୁ ଦିଶୁଛି, ସତେ କି ରମା ଆସୁଛି । ଧନର ଆଲୁଅ ଲିଭି ଲିଭି ଯାଉଛି ।

ରମା ଆଜି ଆଲୁଳିବାଳୁଣୀ ହୋଇନାହିଁ, ନିଜ ହାତରେ ନିଜକୁ ସଜାଇଛି, ଗଳାରେ ଗୁଡ଼ାଇଛି ଚମ୍ପାଫୁଲର ମାଳ । ଥରଥର ଲଜକୁଳ ଚାଲି । ଗୋଟିଏ ହାତରେ ଜଳଖିଆ ପ୍ଲେଟ, ଆର ହାତରେ ପାଣିଭରା କାଚଗ୍ଲାସ୍ ।

ରମା ମହକି ଉଠୁଛି । ହସହସ ସରମିଳା ମୁହଁ । ତାଙ୍କରି ଦୁଇପିଲାର ଜନନୀ ସେ । ସୁକାନ୍ତର ମୁହଁକୁ ସେ ଭଲକରି ଚାହୁଁ ନାହିଁ । ମଣୁଛି ସତେ କି ନିଜକୁ ସଜାଇବା ଲାଜର କଥା, ଗୋଟାଏ ଅପରାଧ ।

ଗୋମତୀ ଆସିଯିବେ ପରା, ପସ୍ତୁରବେ ହସହସ ହୋଇ, କଣେଇଁ କଣେଇଁ କୁହିଁ, ଆଜି କାହିଁକି ରଜ ସଜବାଜ ଗୋ ମଥୁରାରୁ ଫେରବେ କି ନଟନାଗର, ମୋ ସୁକାନ୍ତ ସୁନ୍ଦର ?

ରମାର ଥରଥର କଥା କାନରେ ବାଜୁଛୁ, ଏମିତି ସେ କହନ୍ତ ମ, ଏମିତି ଗୋମତୀ ତମକୁ ଉପହାସ କରନ୍ତ, ତମକୁ ସେ ଅତି ସ୍ନେହ କରନ୍ତ ଗୋ ।

ଆକାଶରେ କଳାଘୁମର ମେଘ, ସୂର୍ଯ୍ୟଙ୍କର ମୁହଁ ଲୁଚ୍ଛଇଛୁ । ପବନର ବେଗ ହୋଇଛୁ ପ୍ରବଳ । କୋରାପୁଟଅଞ୍ଚଳର ପାହାଡ଼ମାଳର ମଥାନମାନ ଧୂଆଁକିଆ ବାଦଲଜାଲରେ ଘୋଡ଼ାଇ ହେଲଣି ।

ବରଷା ହେବ । ମାଲୁଆ ମେଘ ଏମିତି ଅସ୍ତନକ ମାଡ଼ି ଅସେ, କୁଟି ଦେଇଯାଏ । ବର୍ଷାଋତୁର ଦିନ ଆସିଲଣି । ରଜ ସଂକ୍ରାନ୍ତ ପାଖେଇ ଆସିଲ, ମୋଟେ ଚଉଦଦିନ ଅଛୁ । ଧରଣୀ ଜନନୀ ରଜସ୍ୱଳା ହେବେ । ବର୍ଷା ଲଗି ରହିବ । ମେଘମାଳ ତଳକୁ ନଇଁ ଆସୁଛନ୍ତ ।

ଦିପହରର ଗଡ଼ିଗଲଣି ।

ଗୋମତୀ ଝରକାବାଟେ ଆକାଶକୁ ଗ୍ଚହିଁଲେ । ମନ ଦକଦକ । ତାଙ୍କର ତିନଝିଅଙ୍କୁ ସଙ୍ଗରେ ଧରି ଜୟଶ୍ରୀ ଇନ୍ଦିରାର ଟିକିପୁଅକୁ ଦେଖିବାକୁ ଯାଉଛନ୍ତ । କୁନୁ ଓ ଇରାଙ୍କୁ ମଧ୍ୟ ସଙ୍ଗରେ ନେଇଛନ୍ତ । ଦିଓଟି ରିକ୍ସାରେ ବସି ସେମାନେ ଗଲେ । ପାର୍ବତୀ ସଙ୍ଗରେ ଯାଇଛୁ । ଟିକିପୁଅଟିଏ ଦେଖିବାକୁ ବଡ଼ ପିଲମାନେ ହମହମ ହେଲେ । ଇରା ଜୟଶ୍ରୀଙ୍କର ଚୁକୋଲ ଗ୍ଛଡ଼ିଲ ନାହିଁ । ସେ ଆପେ ବେବୀକୁ ନେଇ ଗ୍ଛତିରେ ଜାକିଲେ ।

ଆଗରୁ ସେ ଆଗ୍ରହ ଜଣାଇ ଦେଲେଣି, କହିଲେଣି, ଏବର୍ଷ ଏ ଗ୍ଚରିଝିଅ ତାଙ୍କଘରେ ରଜ ପାଳିବେ, ସେ ତାଙ୍କୁ ସମ୍ଭାଳିବେ, ତାଙ୍କ ସଙ୍ଗେ ଖେଳିବେ । ସେମାନେ ତାଙ୍କୁ ଆଦର ଗଲେଣି । କେହି ନାହିଁ କରିବେ ନାହିଁ । ନାହିଁ କଲେ ତାଙ୍କ ଆଗ୍ରହ ଭାଙ୍ଗିବ, ଜନ୍ଙ୍କ ମନ ଦି କଡ଼ା

ହେବ । ଆଜନ୍ମ ସେ କେତେ ବଗ୍ରଧ କଲେଣି, ସେ କଥା ସେ କହିବେ ନାହିଁ ।

କୁଆରଜ୍ଜଣୀ ସେ ହେଲେଣି ଗୋ ରମା, ଏଥର ଠାକୁରେ ତା କୋଳରେ ବଳକଟେ ଦେବେ । ଜୟଶ୍ରୀର ଆଗ୍ରହ ଆମେ ଭାଙ୍ଗିବା ନାହିଁ । କଅଣ ହେଲା କି, ଦିନ ଦୁଇଟାରେ ସେ ଏପରି ବଦଳିଗଲା । ମୁହଁରେ ସୁଗନ୍ଧ ପାଉଡ଼ର ବୋଲା ହୋଇନାହିଁ, ଗାଲରେ ଗୋଲାପୀ ପରଖ କି ଓଠରେ ଲାଲରଙ୍ଗ ସେ ଲେପିନାହିଁ । ଗୋଡ଼ରେ ନକ୍ସା କରି ଫୁଲପଞ୍ଚ ପକାଇ ଅଲତା ମଣ୍ଡିନାହିଁ । ଦେହରେ ଫିନ୍‌ଫିନ୍ ପାତଲା ଜାମାବ୍ଲାଉଜ୍ ଉପରେ ସୁଝୀନ ନେଟଲନ୍ ରଙ୍ଗିନ୍ ଶାଢ଼ୀ ପିନ୍ଧିନାହିଁ ।

ଦିନରାତି ମୋ ପାଖରେ ଦୁଇପ୍ରାଣୀ ଜଗି ବସିଲେ ଗୋ ଗୋମତୀ, ମା ଭଉଣୀ ଓ ବାପଭାଇଙ୍କଠୁଁ ବଳି ମୋର ଚେତ ଅଚେତ ଅବସ୍ଥାରେ ସେବା କଲେ । ପିଲାଦୁଇଟିଙ୍କୁ ମୋ ପାଖକୁ ଛାଡ଼ିଲେ ନାହିଁ, ନିଜେ ସମ୍ଭାଳିଲେ । ଏତିକି ମୁଁ ଜାଣେ । ଆଜ ପାହାନ୍ତାରୁ ଜୟଶ୍ରୀ ମତେ ଭଉଣୀ କରିଛନ୍ତି, ସେ ହୋଇଛନ୍ତି ମୋର ଅପା ।

ସତେ କି ?

ହଁ ଗୋ, ତାଙ୍କ ସ୍ନେହରେ ମୁଁ କିଣି ହୋଇଯାଇଛି । ଦେଖୁଛ ତ ମତେ, ମୋର କଳୁଆ, ରୋଗଣା, ବିଶ୍ରାଣିଆ ମୁହଁ ଦେହକୁ ? ନିଜ ଦରବରେ ନିଜ ମନଖୁସିରେ ମତେ ସଜାଇ ଦେଇଛନ୍ତି । ମନାକଲି, ମାନିଲେ ନାହିଁ । କାଳେ ତାଙ୍କ ମନ ଊଣା ହେବ, ବାଧା ଦେଲିନାହିଁ । ମତେ ଅଡୁଆ ଲାଗୁଛି । ଦରପାଚିଲା ବ୍ରଣଟା ଟଣକ ଉଠୁଛି । ଆଖି ସିନା ଖୋଲିଲିଣି, ମୁହଁଫୁଲା କେଡ଼େ କଦର୍ଯ୍ୟ ଦିଶୁଛି ଗୋମତୀ, ପିଲା ଦୁଇଟା ମୋ ମୁହଁକୁ ଚାହିଁ ଡରୁଛନ୍ତି, କାନ୍ଦି ଉଠୁଛନ୍ତି, ପାଖେ ପଶୁ ନାହାନ୍ତି ।

ରମା ପଲଙ୍କ ଉପରେ କଡ଼େଇ ଶୋଇଛି । ପାଖରେ ଗୋମତୀ ବସିଛନ୍ତି । ରମାର ଆଖିରୁ ଲୁହ ଝରିଲା । ବାମ ଆଖିର ଲୁହ ଝଣ୍ଟାଧାରୁଆ

ନାକଦଣ୍ଡା ଡେଇଁ ଡାହାଣ ଅଖିରେ ଶେଷ । ଅଖିର କଳକଲ ପ୍ରବାହ ବୋହି ଅସୁଛି । କେଡ଼େ ଯତ୍ନରେ ଜୟଶ୍ରୀ ତା'ର ମୁଣ୍ଡ ବାନ୍ଧଦେଇଛନ୍ତି । ଗଳାରେ ଷ୍ଟ୍ରତସତ ବକୁଳଫୁଲର ମାଳ ବେଢ଼ାଇଛନ୍ତି, ସୀମନ୍ତରେ ସିନ୍ଦୂରଗାର, ଭ୍ରୂଲତା ମଝି କପାଳ ଉପରେ ସିନ୍ଦୂର ବିନ୍ଦୁ, ଅଖିରେ କଜଳ, ପାଦରେ ଅଳତାର କମନୀୟ ନକ୍ସା ।

ଅଳକ୍ଷ୍ମୀ ଜୟଶ୍ରୀ, ରମାକୁ ଧଡ଼ା ପାଡଲ ଶାଢ଼ୀ ପିନ୍ଧାଇ ଦେଇଛନ୍ତି, ଗହଣା ନାଇଦେଇଛନ୍ତି, ତଥାପି ମୁହଁ ଅସନା ଦିଶୁଛି । ଫୁଲିଲା ମୁହଁ ଅନ୍ଧପ୍ରକାର ଦିଶୁଛି । ଦରପାଚିଲା ବ୍ରଣ ଉପରେ ଔଷଧ ଲଗାଇ ଗୃହିକଣିଆ ଧୋବକନାର ପଟି ଡାକ୍ତର ପକାଇ ଦେଇଛନ୍ତି ।

ଗୋପୀନାଥ ରମାର ଅଖିରୁ ଲୁହ ପୋଛୁଲେ । ହସହସ ହୋଇ କହିଲେ, "କେଡ଼େ ଭଲ ଅମ ଜୟଶ୍ରୀ, ମୁଁ ଯାହା କରିବାକୁ ମନ କରିଥିଲି, ସେ ତାହା କରିଦେଇଛନ୍ତି । ରୋଗୀକୁ ସୁନ୍ଦର ରଖିଲେ, ଭଲକରି ସଜାଇ ଦେଲେ; ତା ମନ ପ୍ରଫୁଲ୍ଲ ରହେ । ରୋଗ ବେଗେ ଅରୋଗ୍ୟ ହୁଏ ।" ଡାକ୍ତରବାବୁ କହିଲେ, ଦେହରେ ଅଳପ ଜର ଅଛି, ବ୍ରଣଟି ଭଲକରି ପାଚିଲେ ସେ ଅପରେସନ୍ କରିବେ । ପୂଯପାଣି ବାହାରିଗଲେ ଜର ଛାଡ଼ିବ, ମୁହଁର ଫୁଲ କମିବ । ଏଥିକୁ ପିଲାଙ୍କ ପରି କାନ୍ଦୁଛ କାହିଁକି ?

ତମେ ତାଙ୍କୁ କହିଦିଅ, ସେ ଯାହା ଔଷଧ ଦେଉନ୍ତୁ ପଛେ ଆଉ ଇଞ୍ଜେକ୍‌ସନ୍ ଫୋଡ଼ନ୍ତୁ ନାହିଁ ।

କହିଦେବି । ସେ କି ମୋ କଥା ମାନିବେ ? ଛୁଞ୍ଚି ଫୋଡ଼ିବାକୁ ତାଙ୍କୁ ଭଲଲାଗେ । ଖେଳୁ ଖେଳୁ ଲିଲି ଝୁଣ୍ଟି ପଡ଼ିଲା, ଅଣ୍ଟାର ମଳିତମ ଛୁଣ୍ଡି ଟିକିଏ ରକ୍ତ ବୋହିଲା । ପିଲାଟାକୁ ଫୋଡ଼ି ପକାଇଲେ । ମାଛ କାଟିଲାବେଳେ ପନିକି ଦାଢ଼ ଲାଗି ମୋ ହାତପାପୁଲି ଖଣ୍ଡିଆ ହେଲା, ଏଣୁ ତେଣୁ କେତେ କଥା କହି ମତେ ଡରାଇଲେ, ଲମ୍ବ ଛୁଞ୍ଚିରେ ଫୋଡ଼ିଲେ । ଇନ୍ଦିରେ ପୁଅ ହୋଇଛି

ପୁଣି ସେଇ ଲମ୍ବ ଛୁଞ୍ଚା ନେଇ ଯାଉଛନ୍ତି । ଆରଜନ୍ମରେ ସେ ନିଶ୍ଚେ ବିରୁଡ଼ି ଥିଲେ ।

ରମା ହସିଲା, ଉଠିବସିଲା । କହିଲା, ତାଙ୍କୁ କହ ମା, ଜୟଶ୍ରୀ ଅପାଙ୍କୁ ଯେ ଗୃହଥର ଫୋଡ଼ିବେ । ତାଙ୍କ ଦେହରେ ଚର୍ବି ଜମିବ, ତାଙ୍କର କୁହାଳିଆ ପଣ ଯିବ, ଓହଳାଗିଣ ଭାଙ୍ଗିବ । ଭଲଲୋକ ହେଲେ ବି ତାଙ୍କର ଜବରଦସ୍ତିଆ ଢଙ୍ଗ । ବାଧା ଦେବାକୁ ମତେ ଡରମାଡ଼େ । ଦେଖୁନ, ନାହିଁ କରୁଣୁ ମତେ, ବନ୍ଧ୍ୟା ମଣିଷଟାକୁ, ଅଦ୍ୟବ୍ରଣୀ କରି ଦେଇଛନ୍ତି ।

ଗୋମତୀ ଚମକି ଉଠିଲେ । ରମା ଏପରି ଭାବୁଛି, ଏବା ହେନସ୍ତ ସେବାଶୁଶ୍ରୂଷା କରି ଜୟଶ୍ରୀ ଭାବିଛନ୍ତି ଯେ ରମାର କଅଣ ଭଲମନ୍ଦ ହୋଇଯିବ, ସେ ଅନ୍ଧଅଣ୍ଟଣୀ ହେବ ? ଏଇଥିପାଇଁ ରମାର ଆଖିରେ ଲୁହ !

ସେ ସାମାନ୍ୟ ଗମ୍ଭୀର ହେଲେ । କହିଲେ, ତୋର ଏପରି ଭାବିବା ଉଚିତ ନୁହେଁ । ଜୟଶ୍ରୀ ସରଳ ମଣିଷ, ମନଟି ତାର ଖୋଲା ଓ ନିର୍ମଳ । ବେଶୀ ଭାବିଚିନ୍ତି ସେ କଥା କହନ୍ତି ନାହିଁ କି କାମ କରନ୍ତି ନାହିଁ । ମନକୁ ଯାହା ଆସିଲା —

ମୁଁ ଉପହାସ କରି କହିଲି, ତମ ଗୋଡ଼ ଧରୁଛି ସମୁଦୁଣୀ, ଅଜାଣତରେ ପାଟିରୁ ମୋର କି କଥା ବାହାରିଗଲା, ମତେ ସେ ଭଉଣୀ କରିଛନ୍ତି, ତାଙ୍କ ଆଗରେ କହିବ ନାହିଁ । ମୋତେ ପଛେ ମରଣ ହେଉ, ତାଙ୍କ ସ୍ନେହ ତାଙ୍କ ଆଗ୍ରହ ପାଇଁ ସେ ଅନୁତାପ ନ କରନ୍ତୁ ।

ଏଥକୁ ପୁଣି ଆଖିକୁ ଲୁହ ଆଣୁଛି କାହିଁକି ? ଜୟଶ୍ରୀ ସରଳମନା, ଅଭିମାନିନୀ, ଦେଖୁନ, ଝଡ଼ବରଷା ମାଡ଼ିଆସୁଛି, ତଥାପି ମନା ନ ମାନି ପାଞ୍ଚଟି ପିଲାଙ୍କୁ ସଙ୍ଗରେ ନେଇ ଇନ୍ଦରବର ଟିକି ପୁଅକୁ ଦେଖିବାକୁ ଯାଉଛନ୍ତି ।

ବରଷା କୁଟୁଛି, ଛୁଟିଛି ପ୍ରବଳ ବେଗରେ ତୋଫାନ । ବଣ ପାହାଡ଼ ଅନ୍ଧାର କରି ଘୋଟିରହିଛି ମେଘ । ସମସ୍ତେ ତାଆରି ଭିତରେ ଆତ୍ମଗୋପନ

କରିଛନ୍ତି । ସବୁ ହୋଇଛି ଏକାକାର । ରାସ୍ତାକଡ଼ ନାଳରେ ପ୍ରବଳ ବେଗରେ ଛୁଟିଛି ଜଳଧାର । ଦଶହାତ ଆଗକୁ ରାସ୍ତା ଦିଶୁ ନାହିଁ । ଅବଡ଼ା ଖାବଡ଼ା ଜଙ୍ଗଲ ରାସ୍ତାରେ ବର୍ଷା ଅନ୍ଧାରରେ ଜିପ୍ ଚଲାଇ ଆଗକୁ ନେବାକୁ ପୂନାମ ସିଂର ସାହସ ହେଉନାହିଁ । ଦୁଇ ପାଖରେ ଲମ୍ବିଲା ଡାଳ ସଙ୍କୀର୍ଣ୍ଣ ପଥର ମୁଣ୍ଡ ଉପରେ ଦୋହଲୁଛି । ତୋଫାନର ବେଗରେ ଗ୍ରେଟବଡ଼ ଡାଳ ମଡ଼ ମଡ଼ ହୋଇ ଭାଙ୍ଗି ପଡ଼ୁଛି । ଜିପ ଉପରେ ପଡ଼ିଲେ ହାଡ଼ ଗୋଡ଼ ଚୂନା ହୋଇଯିବ ।

ପୂନାମ ସିଂର ବୁଦ୍ଧି ହଜିଗଲା । ବେଳ ଛଅଟା ହେଲଣି । ମେଘ ଅନ୍ଧାର ସଙ୍ଗେ ଘୋଟିଆସିବ ଅନ୍ଧାର ରାତି । ପାଖରେ ଗାଁ ଗଣ୍ଡା ନାହିଁ । ବଣରାସ୍ତାରେ ଅନ୍ୟ କାହାର ଜିପ୍ କି ଟ୍ରକ୍ କ୍ୱଚିତ୍ ଆସେ ଯାଏ । ଦୁର୍ଗମ ଝଡ଼ ବରଷା, ବିଜୁଳି ଘଡ଼ଘଡ଼ି ଝଲସା ଚମକା, ଅବେଳରେ ଶଗଡ଼ିଆମାନେ ଗାଁ ମୁଣ୍ଡରେ କେଉଁଠି ଆଶ୍ରା ନେଇଥିବେ । କାହାର ସାହାଯ୍ୟ ମିଳିବ ନାହିଁ । ଜିପ୍ ଥରେ ଅଟକିଲେ, ପୁଣି ଠେଲାଠେଲି ନ କଲେ ଷ୍ଟାର୍ଟ ହେବନାହିଁ । ରାସ୍ତା ଉଠାଣି ପଡ଼ିଛି ।

ସମୁଦ୍ରର ଲହଡ଼ି ପରି ଜଳ ବରଷଣ ରୁହାକୁ ରୁହା ମାଡ଼ି ଆସୁଛି । ପୂନାମ ସିଂ ଧୀରେ ଧୀରେ ଗାଡ଼ି ଚଲାଇ ଉଠାଣି ଉପରକୁ ନେଲା । ଖୋଲା ସ୍ଥାନ ପାଇ ଗାଡ଼ି ଅଟକାଇ ଇଞ୍ଜିନ ବନ୍ଦ କଲା । ଚିହ୍ନାରାସ୍ତା । ସେ ଜାଣେ, ଉଠାଣି ଉପରୁ ଲମ୍ବା ଗଡ଼ାଣି ପଡ଼ିବ, ପରେ ବଡ଼ ନାଳ ପାଖରେ । ଆଗର ନାଳ ଉପରେ ପୋଲ ନାହିଁ । ଜିପ୍ ନାଳ ଭିତରେ ପଶିଯାଏ । ବର୍ଷା ଲାଗି ରହିଲେ ପାଣି ଫୁଲିଉଠେ । ଶଗଡ଼ ହେଉ ବା ଜିପ୍ ହେଉ, ପାଣି ନ ଖସିଲେ ପାର ହେବା ସମ୍ଭବ ନୁହେଁ । କେତେ ଘଣ୍ଟା ଅଟକିଯିବାକୁ ପଡ଼ିବ ।

ଜିପ୍‌ର ପୁରୁଣା ଯୋଡ଼ଣୀର ଛାତ ଠାଏ ଠାଏ ଫାଟିଯାଇଛି । ଫାଙ୍କ-ବାଟେ ଭିତରେ ପାଣି ଗଳୁଛି । ଯେତେ ଏପାଖ ସେପାଖ କଲେ ମଧ୍ୟ ବିଛଣା ଓ ଅନ୍ୟାନ୍ୟ ପଦାର୍ଥକୁ ଅଗାଧୂ ଶୁଖିଲା ରଖି ପାରନାହିଁ । ସବୁ ଓଦା ହୋଇଛି । ସେ ନିଜେ ଓଦା ସରସର ହେଲଣି ।

ସୁକାନ୍ତର ଅବସ୍ଥା ଏକାପରି । କଲୁଆ ଦେହକୁ ସେ ଘୋଡ଼ାଇ ରଖିଛୁ, ମୁଣ୍ଡରେ ମଫଲର ଗୁଡ଼ାଇଛୁ, ତଥାପି ଥଣ୍ଡା ଧରୁଛୁ । ନିଶ୍ୱାସ ଗରମ । ଦେହର ଗୋଟିଏ କଡ଼ ଓଦା ହେଲଣି । ମନ ଉଚ୍ଛନ୍ନ ହେଉଛୁ, ବିରକ୍ତି ଲାଗୁଛୁ । ଏକ ଝେପାରେ ଡେଇଁ ହନୁମାନ ପରି ବଣପାହାଡ଼, ନଦୀନାଳ, ଗ୍ରାମ ଓ ପ୍ରାନ୍ତର ପାରି ହୋଇ ଜୟପୁର ବସାଘରେ ଉପସ୍ଥିତ ହେବାକୁ ମନ ହେଉଛୁ । ସେ ନିରୁପାୟ । ସେ ଆଜି ବନ୍ଦୀ । ତା'ର ଜୀପ ସହିତ ଗୋଟିଏ ସେଲ୍ !

କି ଅପରାଧ ସେ କରିଛୁ ଏବଂ କାହାର କି କ୍ଷତି କରିଛୁ । କିଏ ସେ ଅଭିଯୋଗକାରୀ ? କେଉଁ ବିଚାରକ ତା ଉପରେ ଓ ତା'ର ସହଯାତ୍ରୀ ଦୁହିଙ୍କ ଉପରେ ଅଗ୍ରୀନିକ ଦଣ୍ଡ ବିଧାନ କରିଛନ୍ତି ? ଅରଣ୍ୟ ମଝିରେ, ରାସ୍ତା ଉପରେ ସେମାନେ କାରାଦଣ୍ଡ ଭୋଗୁଛନ୍ତି ! ପ୍ରକୃତି ହିଁ ପ୍ରହରୀ । ବର୍ଷା ମୂଷଳ ଧାରାରେ ପଡ଼ୁଛୁ । ବିଧା, ଗୋଇଠା, ଗୃପୁଡ଼ା । ବତାସ ଲାଗି ଗଛଲତାର ମୁଣ୍ଡହଲା ବିଦ୍ରୂପ । ଘନଘନ ବିଜୁଳିର ହସିଲା ଉପହାସ । ଚଢ଼ଚଢ଼ର ଛୁଗୁଲା ଆହ୍ୱାନ, ଆସିବୁ ପଦାକୁ ?

କଅଣ କରିବା । ହେ ଅଗାଧୁ, କେତେବେଳଯାଏ ବାଟରେ ଏପରି ଅଟକି ରହିବା ? ଏ ବର୍ଷା ଶୀଘ୍ର ଛାଡ଼ିଲାପରି ମନେହେଉନାହିଁ ।

ଅଗାଧୁ ଉତ୍ତର ଦେଲା ନାହିଁ । ସେ ଓଦା ହେଲଣି । ସେ ଅଭିମାନ କଲଣି । ଚମ୍ପାଫୁଲର ପୁଡ଼ାକୁ ଯତ୍ନରେ ସେ ବିଛଣା ଉପରେ ରଖିଲା, ତା ଉପରେ ଥୋଇଲା ବଣମଲ୍ଲୀ ଫୁଲର ପୁଡ଼ା । ଦୁଇଜାତି ଫୁଲର ମିଶାମିଶି ବାସ ଜୀପ୍ ଭିତରେ ଉତ୍କଟ ଗନ୍ଧ ଚହଟାଉଛୁ । ପାଚିଲା ଆମ୍ବର ମହକ ତହିଁରେ ମିଶି ପବନକୁ ଓଜନିଆଁ କରିଛୁ । ପାଚିଲା କେନ୍ଦୁ ଓ ଚାର କୋଳିର ଗନ୍ଧ ନାହିଁ । ସେଗୁଡ଼ିକ କାହାକୁ ଦୂରରୁ ନିମନ୍ତ୍ରଣ କରନ୍ତି ନାହିଁ । ପାଖକୁ ଗଲେ ଆଖିରେ ପଡ଼ନ୍ତି । କିନ୍ତୁ ଏ ରଙ୍ଗଢ଼ଙ୍ଗର ଚୋଳିଆ, ଗୁରିକଣିଆ ଛୋଟ ଛୋଟ ପଥରଗୁଡ଼ିକ ନଈନାଳରୁ ଆହରଣ କରି ଜୀପ୍‌ରେ ଗଦାଇବାର ଉଦ୍ଦେଶ୍ୟ

କଅଣ ? ପେପର୍ ୱେ୍ଟ୍ କରିବାକୁ ପଥର ଲୋଡ଼ା ହେଲେ ଜୟପୁର ଦାଣ୍ଡରେ ଯଥେଷ୍ଟ ଅଛି ।

ଅଗାଧୁର ନିରବତା ସୁକାନ୍ତକୁ ଉତ୍ତର ଦେଲା, ଅମେ ଅଦେଶର ଦାସ, ମୁଁ ସତର୍କ କରି କହିଥିଲି, ଜୟପୁରରେ ଚମ୍ପାଫୁଲ ମିଳେ, ବଣମଲ୍ଲୀର ଅଭାବ ନାହିଁ, ଖଟା ଅମ୍ବ ବା କଅଣ ହେବ, କେନ୍ଦୁ ଓ ଗୁରକୋଳି ତମ ପିଲାଏ ଖାଇବେ ନାହିଁ । କଳା ଧଳା, ନାଲି ଉପଲ ଖଣ୍ଡ ଏଣେତେଣେ ପଡ଼ିବ । ଦେଖିଲୁ ଆଜ୍ଞା, ଦଣଦଣ ଅନ୍ଧାର କରି ମେଘ ଘୋଟି ଆସୁଛି, ବାରମ୍ବାର୍ ଜିପ୍ ଅଟକା'ଇ ଏସବୁ ଆହରଣ କରିବା ଲୋଡ଼ା ନାହିଁ । କଚୁଆ ଦେହରେ ଜିପ୍ ଠେଲି ଷ୍ଟାର୍ଟ କରିବାରେ କି ଆନନ୍ଦ ମିଳୁଛି ? ସମସ୍ତ ବାଢବ, ହଇରାଣ ହେବା । ସକାଳୁ ଆପଣ ଉପାସରେ ବାହାରିଛନ୍ତି ।

ଡ୍ରାଇଭର ପୂନାମ ସିଂ ତୁନି ହୋଇ ବସିଛି । ତାଲକୁ ଓହ୍ଲାଇ ବଡ଼-ଖଣ୍ଡେ ଟାଣିବାକୁ ମନ ହେଉଥିବ, ଉପାୟ ନାହିଁ । ସେ କଣେଇ ଗୁହୁଁଛି । ତାର ଅ୍ଖି ଆଗରୁ ସାବଧାନ କରି ଦେଲଣି, ମତେ ବହୁ ପଗ୍ଗର ନାହିଁ, ଅନେକ ହାକମ ଦେଖିଲିଣି, ଜଣଙ୍କୁ ଗୋଟିଏ ପ୍ରକୃତି । ଏକରୁ ଅନେକ ବଡ଼ ମଣିଷ, ସମସ୍ତେ ଭାବନ୍ତି, ମୁଁ ସବୁଠୁ ବୁଦ୍ଧିଆ, ସଚ୍ଚୋଟ, କାର୍ଯ୍ୟଦକ୍ଷ, ମୋ ବିନା କାମ ଅଚଳ ହେବ, ମୁଁ ଗଲେ ସବୁ ଭୁଷୁଡ଼ି ପଡ଼ିବ । ମୁଁ, କେବଳମୁଁ ।

ପୂନାମ ସିଂ ମନେ ମନେ ହସୁଛି । କହୁଛି ପରି ନିଜ ଭିତରେ ନିଜକୁ, ଅଢ ଲେମ୍ବୁ ଚପୁଡ଼ିଲେ ପିତା, ଅଢ ଦକ୍ଷତାର ପରିଚୟ ନିଜ ପାଖରେ ନିଜେ ଦେଇ ଜର ହେଉଛ । ତୁମର ନାଲି ଭୁଷୁଡ଼ିବ କି ? ଅମ୍ବିକାବାବୁ କଣ୍ଟିନ୍ତରେ ଘରେ ବସିଥିବେ, କବାଟ ଝରକା ବନ୍ଦକରି ଭଗବତ୍ ଗୀତା ମୁଖସ୍ଥ କରୁଥିବେ ।

ସ୍ମୃତିଙ୍କି ନିଜ ଘରଭିତରେ ଆଲୁଅ ଜାଳି ଲୁଭର ପରିମାଣ ହିସାବ କରୁଥିବେ ।

ବଙ୍ଗଳାଘର ବାରଣ୍ଡାରେ ବସି ଶୋଭାବତୀ ଝିଲ୍‌ମିଲ୍ ହସୁଥିବ । ମୁଣ୍ଡରେ ଜଡ଼ାତେଲ ବୋଳି ବର୍ଷାକୁ ଚାହିଁ ଭାବୁଥିବ, ତରହର ହଦ୍ଦଲ ହଦ୍ଦଲ ସେ ପଳାଇଲେ ।

ସୁକାନ୍ତର ଆଖି ଆଗରେ ଉଭାହେଉଛି ରମା । ବାରଣ୍ଡା ଉପରେ ସେ ଠିଆ ହୋଇଛି, ପାଖରେ କୃନୁ, କାଖରେ ଇଭା । ଅଙ୍ଗୁଳି ଆଟିରେ ଚାହିଁଛି ରାସ୍ତାର ଦୁଇଆଡ଼କୁ ।

ବର୍ଷାର କୋପ କମି କମି ଆସୁଛି । ପବନର ବେଗ ଊଣା ହେଲାଣି । ରହି ରହିକା ବିଜୁଳିର ଝଲକ, ଘଡ଼ଘଡ଼ି । ସନ୍ଧ୍ୟାର ଅନ୍ଧାର ଘୋଟି ଆସୁଛି । ଶୀଘ୍ର ନ ଗଲେ ଅସୁବିଧାରେ ପଡ଼ିବାକୁ ହେବ । ପୁନାମ ସିଂ ଛତାଧରି ଆଗର ନାଳକୁ ଦେଖିଆସିଲାଣି । ଦ୍ରୁତବେଗରେ ବଳାଗଣ୍ଡିଏ ପାଣି ଚାଲିଛି । ସାବଧାନତାର ସହିତ ନେଲେ ଜିପ୍‌ଟି ପାର ହୋଇଯିବ । ଅଧିକ ବିଳମ୍ବ କଲେ, ଦୂର ପାଣି ନାଳରେ ପଡ଼ିଲେ, ପାଣିର ଗଭୀରତା ବଢ଼ିବ । ସେପାଖକୁ ଯାଇ ହେବ ନାହିଁ । ପୁଣି ପାଣି କମିବାଯାଏ ଅପେକ୍ଷା କରିବାକୁ ପଡ଼ିବ, କେତେବେଳ ଲାଗିବ କିଏ ଜାଣେ ? ଗାଡ଼ି ଚଳାଇବାକୁ ପୁନାମ ମନ କଲାଣି ।

ସୁକାନ୍ତ ଆଖି ଖୋଲିଲା, ଆଖି ମଳିଲା । ବାଧ୍ୟହୋଇ ଅନେକ ଆଳସ୍ୟରେ ବେଳ ବିତାଇବା ଜୀବନରେ ବହୁବାର ଘଟିଯାଇଛି । ନିଶ୍ଚଳ ହୋଇ ବସିଲେ ଆଖିପତା ମାଡ଼ି ମାଡ଼ି ପଡ଼େ, ଚହିଁକା ଶ୍ୱାନନିଦ୍ରା ଲହଡ଼ି ପରେ ଲହଡ଼ି ପରି ଆସେ ଓ ଭାଙ୍ଗେ, ବାରଙ୍କୁଢଳିଆ ଭାବନା ଆସେ ଓ ଯାଏ । ଘଟିଲା-ଘଟଣାର ସ୍ମୃତି ପାତଳା ବାଦଲ ପରି ମୁହୂର୍ତ୍ତକରେ ଘୋଟିଆସେ, ଘଟ ବଦଳାଇ ଭାସିଯାଏ ଅତୀତର ବିଢଗଲା ଅବାସ୍ତବ ଭବିଷ୍ୟତକୁ । ସେବକାଳର ଅପୂର୍ଣ୍ଣ ଆଶାର ସୁନେଲି ରଙ୍ଗରେ ରଞ୍ଜିତ ହୁଏ ନ ଘଟିଲା ଘଟଣାର ଘଟିଲା ଭବିଷ୍ୟତ । ଅଜାଣତରେ ନୀରବ ଓଠରେ ଉଦ୍‌ଗତ ହୁଏ ଈଷତ ହସ ।

ପୁଣି, ଭଗ୍ନଦୁରଣାର ଉଚାଟିଆ କଳାଧୂମର ମେଘ ଅତୀତର ବିଗତ-ଭବିଷ୍ୟତକୁ ଅମାଅନ୍ଧାରରେ ଆଚ୍ଛାଦି ଦିଏ, ବିକଳ୍ପର ବିକଳ ବିଳାପ ବିକଟ

କରେ ସେହି ଅନ୍ଧାର ଭିତରେ, ବିକଟ-ଘଟନ । ଛନଛନ ମନ ବେଦନ କରେ, ଥରଥର ହୁଏ ଛାତିର ସ୍ପନ୍ଦନ । ଜଳଜଳ ଗୁହିଁଲ ଆଖିକୁ ବର୍ତ୍ତମାନର ଚଳନ୍ତା ଦୃଶ୍ୟ ଦେଖାଯାଏ ନାହିଁ, କାନକୁ ଶବଦ ଶୁଭେନାହିଁ, ଆଖିରେ ଲଖେ ଅଜଣା ଭୟର ଛାୟା ।

ସୁନାଝିଅକା ସୁଭଦ୍ରା ବିଦ୍ରୋହ କରିଛି । ପିତାମାତାଙ୍କର ଅବାଧ୍ୟ ହୋଇଛି । ସତାଅପାର କଥା ସେ ମାନିନାହିଁ । ସୁକାନ୍ତ ଗଳାରେ ବାହୁ ବେଷ୍ଟନ କରି ଆଖିରୁ ଲୋତକ ଝରାଇ ସେ କହୁଛି, ତମଛଡ଼ା ମୁଁ ଆଉ କାହାର ପତ୍ନୀ ହୋଇ ପାରିବି ନାହିଁ, ତମେ ମୋର ଜୀବନସର୍ବସ୍ୱ, ମତେ ଦୂରେଇ ଦିଅନାହିଁ, ମୋତେ ପାଖରେ ନିଅ, ନାହିଁ କଲେ ମୁଁ ଜୀବନ ହାରିବି ।

ନିଶା ଗର୍ଜୁଛି । ଝଡ଼, ବର୍ଷା ।

ସୁକାନ୍ତ ! ଅପା ଡାକୁଛନ୍ତି ।

ମୁଁ ତାକୁ ବିବାହ କରିବି, ଅପା ।

ଛି, ନିର୍ଲଜ୍ଜ ! ଦରିଦ୍ର ମୂଲିଅର ପୁଅ, ପରଘରେ ଥାଇ ପେଟ ପୋଷିବାକୁ ପାଠ ପଢ଼ୁଛୁ । ନିଜ ଉକ୍ଷଣ ଅନୁଭବ । ଧନୀଘରର ଅଲିଅଳି ଅଜ୍ଞାନ ଝିଅର ହାତ ଧରିବାକୁ ତୋର ଲୋକହସା ଦୁଃସାହସ ତ କମ୍ ନୁହେଁ ! କାଲି ସକାଳୁ ତୁ ଏ ଘରଛାଡ଼ି ଚାଲିଯା । ତୋ କପାଳରେ ଭିକ ମାଗିବା ଯୋଗ ଅଛି । ତୋ ମୁହଁ ଗୁହିଁ ଯୋଗାଏ ନାହିଁ । କୁଳାଙ୍ଗାର ଟୋକା, ବଢ଼ ନପାଉଣୁ ଏ ଘରଛାଡ଼ି ତୋତେ ଚାଲିଯିବାକୁ ହେବ, ନୋହିଲେ ମୁଁ ମୋ ଜୀବନ ହାରିଦେବି ।

ସୁଭଦ୍ରା ହସି ଉଠିଲା, କହିଲା, କେହି କୁଅଡ଼େ ଯାଅନା । ମୁଁ, ମୁଁ ଚାଲିଯିବି, ମୋର ଚିନ୍ତା ଆଉ କାହାକୁ ଲାଗିବ ନାହିଁ ।

ସୁଭଦ୍ରା ହସହସ ହୋଇ ଘରୁ ବାହାରି ଗଲା । ସତାଅପା ତା'ର ଅନୁଗମନ କଲା ।

ସମସ୍ତେ ସେମାନେ ସମ୍ମତ । ସୁକାନ୍ତ ଭଲ ପିଲା, ସୁକାନ୍ତ ମଣିଷ ହେଉ । ସୁଭଦ୍ରା ପିଲାଟା, ସେ ଚାଲାଖ ଚତୁର ହେଉ, ଭଲମନ୍ଦ ବୁଝୁ, ଘରକରଣା ଶିଖୁ, ହେଇଠୁ ।

ସୁଭଦ୍ରାକୁ ସେ ବିବାହ କରିଛି ।

ଆନନ୍ଦରେ ଜୀବନ କଟୁଛି । କୁନୁ ଓ ଇରା ତା'ର ଦୁଇଟି ସନ୍ତାନ । ସମସ୍ତେ ଦିଶିଯାଉଛନ୍ତି ତା'ର ଆଖିକୁ । ଜୟପୁର ଘର, ସୁଭଦ୍ରା ପାଖରେ ସୁକାନ୍ତ, ତା କୋଳରେ ଇରା, ସୁକାନ୍ତ କୋଳରେ କୁନୁ ।

ସୁଖର ସଂସାର !

ଘର ଭିତରକୁ ପଶିଆସୁଛି ରମା, ଅଲୁରି ବେଶ, ଆଖିରେ ବିସ୍ମୟ, ଓଠରେ ସ୍ମିତ, ହାତରେ ଜଳଖିଆ ପ୍ଲେଟ । ପଚାରୁଛି, କିଏ ମ ସେ ?

କିଏ ? କାହିଁ ?

ସୁକାନ୍ତ ଆଖି ଖୋଲିଲା ।

ଜିପ୍ ଛୁଟିଛି । ଆଲୁଅ ନିସ୍ତବ୍ଧ । ସଳଖ କାଦୁଆ ରାସ୍ତାର ବେଶୀ ଦୂର ଦେଖାଯାଉନାହିଁ । ଆଲୋକର ଦୁଇଟି ସ୍ତମ୍ଭ ଅଦୂରରେ ଏକାଠି ହୋଇ ଝରିଲା ବରଷା ଭେଦ କରି ଖଣ୍ଡେ ଦୂରଯାଏ ଉଜ୍ଜ୍ୱଳ କରୁଛି । ବଣପାହାଡ଼ ପଛରେ ରହିଲାଣି । ଦୁଇପାଖେ ଗମ୍ଭୀର ବିଲ । ଝଡ଼ ତୋଫାନ ନାହିଁ । ବରଷାର ତୀବ୍ରତା କମିଛି । ବଣଗୁମ୍ଫା ପାଖେଇ ଆସିଲା । ଜୟପୁର ବେଶୀ ଦୂର ନାହିଁ । ରେଡ଼ିୟମ୍ ଓ୍ୟାଚ୍ ସୂଚାଇ ଦେଉଛି, ରାତି ଆଠଟା ଡେଇଁଲାଣି । ଘଣ୍ଟାକ ଭିତରେ ଜୟପୁର ହେବ ।

ଆଜି ରାତିରେ ସେ ଦରଓଦା ହୋଇ ଫେରି ଆସିବ ବୋଲି ରମା କେବେ ଅନୁମାନ କରି ନଥିବ । ପିଲା ଦୁଇଟିଙ୍କୁ କୋଳରେ ପୂରାଇ କମ୍ବଳରେ ସେ ଶୋଇପଡ଼ିଥିବ । ଡାକ ଶୁଣି ସେ ଉଠି ଆସିବ, ଦେଖିବ, ସୁକାନ୍ତ ଫେରିଛି । ହୁଏତ ତା'ର ବ୍ୟାକୁଳତା ପ୍ରକାଶ ପାଇବ, ଏଁ ଖାଇବେ କଅଣ ? ଭୋକରେ ତାଙ୍କର ପେଟ ଗଳୁଥିବ, ଯାଏ, ଚୂଲି ଲଗାଏ ।

ଶୁଣ ମ ରମା !

ତମେ ଲୁଗା ଜାମା ପାଲଟ୍, ପାଲଟ୍, ମୁଁ ଜଳଖିଆ କରି ଆଣେ । ଆଗେ ଖାଇପିଇ ସୁସ୍ଥ ହୁଅ, ସେଇଠୁ ତମର ସବୁ ଗଳ୍ପ ଶୁଣିବି । ପିଲାଙ୍କୁ ଉଠାନା । ଆରେ ରଙ୍ଗିଆ, ବାବୁଙ୍କୁ ଏ ଶୁଖିଲା ଜାମା ଦେବୁଟି, ସେ ବଦଳି ପକାନ୍ତୁ, ମୁଁ ଚୁଲି ଲଗାଏ ।

ସେହି ରମାମାନଙ୍କୁ ଅଙ୍ଗେ ନିଭେଇଥିଲା ସବୁ ଘଟଣା ବର୍ଣ୍ଣିଲେ ସେମାନଙ୍କୁ ଗଳ୍ପ ପରି ଲାଗେ । ସେମାନଙ୍କର ଅନ୍ୟମନସ୍କ ହୁଁ ହିଁ ଜଣାଇ ଦିଏ ଯେ, ସେମାନେ ଅଧା ବିଶ୍ୱାସ କରନ୍ତି ଅବା ମୋଟେ ବିଶ୍ୱାସ କରନ୍ତି ନାହିଁ । ଯେଉଁ ଅପଦବିପଦ ସଙ୍ଗେ ଲଢ଼ି ସେହିମାନଙ୍କର ଭବିଷ୍ୟତ ପାଇଁ ଜୀବନକୁ ଜାବୁଡ଼ି ଧରିବାକୁ ପଡ଼େ, ସେସବୁ ଭୟଙ୍କର ଘଟଣାକୁ ସେମାନେ ମନେ ମନଗଢ଼ା କାହାଣୀ !

ସୁକାନ୍ତର ଆଖି ମାଡ଼ିମାଡ଼ି ପଡ଼ୁଛି ।

ଦେହ ଅଳ ଭଲ ଲାଗୁଛି, କିନ୍ତୁ ମନ ହୋଇଛି ଚଞ୍ଚଳ । ଶ୍ୱଶୁରଘର ହେଲା ସେ ଗଲେଣି, ଖବର ପଠାଇଲେ ନାହିଁ । ଘରର ହାଲଚାଲ ପାଇଲେ ନାହିଁ । ମରଣର ମୁହଁରୁ ସେ ଫେରି ଆସିଛି ଏହା ସେ ଶୁଣିବେ ସିନା ଜାଣିବେ ନାହିଁ, ଦେଖିବେ, ତାଙ୍କର ପୁରୁଣା ସଂସାର ପୂର୍ବପରି ଅଛି; ପୂର୍ବପରି ଚାଲିଛି । କାମ କାମ ହୋଇ ସେ ବାଇଆ ।

ଯାହା ସେ ହେଉନ୍ତୁ, ଜଗନ୍ମାତା ତାଙ୍କୁ ସୁସ୍ଥ ଓ ନିରାପଦରେ ଫେରାଇ ଆଣନ୍ତୁ ।

କୁନୁ ଓ ଇରାଙ୍କୁ ପାଖରେ ଶୁଆଇବାକୁ ଜୟଶ୍ରୀ ଅନୁରୋଧ କଲେ । ଇରାକୁ ଯେତେ ବୁଝାଇଲେ ସେ ମାନିଲା ନାହିଁ । ରମାକୁ କୁଣ୍ଢାଇ ଧରିଲା, କାନ୍ଦିଲା । ସେ ନ ଗଲେ କୁନୁ ଯିବନାହିଁ ବୋଲି ମନା କରିଦେଲା, ଆଲମାରି କରରେ ଲୁଚିଲା । ଜୟଶ୍ରୀ ମନରେ ଦୁଃଖ କରିଥିବେ ।

ହଲଧରବାବୁ କହିଲେ, ତାଙ୍କ ମାଆଙ୍କ ପାଖରେ ସେମାନେ ଥାଉନ୍ତୁ ।

ଜୟଶ୍ରୀ କହିଲେ, ହେଉ, ଅରେ କୁନୁ, ଅଉ ମୁଁ ତୋ ମାଉସୀ ହେବ ନାହିଁ, କି ଝିଅପୁଅଙ୍କୁ ଦେଖାଇବାକୁ କାଲି ଭଡ଼େ ନେବ ନାହିଁ । ଇଗି ମୋର ସୁନା ଝିଅ, ସେ ମୋ ପାଖେ ଅସିବ ।

ଇଗି ରମାର ବେକକୁ କୁଣ୍ଢାଇ ଧରିଲା ।

ଅବୃତଙ୍କ ପିଲା ଦୁଇଟା ।

ସେମାନେ ଫେରିଗଲେ, ସେମାନଙ୍କର ଋଣ ସୁଝାଇ ପାରିବ ନାହିଁ । କୁନୁ ଓ ଇଗିଙ୍କୁ ସେମାନେ କେଡ଼େ ଭଲ ପାଆନ୍ତି ?

ପିଲା ଦହେଁ ଶୋଇପଡ଼ିଲେଣି । ହରି ଓ ପାର୍ବତୀ ଆଜି ଘରେ ଘରେ ରହିବାକୁ ମନା କରିଦେଲେ । ଦାଣ୍ଡଘରେ ଏକା ରମା ଅଛି । ଶୋଇଛି । ଡର ଡର ଲାଗୁଛି । ରାତି ନଅଟା ହେଲାଣି । ବାହାରେ ଝିପିଝିପି ବର୍ଷା । ଘର ଭିତର ଅନ୍ଧାର ।

ରମା ଆଖି ବୁଜି ଶୋଇଛି । ଡାହାଣ ଆଖିପତା ଗୋଦରିଆ ଲାଗୁଛି । ଆଖି ତଳ ବ୍ରଣ ଉପରର ପଟି ଅଡ଼ୁଆ ଲାଗୁଛି । ବ୍ୟଥା କମିଲାଣି । ତଥାପି ସେ ପରିତାପ କରୁଛି, ନିଜ କଲା କର୍ମର ଫଳ ।

ସବୁ ଦେଇଆ । କାହିଁକି ଏପରି କଲା, ଫଳ ପାଇଲା ତ, ଅନେକ ଏପରି କହନ୍ତି । ନିଜ କଲା କାମ ଓ ତାର ଫଳ କଥା ଭୁଲିଯାଇଥାନ୍ତି । ସମସ୍ତେ ସବୁବେଳେ ସବୁକଥା ଧୀରସ୍ଥିର ହୋଇ ବିଚାରପୂର୍ବକ ଫଳାଫଳ କଅଣ ହେବ ଗଣନା କରି, ଆଗେଇ ପାରନ୍ତି ନାହିଁ । ଭଲ ହେବ ବିଚାରି କଲେ, ମନ୍ଦ ହୋଇଯାଏ, ଜାଣିଲା କଥା ପାସୋରି ଯାଏ । ମଣିଷ ବୁଝିଲେ ବାଟକୁ ଚଳନ୍ତି, ତଥାପି, ସେ ବୁନ୍ଦେ ବୁନ୍ଦେ ଜଳକା ହୁଏ ।

ଘୋଟି ଆସୁଛି କ୍ଲାନ୍ତିହରା ନିଦ । ମୁଣ୍ଡ ଝାଙ୍କୁଛି । ଏତେବେଳ ହେଲା ସେ କାହିଁକି ଫେରିଲେ ନାହିଁ ? ନିଜକୁ ସେ ଅତି ବୁଦ୍ଧିଆ ମଣନ୍ତି । ଅପଦାର୍ଥମାନଙ୍କୁ ଉପହାସ କରନ୍ତି ।

କହନ୍ତି, ଶୁଣ ରମା, ଭୟକୁ ଭୟ କରୁଥିଲେ ସେ ଡରଉଥିବ, ମାଡ଼ି ଚଳିକି ଆଗେଇଗଲେ ସେ ଦୂରେଇ ଯିବ । ବିପଦ ଆସି ଆଗରେ ଠିଆହେଲେ ପରିତ୍ରାଣର ଉପାୟ ଖୋଜିବାକୁ ହେବ, ଫଳାଫଳ ଯାହା ହେବାର ହେଉଥାଉ । ମଣିଷର ଶେଷ ପରିଣତି ଯେ ମରଣ । ଦୁଇଥର କେହି ମରେନାହିଁ । ମରଣକୁ ଜିତି ନ ପାରିଲେ, ମୋତେ ଛାଡ଼ିଯାଅ କହି ତା'ର ଶରଣ ମୁଁ ପଶିବି ନାହିଁ । ଟାଣ ହୋଇ ମୁଁ ଠିଆହେବି, ନେଉ ସେ, ଝାମ୍ପି ନେଉ ।

ଏ କି ଚୂଲିପାଉଁଶ କଥା କହୁଛ ? ଅପଦବିପଦ ପାଖରୁ ଦୂରେଇ ରହିବା ଭଲ ।

ଦୂରେଇ ରହିବା ଭଲ ।

ମୁଣ୍ଡ ଆଉଁସି ଟେରେଇ କହନ୍ତି ସେ, ତମର ମୂଲ୍ୟବାନ୍ ଉପଦେଶ ମାନିଲେ ଖଟ ଉପରୁ ତଳକୁ ପାଦ ବଢ଼ାଇ ହେବନାହିଁ । ବିପଦ ସବୁଠି ଅଛି । ଅଜ୍ଞାନକ ସେ ଆସି ପହଞ୍ଚେ, ବୁଝି ହୁଏନା । ଏପରି ଗୋଟାଏ ଘଟଣା ହେବ ବୋଲି ମୁଁ ଆଗରୁ ଜାଣି ନ ଥିଲି, ଏପରି ବିପଦ ମଝିରୁ ପରିତ୍ରାଣ ପାଇ ଜୀବନ ଧରି ତୁମ ପାଖକୁ ଫେରିଆସି ପାରିବି ବୋଲି ମୋର ଭରସା ନଥିଲା । ମାଲକାନଗିରିର ଉଷିତ ଅରଣ୍ୟ ଭିତରେ ବାଟ ହୁଡ଼ାଇ ଘଡ଼ିଏ ସେଇଠି କଟାଇବି ଏକାକୀ, ଏପରି ଧାରଣା ମୋ ମନକୁ ଆସନ୍ତା ବା କିପରି ?

ଯାହା ବାସ୍ତବ, ତମକୁ ସେ ଅସମ୍ଭବ ପରି ଲାଗିବ ରମା, କେତେ ପାହାଡ଼, ଅରଣ୍ୟ, ନଦୀନାଳ, ଜଳପ୍ରପାତ ତମେ ଦେଖିଛ, ମୋର ସେ ଦିନର ଦୁର୍ଦ୍ଦଶା ଅବଶ୍ୟ ଅନୁମାନ କରିପାରିବ, ଉପଲବ୍ଧି କରିପାରିବ ।

ଯାହା ମୁଁ ଅଙ୍ଗେ ନିଭେଇଲି, କିପରି ତୁମ ଆଗରେ ପ୍ରକାଶ କରିପାରିବି ?

ଦିନ ଦୁଇ ପ୍ରହର । ଟାଣଖରା ଆକାଶ ବୁକୁରେ ଭାସିଲା ବଉଦର ଫାଙ୍କରେ ମୁହଁ ଗଳାଇ ତଳକୁ ଆସୁଥିଲା, ବଉଦ ମାଡ଼ିଆସିଲେ, ଘୋଟି-ଆସୁଥିଲା ଛାଇ । ସୁଖ ଓ ଦୁଃଖ, ଆଶା ଓ ନୈରାଶ୍ୟ ପରି ଆଲୁଅ ଓ ଛାଇର ଗୋଡ଼ିଆ ଗୋଡ଼ି ଖେଳ ଖୁସି ଲଗୁଥିଲା, ମନରେ ଉତ୍ସାହ ଆଣୁଥିଲା ।

ଜୟପୁରରୁ ପଞ୍ଚଷଠି ମାଇଲ ମାଲ୍‌କାନ୍‌ଗିରି, ଅସାଧ୍ୟ ବାଟ । ଅରଣ୍ୟ ଘାଟି ଓ ଅରଣ୍ୟ ! ଛୋଟ ଜଳସେଚନ ଯୋଜନାମାନଙ୍କର ସମ୍ଭାବନା ତଦନ୍ତ କରିବାକୁ ମାଲକାନଗିରି ଛାଡ଼ି ଆମେ ଅରଣ୍ୟରେ ପ୍ରବେଶିଲୁ ରମା, ସଙ୍ଗରେ ମୋର ଆଉ ଚାରି ପାଞ୍ଚଜଣ ଲୋକ ଥିଲେ ।

କଷ୍ଟ ସଙ୍ଗେ ସଙ୍ଗେ ଆନନ୍ଦ ! ମନେ ହେଉଥିଲା, ତ୍ରେତୟା ଯୁଗ ଫେରି-ଆସିଛି, ରାମ, ଲକ୍ଷ୍ମଣ ଓ ସୀତା ଏହି ଅରଣ୍ୟ ଭିତରେ କେଉଁଠି ଭ୍ରମୁଥିବେ, ଦେଖାହେବ । ମାଲ୍‌କାନଗିରି ସତେ କଅଣ ମାଲ୍ୟବନ୍ତ ଗିରି ଅଥବା ମଲ୍ଲୀକାନ-ଗିରି ? ସତେ କଣ ସତୀ ସୀତା ଛୋଟ ସତୀନଦୀରେ ସ୍ନାନ କରିଥିଲେ ? କେଜାଣିବା, ଛୋଟ ତମସାନଦୀର କେଉଁ ନିଭୃତ ଘାଟରେ ଅସାବଧାନ ହୋଇ ସ୍ନାନ କରୁଥିବା ଅବସ୍ଥାରେ ମଲ୍ଲୀକାନଗିରିର ରାଜକନ୍ୟା ଓ ତାଙ୍କର ସହଚରୀମାନେ ସୀତାଙ୍କର ଅସାବଧାନତା ଦେଖି ହସିଥିଲେ । ସତୀଶିରୋମଣୀ ସେମାନଙ୍କୁ ଅଭିଶାପ ଦେଇଥିଲେ, ତମେମାନେ ମୋତେ ଉପହାସ କଲ, ମୁଁ ଅଭିଶାପ ଦେଉଛି, ତମେ ଉଲଗ୍ନ ରହିବ; ବସନ ପିନ୍ଧିଲେ ତମର ଛାତି ଫାଟିଯିବ ।

ସେଥିପାଇଁ ସେମାନେ ଉଲଗ୍ନ । କେବଳ ଲଜ୍ଜା ଘୋଡ଼ାଇବାକୁ ଚାରି ଆଙ୍ଗୁଳ ଚଉଡ଼ାର ଛୋଟ କନା ବା ବକଳଖଣ୍ଡେ ଆଗପାଖରେ ଅଣ୍ଟାରୁ ଝୁଲନ୍ତି, ଦୁଇଜଙ୍ଘର ମଝିରେ, ଆଣ୍ଠୁ ଉପରଯାଏ । କେତେ କାଳୁଡମିନତ ପରେ ଜଗଜ୍ଜନନୀ ସତୀ ସୀତା ତାଙ୍କ ଅଭିଶାପକୁ ଏତିକି କୋହଳ କରିଥିଲେ ।

ସେମାନେ ବଣ୍ଡାପରଜା, ବାଳିର ଦଶସ୍ଥଳ ବାଲିମେଲାପାଖ ପାହାଡ଼-ମାଳ ଉପରେ ସେମାନଙ୍କର ଗ୍ରାମଗୁଡ଼ିକ । ସେମାନେ ମଲ୍ଲୀକାନଗିରିରୁ ଦଶକୋଶ ଦୂର ବାଲିମେଲା ପାହାଡ଼ ଉପରକୁ ପଳାଇଗଲେ । ଯେଉଁମାନେ ଏବେ ସତୀନଦୀ, ତମସା ନଦୀ ଓ ସେ ଦୁଇଟି ମିଶିଥିବା ପଟେରୁ ନଦୀର ଦୁଇ ପାଖରେ ବାସକରନ୍ତି, ସେମାନେ ଅନ୍ୟ ଜାତିର ଲୋକ, କୋୟା କନ୍ଧ ।

ଏହିରୁ କଅଣ ସତକଥା ? ବିଶ୍ୱାସ ହେଉନାହିଁ କି ମିଛ ବୋଲି ମନେ କରିବାକୁ ସାହସ ହେଉନାହିଁ ।

ମିଛ ହେଉ କି ସତ ହେଉ, କିମ୍ବଦନ୍ତୀ ଚାଲିଆସିଛି, ରମା, ସେମାନେ ଏ କଥା କହନ୍ତି, ଏହା ବିଶ୍ୱାସ କରନ୍ତି । ସେମାନଙ୍କର ଏପରି ବିଶ୍ୱାସ ମିଛ; ଏପରି ଧାରଣା ଜନ୍ମାଇବାକୁ ଚେଷ୍ଟା କରି ଅନେକ କର୍ମବ୍ୟସ୍ତ ସେମାନଙ୍କୁ ବଦନ ପିନ୍ଧାଇବାକୁ ଚେଷ୍ଟା କରି ବିଫଳ ହୋଇଛନ୍ତି । ନାରୀମାନେ ମୁଣ୍ଡର କେଶ କାଟି ଲଣ୍ଡା ହୁଅନ୍ତି । ସେମାନେ କଳା ବା ଅଳ୍ପ ଶ୍ୟାମଳ ।

ଅସନା, ଅଶୋଭନ ଦିଶୁଥିବେ ତ ।

ତମ ଆମର ଆଖିକୁ ରମା, କିନ୍ତୁ ସେମାନେ ବି ବଧୂ ହୁଅନ୍ତି, ପତି-ସୋହାଗିନୀ ହୁଅନ୍ତି, ଜନନୀ ହୋଇ ମାତୃତ୍ୱର ଟେକ ରଖନ୍ତି । ଦାମ୍ପତ୍ୟ ଜୀବନର ପବିତ୍ର ପଥରୁ କାମନାର ଅରମାକୁ ଗୋଡ଼ ବଢ଼ାଇଲେ ନାରୀମାନଙ୍କରେ, ଦ୍ୱେବର୍ଷର ଘରଣୀ ଓ ବହୁ ପୁତ୍ର କନ୍ୟାଙ୍କର ଜନନୀ ହୋଇଥିଲେ ମଧ୍ୟ ତାର ଓ ତାର ପ୍ରେମିକର ଗଣ୍ଡିରୁ ମୁଣ୍ଡ ଅଲଗା ହୁଏ । ଜଣା ପଡ଼ିଲେ ସ୍ୱାମୀ ହିଁ ଏହା କରେ । ରକ୍ତାକ୍ତ ମୁଣ୍ଡ ଦିଓଟିକୁ ଦୁଇହାତରେ ଧରି ସେ ନିଜେ ଆସି ଥାନାରେ ଉପସ୍ଥିତ ହୁଏ । ଦୁଃଖ ନାହିଁ, କି ମନରେ ଅନୁତାପ ନାହିଁ । ପ୍ରଗାଢ଼ ପ୍ରେମର ଏହା କଅଣ ନମୁନା ନୁହେଁ କି ରମା ?

ହଁ, ପ୍ରଗାଢ଼ ସ୍ନେହ ! କାହିଁକି ସେ ଅନ୍ୟ ପୁରୁଷର ସ୍ନେହକୁ ଚାହିଁଲା କିମ୍ବା ଓ ଅରମାକୁ ଗୋଡ଼ ବଢ଼ାଇଲା, ସେକଥା କେହି ଅନୁସନ୍ଧାନ କରେ କି ? କେଉଁ ନାରୀ କେବେ ତାର ସନ୍ତାନମାନଙ୍କର ପିତାର ଓ ଅନ୍ୟ ମନୋ-ହାରଣୀର ଦୁଇଟି ରକ୍ତାକ୍ତ ମୁଣ୍ଡ ହାତରେ ଧରି କେଉଁ ଥାନାରେ ଉପସ୍ଥିତ ହେବାର ସମ୍ବାଦ ପାଇଛ ?

ରକ୍ତାକ୍ତ ମୁଣ୍ଡ, ରକ୍ତ ଦିଶୁନାହିଁ, କେବଳ ଦିଓଟି କଟା ମୁଣ୍ଡ ଟେବୁଲ ଉପରେ ରଖାହୋଇଛି । ଥାନା ଘର ନିରୋଳା । ଟେବୁଲ ଆରପାଖରେ ପୋଲିସ ଦାରୋଗା ବସି କଅଣ ଲେଖୁଛନ୍ତି । ଟେବୁଲ ଏପାଖେ ଠିଆ-ହୋଇଛନ୍ତି—କିଏ ସେ ?

ଗ୍ଲାଇ ନିଦ ଭାଙ୍ଗିଗଲା । ଗ୍ଲାଡ ଥରଥର କମ୍ପୁଛି ।

ରମା ଆଖି ଖୋଲିଲା । ଘରଭିତର ଅନ୍ଧାର । ଝିପି ଝିପି ବରଷାର ଶବଦ ଶୁଭୁଛି । ମୁଣ୍ଡ ବୁଲୁଛି । ହାତ ଅଣ୍ଡାଳିଲା । ପାଖରେ ଢିବି ଶୋଇଛି, ଖୁଜୁବୁଜୁ । ତା ଆରକଡ଼େ ବୁନୁ । ଅନ୍ଧାର ଭୟଙ୍କର ଦିଶୁଛି । ତକିଆକଡ଼ରୁ ଟର୍ଚ୍ଚ ଟେକି ଆଲୁଅ ଜଳାଇଲା । ମଶାରି ଟେକି ହାତ ଗଳାଇ ଘରଆଡ଼ ଦେଖିଲା । ସବୁ ଯେମିତ ପୂର୍ବପରି ରହିଛି । ସେ ବଞ୍ଚିଛି । ପିଲାଟି-ମାନେ ପାଖରେ ଶୋଇଛନ୍ତି । ଜୟଶ୍ରୀ ଓ ହଳଧର କେବେଠୁଁ ଚାଲିଗଲେଣି । ସେମାନେ ଦଣ୍ଡିଲ୍ରେ ନିଜ ଘରେ ଶୋଇଥିବେ ।

ହଳଧର ଭଲଲୋକ । ସ୍ନେହୀ, ଭଦ୍ର ଓ କର୍ତ୍ତବ୍ୟପରାୟଣ । କାହିଁକି ରମା ଏପରି ଭୟଙ୍କର ଧାରଣାର ସ୍ୱପ୍ନ ଦେଖିଲା ?

ହାତ ଟାଣି ଆଲୁଅ ଲିଭାଇଲା । ଟର୍ଚ୍ଚ ଆଲୁଅ ତକିଆକଡ଼ରେ ରହିଲା । ଉଠି ବସିଲା ଖଟଉପରେ । ତଥାପି ଦେହ ଥରୁଛି, ମୁଣ୍ଡ ବୁଲୁଛି ।

ବାହାରେ ବର୍ଷାର କୋପ ବଢ଼ିଛି । ଅଜାଣତରେ ଆଖିରୁ ଝରୁଛି ଲୋତକ ଧାରା ।

ବର୍ଷା ଝରୁଛି । ବଡ଼ ରାସ୍ତାରେ କାର୍ ଛୁଟିଛି । ଆଉ ଭୟ ନାହିଁ । ଗାଡ଼ି ଜୟପୁରରେ ପୁରୁଣୁରୁରେ ପହଞ୍ଚିବ ଏ ବିଷୟରେ ଡ୍ରାଇଭର ସୁନିଶ୍ଚିତ । ଅଗାଧ୍ ସୁପ୍ରାଉଣ୍ ଖବୁଥିଲା ଓ ଉଠାପଡ଼ା ରାସ୍ତାରେ ତାହାର ଚହିଁବା ନିଦ ସଙ୍ଗେ ଭାବନା ମଧ୍ୟ ଭାଙ୍ଗିଥିଲା । ସମତଳ ପିଚ୍ ରାସ୍ତାରେ ଦେହ ନ ହଲିଲେ ମଧ୍ୟ ଆଖିକୁ ତନ୍ଦ୍ରା ଆସୁନାହିଁ । ସେ ରାସ୍ତାକୁ ଚାହିଁଛି । ଆଲୁଅ ଭିତରେ ଝରଝର ବରଷାର ଧାରକୁ ଦେଖୁଛି । କୋଡ଼ ଉପରେ ରଖିଥିବା ଚମ୍ପାଫୁଲର ମହକ ଏବେ ସେ ଉପଲବ୍ଧି କଲାଣି । ମହଲା ବଣମଲ୍ଲୀ ଫୁଡ଼ାର ନରମ ଗନ୍ଧକୁ ଚମ୍ପାର ଗନ୍ଧ ବୁଡ଼ାଇଦେଉଛି । ଓଦା ତ ସେ ହୋଇ ଯାଉଛି, ଦେହକୁ ଶୀତଳ ଲାଗୁଛି, ଲାଗୁଥାଉ ।

ଆରେ, ବୋରିଗୁମ୍ମା ଗ୍ରାମ ପଛରେ ପଡ଼ିଲା, ତେରମାଇଲ ରହିଲା ଜୟପୁର । ଜାମା ପିନ୍ଧି, ମୁଣ୍ଡରେ ମଫଲର ବାନ୍ଧି ପଛକୁ ଅଉଜି ଇଞ୍ଜିନିୟାର ବାବୁ ଶୋଇଛନ୍ତି ପରା । ଅଗାଧ ଘୁଙ୍ଘି ରହିଲା ।

ଶୋଇନାହିଁ ସେ ସୁକାନ୍ତ । ଆଖି ବୁଜିଛି । ମନରେ କେତେ ଭାବନା ଖେଳୁଛି । କେତେ ଦୃଶ୍ୟ ସେ ଦେଖୁଛି । ଗତ ଓ ଆଗତକୁ ଭାବନା ଧାଇଁଯାଉଛି ।

ଛୋଟ ଛୋଟ କଥାରେ ତମେ ମାଇପିପରି ଅଭିମାନ କର ରମା, ବେଙ୍ଗାପରି ମୁହଁ ଲଦ । ତୁଣ୍ଡ ଖୋଲି କିଛି ନ କହିଲେ ମଧ୍ୟ ତମମାନଙ୍କର ଆଖି, ନାକ, ଓଠ, ଗାଲ ଓ ଢଙ୍ଗ କହିଦିଏ ଯେ, ତମେ ବିରକ୍ତ ହୋଇଛ, ପାଖରୁ ଚାଲିଯାଅ ବୋଲି ନିର୍ଦ୍ଦେଶ ଦେଉଛ ।

ବିରକ୍ତ ଲାଗେ, କଜିଆ କରିବାକୁ ମନ ହୁଏ । ସବୁ ଭଲ କାମକୁ ଖୁଣିବାକୁ ଓ ଅପସନ୍ଦ କରିବାକୁ ଇଚ୍ଛା ହୁଏ ।

ତୁମେ ହସି ହସାଇ ପାର, ଅଭିମାନ କରି କନ୍ଦାଇ ପାର, ଅବା ବିରକ୍ତ କରିପାର । ଘରକୋଣରେ ରହିବାଲୋକ କିପରି ଜାଣିବ, ବାହାର ଦୁନିଆଁରେ ଆତଯାତ ହେଲା ଲୋକ କେବଳ ଆନନ୍ଦ ଓ ଫୁର୍ତ୍ତିରେ ବେଳ କଟାନ୍ତି ନାହିଁ । ସେମାନେ ଦୁଃଖକଷ୍ଟ ସହନ୍ତି, ବିପଦରେ ପଡ଼ି ଶେଷ ହୋଇଗଲେ ତୁମେ ଖବର ପାଅ—ସେ ଚାଲିଗଲେ, ଆଉ ଫେରିବେ ନାହିଁ । ସେତେବେଳେ ବିପଦର ଗୁରୁତ୍ୱ ବୁଝ । ବିପଦରୁ ଉଦ୍ଧାର ପାଇ ଫେରି ଆସିଲେ ଘଟଣାଟି କାବା ହୋଇ ଶୁଣ, ଗୁରୁତ୍ୱ ଉପଲବ୍ଧି କରିପାର ନାହିଁ ।

ଭାବନା ଭିତରେ ରମା ପଶୁଛି, କିପରି ତୁମେ ବୁଝିବ ? ଏତେ ଅବତରଣିକା ନ ଦେଇ ଘଟଣାଟି ସୁନାପୁଅପରି କହିଦିଅ ତ ।

ଶୁଣ । ଉପାସ ବ୍ଲକରେ ମାଲକାନଗିରି ରକ୍ଷିତ ଜଙ୍ଗଲ ଭିତରେ ଆମେ ସେଦିନ ବୁଲିଲୁ । କହନ୍ତି, ସେଠି ପଲପଲ ଭାଲୁ, ଗୋଟିଏ ବି ଆଖିରେ ପଡ଼ିଲା ନାହିଁ । ବାଘ ଅଛନ୍ତି, ଏ ସମ୍ବାଦ ପାଇଲୁ । ଲୋକେ କହିଲେ, ଦୁଇଟା ବଳଦ ଟାଣି ନେଲେଣି । ତଥାପି, ଅମେ ଡରିଲୁ ନାହିଁ । କାମ ଶେଷ କରି ଫେରିଅସୁଛୁଁ, ଆସିଲା ତୋଫାନ, ବର୍ଷା ବୁନ୍ଦା ଝାଡ଼ିଲା ।

ସମସ୍ତେ ଅଟେଇଗଲେ ।

ବଣ ମଝିରେ ଟେନୋର୍‌ ଗୃଷଜମି । ତା ମଝିରେ ଗ୍ରୋଟ ନାଳ । ମାଛ ଧରିବାକୁ ଅରଣ୍ୟ ସେପାଖ ଗ୍ରାମର ଲୋକେ ବନ୍ଧ ବାନ୍ଧି ପୋଲୁଅ ବହାଇଛନ୍ତି । ଜଗି ବସିବାକୁ ଜଙ୍ଗଲର କଡ଼ରେ ଗ୍ରୋଟ କୁଡ଼ିଆ କରିଛନ୍ତି । ତା ଉପରେ ପତର ଗ୍ଛଉଣି, ଗ୍ରରିପାଖ ଖୋଲା । କୁଡ଼ିଆ ଭିତରେ ଦେଢ଼ହାତ ଉଞ୍ଚର ବେଞ୍ଚ ପରି ପୀଠ, ତିନିହାତ ଲମ୍ବ ଓ ମୁଠିଏ ଚଉଡ଼ା । ତଳେ ଗ୍ରରିଖଣ୍ଡି କାଠ ପୋତି, କାଠ ଉପରେ ବାଉଁଶ ପକାଇ ବସିବାକୁ ଏପରି କରିଛନ୍ତି ।

ବର୍ଷା ପଡ଼ିଲା । ଓଭର୍‌କୋଟ୍‌ ଓ ଟୋପି ପିନ୍ଧିବାକୁ କୁଡ଼ିଆ ଭିତରକୁ ଗଲି । ପଛର ଲୋକେ ଆଗେଇଗଲେ । ଚଲାବାଟ ସେଇଠି ବଙ୍କେଇ ଯାଇଛି । ପ୍ରସ୍ତୁତ ହେବାକୁ ମୋତେ ଦଶ ମିନିଟ ଲାଗିଥାଇ ପାରେ । ଚିନ୍ତା ନାହିଁ, ସେମାନେ ଆଗେଇ ଯାଉଛନ୍ତି, ମୁଁ ବଡ଼ ବଡ଼ ପାହୁଣ୍ଡ ପକାଇ ଅତିଶୀଘ୍ର ଯାଇ ସେମାନଙ୍କ ସଙ୍ଗେ ମିଶିଯିବି ।

ବର୍ଷା ଛୁଟିଲା, ଅନ୍ଧାରୁ ଘୋଟି ଆସିଲାଣି । ଶୀଘ୍ର ବଡ଼ ରାସ୍ତାକୁ ବାହାରି ନ ଗଲେ ରକ୍ଷା ନାହିଁ । ମୋ ସହକର୍ମୀମାନଙ୍କୁ ଭେଟିବା ପାଇଁ ଧାଇଁବାକୁ ଲାଗିଲି । ଜଙ୍ଗଲ ଭିତରେ କେତେ ଚଲାବାଟ । ସେମାନେ ଯେଉଁ ବାଟରେ ଯାଇଥିଲେ, ଅଜାଣତରେ ସେ ବାଟ ଭୁଲି ଅନ୍ୟ କେଉଁ ବାଟରେ ଗଲି । ମୋର ଡାକ ସେମାନଙ୍କୁ ଶୁଭିଲା ନାହିଁ ।

ଅନ୍ଧାର ଘୋଟିବା ଆଗରୁ ମୁଁ ଆସି ଗୋଟିଏ ନାଳ ପାଖରେ ପହଞ୍ଚିଲି । ତମସାନଦୀର ଉପନଦୀ ହୋଇଥିବ । ଆର ପାଖରେ ଗ୍ରୋଟ ପାହାଡ଼ । ଏଇଟା ଠିକ୍‌ ବାଟ ନୁହେଁ, ମୁଁ ନିଶ୍ଚୟ ବାଟ ଭୁଲିଛି । କାଠକଟାଳିମାନେ ଯାଆଯା କରି ଜଙ୍ଗଲ ମଝିରେ ଭିନ୍ନ ଭିନ୍ନ ଦିଗକୁ କେତେ ବାଟ ଫିଟାଇଛନ୍ତି । ନିଶ୍ଚୟ ଗୋଟିଏ ଭୁଲବାଟ ଧରି ମୁଁ ଏଣେ ଧାଇଁଆସିଛି । ସର୍ବନାଶ । ହାତରେ ହତିଆର ନାହିଁ, ଠେଙ୍ଗା ବାଡ଼ି ନାହିଁ । ପାଞ୍ଚ ସେଲ୍‌ର ବଡ଼ ଟର୍ଚ୍ଚ ଆଲୁଅଟି ଆଉ ଜଣକୁ ଧରାଇ ଦେଇଥିଲି । ଏବେ କରେ କଅଣ ?

ହାଲୁକ ଶୁଖିଲା । ହତାଶ ହେଲି । ଭୟରେ ଗୋଡ଼ରୁ ମୁଣ୍ଡଯାଏ ଥରହରିଲା । ଛାତି କମ୍ପିବାକୁ ଲାଗିଲା । ବର୍ଷାର ବିରାମ ନାହିଁ ଥେଲେ-ବେଳେ ପବନ ମାଡ଼ିଆସୁଛି । କେତେ ପ୍ରକାର ଶବ୍ଦ କାନରେ ବାଜୁଛି । ଗଡ଼ାଣି ପାଣିର କଳକଳ, ପଡ଼ାଣି ପାଣିର ଦୁମ୍ ଦୁମ୍, ଝଡ଼ ବରଷାର ଝମ ଝମ, ଦମକା ପବନର ସନ୍ ସନ୍ । ଶୁଣିପାରୁଛି, ନିଜ ଛାତିର ସ୍ପନ୍ଦନ । ଚପଳା ଚମକି ଉଠୁଛି । କାନ ଅତଡ଼ା ପକାଇ ଗରଜି ଉଠୁଛି ତା'ର କାଳକାଳା ପଟଫଟା ରଡ଼ି ।

ଦୁଇ ପାଖର ଗଛଲତା ନଇଁକି ଆସି ଅଣଓସାରିଆ ଚଲାବାଟ ଉପରେ ଛଣି ବାନ୍ଧି ହୋଇଛନ୍ତି । ମୋ ପାଦରେ ମୋଜା ନାହିଁ । ପାତଳ ନରମ ରବର ଜୋତା । ପୁରା ପାଇଜାମା ପାଦଉପରକୁ ଲମ୍ବିଛି । ଅଣ୍ଟୁ ଉପରଯାଏ ଓଦାସରସର । ରବର ବରଷାତି ଓଭରକୋଟ୍ ତଳେ କାମିଜ୍ ଓ କୋଟ୍ ଓଦା ହୋଇଯାଣିଲେଣି । ଜଳରେ ନୁହେଁ, ଭୟଭୀତ ଅବସ୍ଥାରେ ମରଣ ଝାଳରେ ।

ଯନ୍ତ୍ରଚାଳିତ ପିତୁଳା ପରି ମୁଁ ଫେରୁଛି ସେଇ ଅଣଓସାରିଆ ଚଲାବାଟରେ । ଦୁଇ ହାତରେ ଆଗର ଡାଳପତ୍ର ଆଡ଼େଇ ଚାଲିଛି । ଗୋଡ଼ରେ ଗୁଡ଼ାଇ ହେଉଛି ଲଟାପତ୍ର । ଖାଲ ଢିପରେ ପାଦ ପଡ଼ି, ପଡ଼ୁ ପଡ଼ୁ ଗଛଲଟା ଧରି ଅଟକିଯାଉଛି । କେଉଁଠି କାଦୁଅ କି ଫସକା ଓଦାମାଟିରେ ପାଦ ଗଳିଯାଉଛି । ମୁଁ ଅଣ୍ଟେଇ ପଡ଼ୁଛି, ଉଠୁଛି ଅତି କଷ୍ଟରେ । ଝଣ୍ଟା ସଳଖି ଆଗେଇ ଯାଉଛି, କଣ୍ଟା ଝଟା ଝୁଣ୍ଟୁଛି ।

ପ୍ରାଣରକ୍ଷା ପାଇଁ ଦୋହଲ ଉତ୍କଣ୍ଠା, ବିକଳ ପ୍ରଚେଷ୍ଟା !

ଅନ୍ଧାର ଘୋଟିଗଲାଣି ।

ଅଭ୍ୟାସ ହେଲେ ଅନ୍ଧାରରେ ବାଟ ବାପ୍ସା ଦିଶେ । ଅକାଶରେ ବହଳ ମେଘ, ନକ୍ଷତ୍ର ବା ଦିଶିବେ କାହିଁ ? ଆଖି ଆଗରେ ଜହ୍ନିକୁଳିଆ ପଳ ଭାସିଯାଉଛନ୍ତି । ମନେ ହେଉଛି, ଅଗରୁ ଧୂମେଇଁ ଧୂମେଇଁ ବିରାଟକାୟ

ଅଜଗର ସାପ ସେହି ବାଟରେ ଆସୁଛି । ଫାଟି ଆଁ କରିଛି । ଗିଳିବ, ସାପ ଯେପରି ବେଙ୍ଗକୁ ଧରେ, ଧୀରେ ଧୀରେ ଗିଳେ, ବେଙ୍ଗଟି ଚହିଁଚହିଁ ଛଟଫଟା ରଡ଼ି ଛାଡ଼ୁଥାଏ. ଅଜଗର ଦେହପରି ଗୋଡ଼ଅଡ଼ୁ ଟେର ଗିଳିବ, ଧୀରେ ଧୀରେ । ପ୍ରାଣ ସହଜରେ ଛାଡ଼ିବ ନାହିଁ । କଳବଳ ମରଣ । କେହି ଜାଣିବେ ନାହିଁ ଯେ, ସୁକାନ୍ତ ଇଞ୍ଜିନିୟାର କୁଆଡ଼େ ହଜିଲେ ।

ନା, ଅଜଗର ନୁହେଁ, ପୁରୁଣା କାଠ ଗଣ୍ଡା ।

ଗୋଡ଼ରେ ଛନ୍ଦି ହେଲାଣି କାଳସାପ । ଉମ୍, ନାଗ କି ଅହିରାଜ । ଗ୍ରେଟ ହାଣିବ, ବିଷ ଚଢ଼ିବ, ମରଣ ହେବ । ବେଶି କଳବଳ ନାହିଁ । ଛଟପଟ ହେବାକୁ ପଡ଼ିବ ନାହିଁ । ସୁଖେ ମରଣ । ସେଇ ଭଲ । ଯଦି ପଟିପଟିକା ରଙ୍ଗର ଚଣାସାପ ହୋଇଥାଏ ? ଗ୍ରେଟ ବୋଡ଼ାଟିଏ ହୋଇଥାଏ ? ଅଜଗରଗିଳା ମରଣଠାରୁ ଚଣାସାପର କାମୁଡ଼ାରେ ମରଣ ହେବା ଆହୁରି କଷ୍ଟପ୍ରଦ । ଧୀରେ ଧୀରେ ସେ କଳବଳିଆ ମରଣ । ଦିନ, ମାସ ଓ ବର୍ଷ କଟିବ । ଘା ଘାଉଡ଼ରେ ଦେହ ପଚିବ, ଅଙ୍ଗ ଛାଡ଼ିବ ।

ଓହୋ, କଣ୍ଟା ଲତାଟାଏ, ଜଳି ଗୋଡ଼ରେ ଛନ୍ଦି ହୋଇଛି, ଦୁଇ ଚାରିଟା କଣ୍ଟା ଭୁକିଛି । ଛାଡ଼ି ଗଲାଣି ।

ଦୁଇଟା ଭାଲୁ ଖସ୍‌ଖସ୍ ହୋଇ ପଛ ଗୋଡ଼ରେ ଚାଲି ଚାଲି ଆସୁଛନ୍ତି । ଦେହ ମୁଣ୍ଡ ବିଦାରି ପକାଇବେ । ମୃତ୍ୟୁ ହେଲେ କଷ୍ଟରୁ ମିଳିବ, କିନ୍ତୁ ବଞ୍ଚିଗଲେ, କି ଅସୁନ୍ଦର, କି ଭୟଙ୍କର ଦିଶିବ ମୋର ମୁହଁ ! ଦେଖିଲେ ଲୋକେ ଡରିବେ, ଘୃଣା କରିବେ, ଦୂରେଇ ରହିବେ, ଯେତେ କି ମୁଁ ଭାଲୁଠାରୁ ବି ଭୟଙ୍କର ।

ନାଇଁ, ବୁଦା ଦଉଟି । ମନ ମୋର ଦୁର୍ଗତିନାଶିନୀ ଦୁର୍ଗାଙ୍କର ନାମ ଜପ କରୁଛି । ମୁଁ ଆଗେଇ ଚାଲିଛି ।

ଖସ୍‌ଖସ ଶୁଭୁଛି । ମହାବଳ କି ? ରାମ ମାରିବ । ଗୋଟିଏ ଚାପୁଡ଼ାରେ ତଳେ ପକାଇବ । ଗୋଟିଏ ହାତରେ ଗୁଡ଼ାଇଧରି ଛାତିରେ

ଡାକିବ । ଶରବେଗରେ ଛୁଟିବ ଘୋର ଅରଣ୍ୟ ମଝିକୁ । ତଣ୍ଟି ଫୁଟାଇ ପ୍ରାଣ ନେବ । ରକ୍ତ ଶୋଷିବ । ତେଣିକି ସେ ଯାହା କରୁ । ଆଖିରେ ଦେଖିବାର ଶକ୍ତି କି ଦେହର ଅନୁଭବ ଶକ୍ତି ନଥିବ । ମୁକ୍ତ ଆତ୍ମା ଉପରକୁ ଉଠି ଯାଇଥିବ ।

ବାଘ ନୁହେଁ, ଦମକା ପବନ ।

ଘଡ଼ଘଡ଼ା ଚଡ଼ଚଡ଼, ଯଦି କି ମୁଣ୍ଡରେ ପଡ଼ିଲା । ଆଖି ଝଲସିଲା । ମୁହୂର୍ତ୍ତକେ ପ୍ରାଣ ନେଇଯାଏ, ସୁଖର ମରଣ ।

ଆଖିରେ ଦିଶିଲା ଛୋଟ କୁଡ଼ିଆଟି, ଯେଉଁଠାରୁ ମୁଁ ଯାଇଥିଲି ସେଇଠାକୁ ଫେରି ଆସିଛି । ଖୋଲା ଜାଗା । ବଡ଼ ମହୁଲଗଛର ତଳ । ଆଗରେ ଅଳ୍ପ ଓସାରିଆ ଚାଷ ଜମି । ଛୋଟ ନାଳ ପୂର୍ଣ୍ଣହୋଇ କଳକଳ ପାଣି ଚାଲିଛି । ମନେହେଲା, ସବୁ ବିପଦ ଲଙ୍ଘନ କରି ମୁଁ ମୋ ନିଜ ଘରକୁ ଫେରିଆସିଛି, ପ୍ରାଣ ରହିଛି, ପ୍ରାଣ ରହିବ ।

କୁଡ଼ିଆ ତଳକୁ ଆସିଲି । ଚାରିଆଡ଼କୁ ଥରେ ଚାହିଁଲି । ଦେହ ଥରଥର କମ୍ପୁଛି । ପାଖ ଅରଣ୍ୟ ଝାପ୍‌ସା ଦିଶୁଛି । ଥରଥର ହାତ ଦିଓଟି ଯୋଡ଼ି କପାଳରେ ଲଗାଇଲି । ଥରିଲା କଣ୍ଠରେ ଅରଣ୍ୟ କମ୍ପାଇ ଚିତ୍କାର କଲି, 'ମା ଗୋ ଦୁର୍ଗା, ଦୁର୍ଗତି ହାରିଣୀ— ।' ମନରେ ଶକ୍ତି ଆସିଲା । ଛୋଟ ବେଞ୍ଚ ଉପରେ ବସିଲି । ଭାବିଲି, ମୋତେ ନ ଦେଖି ମୋର ବନ୍ଧୁମାନେ ଶୀଘ୍ର ଫେରିଆସିବେ । ଆଉ ଚିନ୍ତା ନାହିଁ । ବର୍ଷା ବି କମି ଆସିଲାଣି ।

ସେତିକିବେଳେ ତୁମେ ମୋର ମନେପଡ଼ିଥିଲ ରମା, ଆଉ ମୋର ଟିକିଟିକି ପିଲା ଦିଓଟି । ମଣିଲି, ତୁମମାନଙ୍କର ନିଶ୍ୱାସ ପାଇଁ ମୁଁ ଜୀବନ ଧରି ଏହି ପର୍ଣ୍ଣକୁଟୀରକୁ ଫେରିଆସି ପାରିଛି । ସମସ୍ତଙ୍କ ଉପରେ ଭଗବାନଙ୍କର ଦୟା ଅଛି ।

ଏହି ସେ ଦଣ୍ଡକାରଣ୍ୟ, ଯେଉଁଠି ନରଦେହରେ ନାରାୟଣ ଶ୍ରୀରାମଚନ୍ଦ୍ର, ଜଗଜ୍ଜନନୀ ମହାସତୀ ସୀତା ଓ ମହାବୀର ତପସ୍ୱୀପ୍ରବର ଲକ୍ଷ୍ମଣଙ୍କ ସଙ୍ଗରେ

ଧରି ବିଚରଣ କରିଥିଲେ । ଏହିପରି କେଉଁ ପର୍ଣ୍ଣକୁଟୀରରେ ପ୍ରିୟତମା ପତ୍ନୀ ଓ ପ୍ରିୟତମ ଅନୁଜଙ୍କୁ ଧରି ଦିନ ଯାପନ କରିଥିବେ । ହୋଇଥିବ ପରା ଏହି ସ୍ଥାନଟି, ଯାହାର ପ୍ରତି କଣିକା ମୃତ୍ତିକା ରାମସୀତାଙ୍କର ଚରଣସ୍ପର୍ଶରେ ଜୀବନ୍ତ ଓ ପବିତ୍ର ।

ଦୁଇହାତ ଯୋଡ଼ି ପୁଣି ମୁଁ ମସ୍ତକରେ ଲଗାଇଲି ।

ବର୍ଷା କମିଛି । ପବନ ଥମିଛି । ଦୂରରେ ଗରଜିଲା ନାଳରୁ ଭେକ-ଦଳର ଚିତ୍କାର ଶୁଭୁଛି । ଅଭ୍ୟସ୍ତ ଆଖିକୁ ଅନ୍ଧାର ଅଡ଼ୁଆ ଲାଗୁନାହିଁ, ପାତଳ ଦିଶୁଛି । ମନେ ହେଉଛି, ମୁଁ ଦୂରେଇ ଯାଇଛି, ଦେଖୁଛି ଏହି ପର୍ଣ୍ଣକୁଟୀରର ଆଲୋକମୟ । କୁଟୀର ଭିତରେ ପର୍ଣ୍ଣଶଯ୍ୟା ଉପରେ ଶୟନ କରିଛନ୍ତି ଭଗବାନ ରାମଚନ୍ଦ୍ର, ପାଦ ଦେଶରେ ଉପବିଷ୍ଟା ଜଗଜ୍ଜନନୀ ସୀତା, ପଦ ମର୍ଦ୍ଦୁଛନ୍ତି । କୁଟୀର ଦ୍ୱାରରେ ଉଗ୍ର ତପସ୍ୱୀ ଲକ୍ଷ୍ମଣ, ଜଟାଜୁଟଧାରୀ, ହାତରେ କାଣ୍ଡକୋଦଣ୍ଡ ।

ସବୁ ଉଭେଇଯାଉଛି ରମା, ମୁଁ ଯେଉଁଠି ସେଇଠି । ଶୀତରେ ଥରୁଛି । କିମ୍ବଦନ୍ତୀ ହେଉଥିଲେ, ବିଶ୍ୱାସ ଓ ଧାରଣାରେ ତାହା ସତ୍ୟ ହୁଏ । ମୁହୂର୍ତ୍ତକ ପାଇଁ ମୋର ନିର୍ଜନ, ନିଃସହାୟ ଅବସ୍ଥାରେ ତାହା ସତ୍ୟ ହୋଇଛି । ଭୟ ଓ ଚାଞ୍ଚଲ୍ୟ, ଅପେକ୍ଷା ଓ ଉଦ୍‌ବିଗ୍ନତା, ପ୍ରିୟ ଜୀବନ ଓ ଅତି ପ୍ରିୟ ମରଣର ତେଉଢ଼େଉକା ଧାରଣା ଧରି ମୁଁ ବସିରହିଛି ।

ସେମାନେ ଆସିବେ, ମୁଁ ଫେରିବି ମାଲକାନଗିରି । ସେଠାରୁ ଫେରି-ଆସିବି ଜୟପୁର, ଯେଉଁଠି ମୋର ପ୍ରିୟତମା ପତ୍ନୀ, ଅହ୍ଲାଦିନୀ, ସୁଖଦୁଃଖର ସାଥୀ ରମା, ଅପେକ୍ଷା କରି ବସିଥିବ । ରମା ଅପେକ୍ଷା କରି ବସିଛି । ଦୁଇ ଆଖିରୁ ତତଲା ଲୁହ ଝରିପଡ଼ୁଛି ।

ଏତେଦିନ ହେଲା ଗଲେ ଫେରିଲେ ନାହିଁ, ପୁଣି କଅଣ ଘଟିଲାଣି କି ? ସବୁବେଳେ ବେପରୁଆ ଢଙ୍ଗ । ଆପଦବିପଦକୁ ପାହଙ୍ଗରେ ପକାନ୍ତି ନାହିଁ । ଜୀବନ ଥିଲେ ତ ଚାକିରି । ଏତେ ଲୋକ ଚାକିରି କରିଛନ୍ତି, କେହି ତମପରି

ଜବନମୂର୍ଚ୍ଛା ସ୍ବୀକାର କରନାହିଁ । ଘର ଭିତରେ ଅନ୍ଧାର, ତଥାପି ମୁଁ ଜାଣେ କାନ୍ଥରେ ହାତ ମାର ସ୍ୱିଚ ଟିପିଲେ ଆଲୁଅ ଜଳିବ । ଟର୍ଚ୍ଚଟା ପାଖରେ ଅଛି, କିନ୍ତୁ ଅନ୍ଧାର, ଡର ମାଡ଼ୁଛି । ନିର୍ଜନ ଅରଣ୍ୟ ଭିତରେ କେତିକେତି ଅନ୍ଧାର ରାତିରେ ତୁମେ ବେଳ କଟାଇଲ, ଏତେ ସବୁ ହେଲା, ଚେଙ୍ଗ ପାଇ ମଧ୍ୟ ଶିଖିଲ ନାହିଁ ?

ଉପହାସ କରି ସୁକାନ୍ତ ସତେ କି ହସିଉଠୁଛି, କହୁଛି, କ୍ରନ୍ଦନ କରିବା ନାରୀର ଧର୍ମ, ପୁରୁଷର ନୁହେଁ । ବିପଦକୁ ଲଙ୍ଘନ କରି ଆସିଲେ ବିଜୟ ବିପଦ ବିଜୟର ଧ୍ୱଜା ହୁଏ, ମନରେ ଆନନ୍ଦ ଆଣେ, ଗର୍ବ ଆସେ ।

ତମେ କାନ୍ଦ ନାହିଁ ରମା, ସେ ଭୟଙ୍କର ବେଳ କଟିଯାଇଛି । ସବୁ ବିପଦକୁ ଜାଣି ଜାଣି ବରଣ କରି ବିଜୟର ଆନନ୍ଦ ଓ ଗୌରବ ଲାଭ କରିବାକୁ, ନୂଆ କିଛିର ସନ୍ଧାନ କରିବାକୁ ଏଇ ମଣିଷ ଦୁର୍ଗମ ହିମାଳୟର ଶିଖରକୁ ପାଦରେ ଉଠୁଛି, ମେରୁଦେଶକୁ ଯାଉଛି । ମଣିଷ ଆକାଶରେ ଉଡ଼ିଲାଣି, ଭୂଗର୍ଭରେ ଓ ସମୁଦ୍ରର ଅତଳତଳେ ପ୍ରବେଶ କଲାଣି । ପ୍ରଭେଦ ହେଉଛି, ସେମାନେ ଜାଣିଶୁଣି ଏହା କରନ୍ତି । ବିପଦ ଆସିବ ଅନୁମାନ କରି ଯଥାସାଧ୍ୟ ପ୍ରସ୍ତୁତ ହୋଇ ଯାଇଥାନ୍ତି ।

ମୋ ଉପରେ ବିପଦ ଅତର୍କିତ ଆସି ଉପସ୍ଥିତ ହୋଇଥିଲା, ରମା !

ମରୁଭୂମିର ଅପନ୍ତର ମଝିରେ ସହସା କେହି ନିକ୍ଷିପ୍ତ ହେଲେ, ଅବା ଗ୍ରେଟ ନୌକା କରିରେ କେହି ସମୁଦ୍ର ମଝିରେ ଭାସୁଥିଲେ, ବଞ୍ଚିବ କି ମରିବ ଏହି ଭାବନା ଯେପରି ପ୍ରତିମୁହୂର୍ତ୍ତରେ ତା'ର ମନରେ ଆଶାନିରାଶାର ଦ୍ୱନ୍ଦ୍ୱ ଜଗାଏ, ମୋ'ର ତାହାହିଁ ହୋଇଥିଲା । ଅରଣ୍ୟଭିତରେ ପର୍ଣ୍ଣକୁଟୀରଟି ସତେ କି ସମୁଦ୍ର ମଝିରେ ତୋଫାନରେ ଦୋହଲୁଥିବା ଗ୍ରେଟ ନୌକାଟିଏ, କେତେବେଳେ ବୁଡ଼ିବ ସେହି ଆଶଙ୍କାରେ ଛାତି ଉଠୁଛି ପଡ଼ୁଛି ।

ବରଷା ଥମିଲା । ପବନ କମିଲା । କ୍ରମେ ଶୀତ ଅଧିକ ହେବାକୁ ଲାଗିଲା । ହାତରେ ବନ୍ଧାହୋଇଥିବା ଘଣ୍ଟାକୁ ଚାହିଁଲି । ପଢ଼ି ହେଲାନାହିଁ । ଉତ୍ତରବଙ୍ଗ ପର୍ଯ୍ୟଟନ ମନରେ ତଥିଲି ଅନୁମାନ କଲି, ଶୀତ ନଅଟାରୁ ଅଧିକ ହେବ ।

ସେମାନେ ଫେରିଲେ ନାହିଁ । ଏତେ ଅନୁଦାର, ଏତେ ନିର୍ଦ୍ଦୟ ! ଜାଣି ଜାଣି ମୋତେ ବାଘ ସାମ୍ନା ମୁହଁରେ ପକାଇବାକୁ ସମସ୍ତେ ଆଗରୁ ଚକ୍ରାନ୍ତ କରିଥିଲେ କି ? ନାହିଁ ମୁଁ କାହାର କିଛି ଅନିଷ୍ଟ କରିନାହିଁ । ତେବେ ନାହିଁକି ସେମାନେ ମୋତେ ଖୋଜିବାକୁ ଆସିଲେ ନାହିଁ ? ସତେ, କାହିଁକି ?

ଆକାଶ ଛାତିରେ ମେଘ ଫାଟି ଫାଟି ଗଲା, ଖଣ୍ଡିଖଣ୍ଡିକା ହେଲା । କାଁ ଖାଁ କେତୋଟି ନକ୍ଷତ୍ର ମିଟିମିଟି ହେଲେ । ପୁଣି ପବନ ମାଡ଼ି ଆସିଲା । ସାଇଁ ସାଇଁ ଶବ୍ଦ । ପତ୍ରମାନଙ୍କରୁ ଝଡ଼ିପଡ଼ୁଥିବା ଜଳକଣାମାନଙ୍କର ଶବ୍ଦ । ପାଖ ଓ ଦୂରର ସ୍ରୋତବତୀ ନାଳମାନଙ୍କରେ ବହିଯାଉଥିବା ପାଣିର ବିଭିନ୍ନ ପ୍ରକାର ଶବ୍ଦ । ଶହ ଶହ ଭେକଙ୍କର କଣ୍ଠର କେଁ । ତୋଫାନ ଓ ବର୍ଷା ମାଡ଼ରୁ ବର୍ତ୍ତିଯାଇଥିବା ଝିଙ୍କାରିପକର ଝିମ୍ ଝିମ୍ । ସବୁ ମିଶି ଗୋଟାଏ ଭୟଙ୍କର ଶବ୍ଦମସ୍ତ ସୃଷ୍ଟି କରୁଥାଏ । କାନ ସ୍ତବ୍ଧ ହୋଇଯାଉଥାଏ, ଭାବନାର ଗତିରେ ବାଧା ଦେଉଥାଏ ।

ଅନ୍ଧାର ପାତଳ ହେଲାଣି । ଅରଣ୍ୟର ଗଛଗହଳି ଆଖିକୁ ସ୍ପଷ୍ଟ ଦିଶିଲାଣି । କେଉଁ ବୃକ୍ଷର ଆଲୋଡ଼ନ ଦିଶିଲେ ଛାତି ଚମକି ଉଠେ । ଆସିଲା କି ବାଘ ! ଝାମ୍ପି ନେବ, ତଣ୍ଟି କଣା କରି ରକ୍ତ ଶୋଷିବ । ଓଃ, କି କଳବଳ ମରଣ !

ପାଖ ଗଛଉପରକୁ ଉଠିଯିବି । ବାଘ କିଛି କରିପାରିବ ନାହିଁ । ବଡ଼ ମହୁଲ ଗଛ, ବେକା ପାଇବ ନାହିଁ । ଚଢ଼ିବାକୁ ବାଗ ଅଛି । ଛାତି ଭିତରୁ କେହି ବାଧାଦେଉଛି । ହଁ, ହେଉଆ କରିବ । ଦାଉଁ ଦାଉଁ ଛାଡ଼ିରେ ଗୋଡ଼ରୁ ଜୋତା କାଢ଼ିଲି । ବରଷାତି ଓ ମୁଣ୍ଡର ବରଷାତି ଟୋପି ଇତ୍ୟାଦି ବାଉଁଶ ବେଣ୍ଟର ଗୋଟିଏ କଡ଼ରେ ରଖିଲି । ଦେହହାତ ଥରୁଥାଏ । ବାଘ ନୁହେ ? କେଜାଣି, ସେ ମୋତେ ଦେଖି ନ ପାରି ମଝି ଅରଣ୍ୟକୁ ଚାଲିଗଲା ।

ଏ ପାଖରୁ କିଏ ଖସ୍ ଖସ୍ ହେଲାଣି । ଭାଲୁ ହୋଇଥିବ । ଗଛ ଉପରକୁ ଉଠିଲେ ମଧ୍ୟ ରକ୍ଷା ନାହିଁ । ଗଛରେ ଚଢ଼ି ସେ ଦୋପାଶଅଣିବ ।

ତଳେ ପକାଇ ସର୍ବାଙ୍ଗ ଆଞ୍ଚୁଡ଼ିବ, କାମୁଡ଼ି ବିଦାରି କ୍ଷତବିକ୍ଷତ କରିବ । ଆଖି, କାନ, ନାକ ଯିବ, ମରଣ ହେବନାହିଁ । ଛଟପଟ କରିବି । ପଡ଼ିଥିବା ପାଣିକି ଚାହିଁଲେ । ସେତିକି ଭୁଲିଯିବି । ବେଳେ ପାଣିରେ ପଶିବି । ବାଘ ଭାଲୁ କି ଅନ୍ୟ ବନ୍ୟଜନ୍ତୁ ମୋର କିଛି ଅନିଷ୍ଟ କରି ପାରିବେ ନାହିଁ ।

ସାପଟାଏ ବେଙ୍ଗ ଧରିଛି । ମନେହେଲା, ଗୋଟିଏ ନୁହେଁ, ଅନେକ । ବିକଳ ରଡ଼ି ଶୁଭୁଛି । ବିଲର ପାଣିଆଡ଼ୁ ସେ ସବୁ ରଡ଼ି ଆସୁଛି । ସେଣିକି ଗଲେ ମୃତ୍ୟୁ ଅନିବାର୍ଯ୍ୟ । ହୁଡ଼ତଳ ଗାତରୁ ନାଗ କି ଚିତି ସାପ ବାହାରିବ, ପାଦ ପଡ଼ିଲେ ଚୋଟ ହାଣିବ । ମନେହେଲା, ପାଦ ପାଖରେ କଅଣ ସଲସଲ ହେଉଛି । ସାପ ହୋଇଥିବ । ବେଞ୍ଚ ଉପରକୁ ଦୁଇପାଦ ଟେକିଆଣିଲି ।

ରାତି ଅଧ ହେଲା, ତଥାପି ସେମାନେ ଆସିଲେ ନାହିଁ । ଦେହ କୋଲି ମାରି ଯାଉଛି । ମୋ ଭିତରେ କିଏ ଜଣେ କେବଳ ଦୁର୍ଗା ଦୁର୍ଗା ଚିତ୍କାର କରୁଛି । ସେ ଚିତ୍କାର ସତେ କି ମୋ କାନରେ ବାଜୁଛି । ସେ ଶବ୍ଦ ମୋର ସ୍ଥୂଳଦେହର ନୁହେଁ, ଏହା ମୁଁ ଅନୁଭବ କରୁଛି । ସେଇ ଶବ୍ଦ ମୋର ସୂକ୍ଷ୍ମ, କି ସୂକ୍ଷ୍ମତର ଅବା ସୂକ୍ଷ୍ମତମ ଦେହର ହୋଇଥିବ, ଯେଉଁ ଦେହର ମୋ ସ୍ଥୂଳଦେହର ମରଣ ସଙ୍ଗେ କୌଣସି ସମ୍ବନ୍ଧ ନାହିଁ, କି ସ୍ଥୂଳଜଗତ୍, ପତ୍ନୀପୁତ୍ର, ଧନସମ୍ପତ୍ତି ସଙ୍ଗେ ସମ୍ପର୍କ ନାହିଁ ।

ତମେ ମୋର ମନେ ପଡ଼ୁନାହିଁ । କୁନୁ, ଈରା, ଅତୀତ ଓ ଭବିଷ୍ୟତ ମୋର ପାଖରେ ପଶିନାହାନ୍ତି । ସ୍ଥୂଳଦେହକୁ ରକ୍ଷା କରିବାକୁ ତାଅରି ଜୀବନ ମୋ'ର ଅଜ୍ଞାତରେ ରକ୍ତକୁ ଆଦେଶ ଦେଇଥିଲା, ସେ ରକ୍ତ ଡକା ଛାଡ଼ୁଥିଲା । କଅଣ ସେ ବନ, ଗଗନ, ପବନ, ମନ ଓ ଅବଚେତନକୁ ଅଗାଇ ବୋବାଳି ଛାଡ଼ୁଥିଲା, ଦେହଭିତରେ ମୁଁ ତାକୁ ଶୁଣି ନ ଥିଲି ସେଇ ସୂକ୍ଷ୍ମଦେହ, ଦେହ ମୁଁ, ବିଶ୍ୱଚରାଚରବ୍ୟାପିନୀ ଜନନୀଦୁର୍ଗାଙ୍କୁ ସ୍ମରଣ କରୁଥିଲି । ସ୍ଥୂଳଦେହ ଛାଡ଼ି କେଉଁ ଅଜଣା ଅନ୍ତରୀକ୍ଷରେ ସେ

ସେହି ସ୍ନେହମୟୀ ଜନନୀର କୋଡ଼ରେ ଶୁଇଥିଲି । କି ଦୃଶ୍ୟ ସେ ଦେଖୁଥିଲି, ଭାଷାରେ ବର୍ଣ୍ଣନା କରିହେବ ନାହିଁ ରମା, ତମେ ମୋର ସ୍ଥୂଳଦେହର ସଙ୍ଗିନୀ ମାତ୍ର !

ସେପରି ତମେ କହନା, ମୁଁ ତମର ଜନ୍ମଜନ୍ମାନ୍ତରର ସାଥୀ ।

ରମା ଅସ୍ଥିର ହୋଇଉଠିଲା । ରମା ଖଟରୁ ଓହ୍ଲାଇ ତଳକୁ ଆସିଲା ।

ଅନ୍ଧାର ଭିତରେ ଅତୀତ କଥା କହୁଛି । ଭାବନା ଭିତରେ ସେ ଆସି ପାଖରେ ବସିଛନ୍ତି । ଘଟିଲା-ଦୁର୍ଯୋଗର ଅଭିଜ୍ଞତା ବର୍ଣ୍ଣନା କରିଛନ୍ତି ।

ଶୁଣ ରମା, ମୋର ପ୍ରିୟତମା, କେତେବେଳେ ମୋ'ର ଗୁଳିର ଭାଷା ବନ୍ଦ ହେଲା, କେତେବେଳେ ଓ କିପରି ଆସି ମୁଁ ଭୂମିରେ ଶୟନ କଲି ମୋତେ ଜଣା ନାହିଁ । ମୋ'ର ମୋହ ବା କାଳନିଦ୍ରା ଭାଙ୍ଗିଲା ସେମାନଙ୍କର ସ୍ପର୍ଶରେ ।

ସେମାନେ ଫେରିଆସିଛନ୍ତି । ସେମାନେ ସ୍ୱୟଂସାର ଅଲୁଅ, ବନ୍ଧୁକ ଓ ଠେଙ୍ଗାବାଡ଼ି ଧରି ଦଳ ଦଳ ହୋଇ ଅରଣ୍ୟର କନ୍ଦି ନିକନ୍ଦି ଖୋଜିଛନ୍ତି । ଆଗିରେ ଦୁଇଟି ମହାବଳ ଦେଖି ମନେ କରିଛନ୍ତି, ଇଙ୍ଗ୍ରିଜସ୍ୱାର ଆଉ ଇହ-ଧାମରେ ନାହାନ୍ତି । ତଥାପି, ସେମାନେ ଖୋଜିଥିଲେ ।

ଆଖି ଖୋଲିଲି । ଅନ୍ୟଙ୍କୁ ଭର ଦେଇ ଉଠିଲି । ବୁଝିଲି, ସୂର୍ଯ୍ୟ ପାହିଆସୁଛି, ପାଖର ଅରଣ୍ୟ ଶୀତଳ ଆଲୋକରେ ପରିଷ୍କାର ଦିଶୁଛି ।

ମୁଁ ବଞ୍ଚିଛି ।

ରମା ଦୁଇହାତ ଯୋଡ଼ି କପାଳରେ ଲଗାଇଲା । ମିନତି କଲା, ମାଗୋ ଜଗତ୍ଜନନୀ, ସବ ଶୁଭରେ ସେ ଫେରି ଆସନ୍ତୁ । ମୋର ଜୀବନ ଓ ମୋର ମନ ତମକୁ ମୁଁ ସମର୍ପଣ କରୁଛି, ତାଙ୍କର ଆଖି ଗୋଡ଼ରେ କଣ୍ଟା ନ ବାଜୁ ।

ଜଗନ୍ନାଥ ସାଗର ମୋଡ଼ରେ ଜୟପୁର ଗଡ ପୁନାମ ସିଂ ଉଣା କଲା । ଅଚଳ ଟ୍ରକ୍‌ଟିଏ ରାସ୍ତା ମଝିରେ ଠିଆଁ ହୋଇଛି । ଜୟପୁର ସହରର ବିଜୁଳି ଆଲୋକମାଳା ଦୂରରୁ ମନୋରମ ଦିଶୁଛି । ବର୍ଷା ଛାଡ଼ିଗଲାଣି । ଆକାଶ ମେଘାଚ୍ଛନ୍ନ ।

ସୁକାନ୍ତ ଅଣ୍ଟା ଟିକିଏ ନଇଁଲା । ମୁଣ୍ଡରୁ ମଫଲର ଖୋଲିଲା । ଝାଳ ଗମ୍‌ଗମ୍ ବୋହୁଛି । ଜର ଛାଡ଼ିଗଲାଣି ।

ଆନନ୍ଦରେ ମନ କୁରୁଳିଉଠିଲା । କାର୍ଯ୍ୟ ସମାପନ କରି, ଝଡ଼ବରଷା ଆପଦବିପଦ ଲଙ୍ଘନ କରି ସେ ଫେରୁଛିରେ ଫେରିଆସୁଛି ।

ଜୟପୁର ହେଲା । ଜିପ୍ କଲେକ୍ଟରେଟ ଅତିକ୍ରମ କଲା । ଶୀଘ୍ର ସେ ଘରେ ପହଞ୍ଚିବ । ହୟତ୍ରେ ଶୋଇପଡ଼ିଥିବେ । ଜିପର ହର୍ଣ୍ଣ ଶୁଣି ରମାର ନିଦ ଭାଙ୍ଗିବ । ଅସ୍ତବ୍ୟସ୍ତ ହୋଇ ସେ ଉଠିଆସିବ । ଅଳୁଅ ବେଶ, ମୁହଁରେ ଅଳପ ହସ, କେଡ଼େ ଭଲ ଦିଶେ !

ତାହାକୁ ସେ ଆଗ ଗେଲ କରିବ ?

ପିଲା ଦିଓଟି ଶୋଇଥିବେ ।

ଜଗନ୍ନଜନନୀ ମନ୍ଦିର ହେଲା । ଆପେ ଆପେ ହାତ ଯୋଡ଼ି ହୋଇଗଲା, ମୁଣ୍ଡରେ ଲାଗିଲା । ମନରେ କାମନା ନାହିଁ, ତୁଣ୍ଡରେ ମାଗୁଣି ନାହିଁ ।

ଭାବନାର ସଫେଦ ପରଦା ଉପରେ ଦିଶୁଛି ଗୋଟିଏ ଅଭିନେତ୍ରୀର ରୂପ, ସାତବର୍ଷର ଘରଣୀ ସେ ରମା । ନିର୍ମଳ ନିଷ୍କପଟ ମନ ନେଇ ସେ ଆଗକୁ ଆସିଛି, ନିରାଡ଼ମ୍ବର ରୂପଭେକ ନେଇ ସେ ବାସ୍ତବ ଜୀବନର କ୍ରୀଡ଼ା କରିଛି ।

ଅବଗୁଣ୍ଠନବତୀ, ହରମିଳା ନବବଧୂ; ହସହସ, ଲାଜଲାଜ ପ୍ରେମିକା; କର୍ତ୍ତବ୍ୟପରାୟଣା, କଳଭାଷ୍ୟ, କ୍ଷମାଶୀଳା ଗୃହିଣୀ; ଗମ୍ଭୀରବଦନା, ଉପଦେଶଦାୟିନୀ ବାନ୍ଧବୀ; କ୍ରୀଡ଼ାକୌତୁକୀ, ଚମତ୍କାର ମୁଗ୍ଧା, ଭଗିନୀ; କଥାଅକଥାରେ ନାହିଁନାହିଁ କଲା, ଅକଟିଲା ମାତା, ମନ୍ତ୍ରାମନ୍ତ୍ରୀ ଭ୍ରାନ୍ତ ଭ୍ରାନ୍ତ ତାଙ୍କ ଓଟ୍ଟେ

ଅପହରିଯିବା ଆଉ କଏ; କନ୍ଦାପ୍ରଶଂସାକୁ ଦେହର ମଳାପରି ଯେକ କାର୍ଯ୍ୟବୀପ୍ତ ଲୋଟଣିପାଇଁ ମୃହର ଦାସୀ, ପୁଣି ମୃହର କର୍ତ୍ତ୍ରୀ; ଓରଡ଼ଣକା ନେହୁରା ହୋଇ ଅଳକରୁ, ମାଗୁଣୀକରୁ ଭିକାରୁଣୀ; କାନ୍ଦୁରାମୁହାଁ, ଝରଲୀଅଖି, ପରଝରଦଶା, ଗେଲବସରା, କଣୋଗ୍ରା କନ୍ୟା ।

ସବୁ ତ ସେ ରମା, ଅଗାଧ ପ୍ରେମର ଅସୀମ ପଣତରେ ବେଢ଼ାଇ ରଖିଛୁ, ଘୋଡ଼ାଇ ରଖିଛୁ ।

ଝରକା ବାଟେ ଦେଖାଯାଉଛୁ ଆଗର ରାସ୍ତା, ହାଲୋଜମସ୍ । ଜିପ୍ ଆସିବାର କ୍ଷୀଣ ଶବଦ ଶୁଭୁଛୁ ।

ରମା କାନ ଡେରିଲା ।

ଅଉ କାହାର ?

ଶବଦ ବଢ଼ୁଛୁ । ତାଙ୍କର ଗାଡ଼ିର ଶବଦ ପରି ମନେ ହେଉଛୁ । ବେଳେବେଳେ ଗଡ଼ ଅଧରେ ସେ ଫେରନ୍ତି । ମା ମଙ୍ଗଳା ସବଶୁଭରେ ତାଙ୍କୁ ଫେରାଇ ଆଣିଛନ୍ତି ।

ଗ୍ଲଡରେ ସ୍ପନ୍ଦନ ଦ୍ରୁତ ହେଲା । ଆନନ୍ଦମିଶା ଉତ୍କଣ୍ଠାରେ ଆପାଦମସ୍ତକ ଟଳଉଠିଲା ।

ରମା ଝରକା ପାଖକୁ ଗଲା । ଅଶଲହାତରେ ପରଦା ଆଡ଼େଇ ପଦାକୁ ଗୁହିଁଲା । ବରଷା କେତେବେଳରୁ ଗ୍ଲଡ଼ିଗଲଣି । ଚକ୍‌କଟ ପିଚ୍ ରାସ୍ତା ଜିପ୍ ଆଲୋକରେ ଝଲସିଉଠୁଛୁ । ରାସ୍ତାକଡ଼ ଆଲୁଅଖମ୍ବ ତ ଦୂରରେ, ତାର ଅସ୍ପଷ୍ଟ ଆଲୋକ ଫିକା ହଜାଇଛୁ । ହଲଧର ବାବୁଙ୍କର ଘରଭିତରେ ଅନ୍ଧାର ଦିଶୁଛି, କିନ୍ତୁ ବାହାରଟା ଉଜ୍ଜ୍ୱଳ ଦିଶିଲଣି ।

ଜିପ୍ ଆସି ଘରଆଗରେ ଅଟକିଲା ।

ପୁନାମ ସିଂ ଡ୍ରାଇଭର ହର୍ଣ୍ଣ ବଜାଇଲଣି । ହର୍ଣ୍ଣ ନୁହେଁ, ଶୁଭଙ୍ଖ !

ରମାର ସାରା ଅଙ୍ଗରେ ଆନନ୍ଦର ଢେଉ ଖେଳିଗଲା । ଭୃଷିତ ନେତ୍ର ଅପଲକ । ଜିପ୍ ଭିତରୁ ବାହାର ଆସିଲା ସୁକାନ୍ତ । ଧୀରେ କହିଲା ଆଉ ହର୍ଣ୍ଣ ବଜାଅ ନାହିଁ, ପିଲାଏ ମୋର ଚମକି ଉଠିବେ ।

ରମାର ପାଦ ସତେକି ଶୂନ୍ୟରେ ଉଡ଼ିଲା । ସେ ଦୁଇ କ୍ଷେପାରେ କାନ୍ଥପାଖକୁ ଆସି ସ୍ୱିଚ ଟିପିଲା । ନୀଳ ଆଲୁଅରେ ପ୍ରକୋଷ୍ଠ ଉଜ୍ଜ୍ୱଳ ଦିଶିଲା । ରମା ମଝିଘରକୁ ଆସି ଆଲୁଅ ଜାଳିଲା, ଲମ୍ବିଲା ପଣତ ତଳେ ଘୁଷୁରୁଛି, ପାଦ ଛନ୍ଦୁଛି, ଉଜ୍ଜ୍ୱଳ ଆଲୋକର ଢେଉ ଖେଳୁଛି ।

ସେ ବାରଣ୍ଡାର କବାଟ ଖୋଲିଲା ।

କାନରେ ବାଜୁଛି ଅତି ପରିଚିତ ସ୍ୱର, ତମ ମାଆଙ୍କର ନିଦ ଭାଙ୍ଗିଲାଣି ଅଗାଧୁ ?

ଆଜ୍ଞା ହଁ, ଆପଣ ଏଇ ଫୁଲ ତ ପୁଡ଼ା ଧରନ୍ତୁ, ମୁଁ ଜିନିଷପତ୍ର ଓହ୍ଲାଏ ।

ରହ, ମୁଁ ରଙ୍ଗିଆକୁ ଡାକେ ।

ରମାର ଗୋଡ଼ ଅଟକିଲା ବାରଣ୍ଡାରେ । କଅଣ ହୋଇଛି ତାଙ୍କର ? ସ୍ୱର ଦୁର୍ବଳ ଶୁଭୁଛି, ସ୍ୱର ଅଣଉଠୁଛି, ଉପାସ ଅଛନ୍ତି ଦିନସାରା ? କଅଣ ଖାଇବେ ? ଖୀରି ପାଉଁରୁଟି ଛଡ଼ା ଘରେ ଆଉ କିଛି ନାହିଁ ।

ହଁ, ଗୋମତୀ ଅଙ୍ଗୁର ଓ କମଳାଲେମ୍ବୁ ଦେଇଯାଇଛନ୍ତି, କସ୍ତୁରୀଅପା ବେଦାନା ଓ କଦଳୀ ଦେଇଛନ୍ତି । ଟେବୁଲ୍ ଉପରେ ସବୁ ସେମିତି ରଖାହୋଇଛି ।

ଫଳ ଖାଇବାକୁ ସେ ଭଲ ପାଆନ୍ତି ।

ଭିତର ପାଖରୁ ଦାଣ୍ଡଘର କବାଟରେ ହାତ ବାଡ଼େଇ ରମା ଡାକିଲା, ରଙ୍ଗିଆ, ରଙ୍ଗିଆ ! ସତେ କି ତା'ର ଆକୁଳ ଡାକର ଆଗ୍ରହ ପ୍ରତିଧ୍ୱନିତ ହେଲା ବାହାରପାଖେ, ସୁକାନ୍ତର କଣ୍ଠରେ, ରଙ୍ଗିଆ ରଙ୍ଗିଆ !

ଉତ୍ତର ଦେଇ ରଙ୍ଗିଆ ଦାଣ୍ଡକବାଟ ଖୋଲିଲା ।

ରମା ଅପେକ୍ଷା କଲା ବାରଣ୍ଡାରେ ।

ଶୋଇଲାଘର ଭିତରୁ ମା ମା ଡାକ କାନ୍ଦଉଠିଲା ଇରା । ରମା ଧାଇଁ ଆସିଲା ତା ପାଖକୁ । ଉଠିବ ପଦ୍ମ, ସ୍ୱାହା ଧଣବ । ଇନ୍ଦ୍ରସ୍ୱର ଟିକପୁଅକୁ ଦେଖି ସେ ଅଙ୍କଟ ହୋଇଛୁ, କଣ୍ଟାଳ କରୁଛୁ ଆମର ଟେମିଠକା ପୁଅ ଲେଡ଼ା, ସଭ ଆଉ ମୁଁ ଖେଳିବୁ ।

ମଝିଘରେ ।

ଉଜ୍ଜ୍ୱଳ ଉଚ୍ଛଳ ବିଜୁଳି ଆଲୋକରେ ଦୁହିଁଙ୍କର ବିସ୍ମିତ ବିହ୍ୱଳ ଦୃଷ୍ଟି ଦୁହିଁଙ୍କୁ ବେଷ୍ଟନ କଲା । ଦୁହିଁଙ୍କର ଆକୁଳ ବିକଳ ମରମତଳେ ବେଦନାର ସିନ୍ଧୁ ଉଦ୍‌ବେଳିତ ହେଲା, ହେଲା ଫେନିଳ, ତରଙ୍ଗାୟିତ, ପ୍ରଗଳ୍ଭ, ଚଉରେଟି ଦିନର ବ୍ୟବଧାନରେ ଏ କି ରୂପ ଧରିଛ ତମେ, ଯୁଗ ଯୁଗର ପରିବର୍ତ୍ତନ !

ବୁକୁ ଅବରୁଦ୍ଧ ଦୁଃଖବେଦନାର ତୋଫାନ ପଦାକୁ ଛୁଟିଲା ।

ଅଶ୍ରୁଳଓଠରେ ସ୍ମିତ ବିକଶିଲା ।

କଅଣ ତମର ହୋଇଛି ରମା ?

ତମେ କାହିଁକି ଏପରି ଦିଶୁଛ ?

ରମାର ଦୁଇ ଆଖିରେ ଛଳଛଳ ଲୁହ ।

ହସହସ ସୁକାନ୍ତ ତା'ର ହାତ ଧରିଲା । କହିଲା, ବାଟରେ ଝଡ଼ବରଷା, ବିଜୁଳିଘଡ଼ଘଡ଼ି ଆମର ଭରସା ହେଲା ରମା, ନୋହିଲେ ଦଣ୍ଡଅଗରୁ ଅମେ ଫେରିଆସି ପାରିଥାନ୍ତୁ । ଆପଦବିପଦ, ବାଧାବିଘ୍ନ ବାଟୋଇ ଜୀବନରେ ଅନେକ ଆସେ, ସେ ଅଟକେ, ଭୟ ଓ ଉତ୍କଣ୍ଠାରେ ସେ ବିବ୍ରତ ହୁଏ । ଝଡ଼ ବରଷା ଥମେ । ଆଶା ଓ ଆନନ୍ଦର ଆଲୁଅ ମେଘଅନ୍ଧାରକୁ ଦୂର କରେ । ସେ ଅଗେଇ ଚାଲେ । ଆକାଶ ନିର୍ମଳ ହେଲାଣି । ଲକ୍ଷକୋଟି ତାରା ହସିଉଠିଲେଣି । ତମେ କଅଣ ହସିବ ନାହିଁ କି ?

ତମର ଦେହ ଉଷୁମ ଲାଗୁଛି ଯେ, ଜର ହେଲା ? ଓଦା ଜାମା ଅଟ ଉତାରି ପକାଅ । କି ହଉ ହୋଇଛ ମ, ମୁଁ ନଆଁଲଗୀ ନ ମଲି କାହିଁକି ? ଭୁଲ ମନ ମୋର, ତମେ ଉଲୁଗ୍ ଲଗାଇଲେ ମୁଁ ସବୁ ଭୁଲିଯାଏ । ମତେ କ୍ଷମା କରିବ ନାହିଁ ?

ରମାର ଆଖିରୁ ଲୁହଧାର ଗଡ଼ିଆସିଲା । ସେ ସୁକାନ୍ତର ଜାମାର ବୋତାମ ଖୋଲିଲା ।

ବିହ୍ୱଳ ସୁକାନ୍ତ ତାର ମୁଣ୍ଡ ଅଉଁସି କହିଲା ପାଗଳି, ଦାମ୍ପତ୍ୟ ଜୀବନରେ ସେଇ ଅମୂଲ୍ୟ ଟଙ୍କଟି ତମଠାରୁ ଆଗ ମୋର ପାଉଣା । ତମେ ନାହିଁ ନାହିଁ କଲେ ବି ମୁଁ ବଳ ପ୍ରୟୋଗ କରି ସେତକ ତମଠାରୁ ଛଡ଼ାଇନେବି ।

ସୁକାନ୍ତର ଗ୍ରୀବପାଖରେ ରମାର ଦୋହଲମୁହଁରୁ ଝିଲିଝିଲି ହସର ଶବଦ ଛୁଟିଆସିଲା । ତା'ର ମନ ଧାଇଁଗଲା ମନ୍ଦରଭିତରେ ଉଭା ଜଗନ୍ନାଥଙ୍କର ଚରଣ ତଳକୁ, ପ୍ରଣାମ କଲା ।



ଜୟପୁର

ଶନିବାର

୧୪-୭-୧୯୬୨

କାହ୍ନୁଚରଣ